# ଭାଗବତ କଥା

## (ତ୍ରୟୋଦଶ ଖଣ୍ଡ)


ଲେଖକ

**ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ**

ସମ୍ପାଦନା

**ଡକ୍ଟର କୃଷ୍ଣପ୍ରସାଦ ମିଶ୍ର**

ଅନୁବାଦ

**ପଣ୍ଡିତ ଉପେନ୍ଦ୍ରନାଥ ହୋତା**



ପ୍ରକାଶକ



[illegible]

# ଭାଗବତ କଥା

(ତ୍ରୟୋଦଶ ଖଣ୍ଡ)

ପ୍ରକାଶିକା
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ ଷ୍ଟୋର
ବାଲୁବଜାର,
କଟକ-୨

ପ୍ରଥମ ସଂସ୍କରଣ
ନଭେମ୍ବର : ୧୯୮୪

ପ୍ରଚ୍ଛଦ
ଶ୍ରୀ ଅସୀତ ମୁଖାର୍ଜୀ

ମୁଦ୍ରଣ
ଅନୁରୂପା ପ୍ରିଣ୍ଟର୍ସ
ତେଲେଙ୍ଗା ବଜାର,
କଟକ-୯

ମୂଲ୍ୟ
ସାଦା ଟ୧୨-୦୦
ବନ୍ଧାଇ ଟ୧୫-୦୦

# BHAGABAT KATHA

(THIRTEENTH PART)

Sri PRABHUDATTA BRAHMACHAREE

*Publisher* :
Smt. Annapurna Misra
Cuttack Students' Store
Cuttack-2

*First Edition*
*November : 1984*

*Price*
Papular Rs. 12/-
Deluxe Rs. 15/-

# ସୂଚୀ

ବିଷୟ | ପୃଷ୍ଠା

| ବିଷୟ | ପୃଷ୍ଠା |
| --- | --- |




# କର୍ମ ଭୋଗ

ପରସ୍ୱଭାବକର୍ମାଣି ନ ପ୍ରଶଂସେନ୍ନ ଗର୍ହୟେତ୍ ।
ବିଶ୍ୱମେକାତ୍ମକଂ ପଶ୍ୟନ ପ୍ରକୃତ୍ୟା ପୁରୁଷେଣ ଚ ॥
ପରସ୍ୱଭାବକର୍ମାଣି ଯଃ ପ୍ରଶଂସତି ନିନ୍ଦତି ।
ସ ଆଶୁ ଭ୍ରଶ୍ୟତେ ସ୍ୱାର୍ଥାଦସତ୍ୟଭିନିବେଶତଃ ॥

( ଭାଗବତ ୧୧ ସ୍କନ୍ଦ ୨୮ ଅଧ୍ୟାୟ ୧, ୨ ଶ୍ଳୋକ )

## ଛପ୍ପୟ

ଚନ୍ଦନ ଜ୍ୟୋ ଅନୁକୂଳ କରେ ପ୍ରତିକୂଳ ଭଲେ ନର ।
ହୋଇ ଦୋଷ ଗୁଣଯୁକ୍ତ ସବ ମନ ମାହିଁ କରେ ଘର ॥
ଜାକୋ ଦେଖେ ଦୋଷ କରେଁ ନିନ୍ଦା ଜୋ ଜାକୀ ।
ଆବେଁ ତାମେ ବହୁ ଦଶା ହୋଓଏ ସୋ ତାକୀ ॥
ଭବ କୋ କାରଣ ସବ ହୈ, କର ଚନ୍ଦନ ଭବ ମହଁ ପରେ ।
ଗହେଁ ଚିନ୍ତୋ ସିଗ ତୈ, ଦୋଷ ବୁଦ୍ଧି ଗହେଁ କରେଁ ॥

ଯେ ଅନ୍ୟ ପାଇଁ ଗାତ ଖୋଳେ, ତା ନିମିତ୍ତ କୂଅ ଖୋଳା ହୋଇଥାଏ । ଯେ ଅନ୍ୟର ଅମଙ୍ଗଳ କରେ, ତା ଉପରେ ସେହି ଅମଙ୍ଗଳ ମନକୁ ମନ ଆସେ । ଯେ ଅନ୍ୟକୁ ଖରାପ କହେ ସେ ନିଜେ ଖରାପ ହୋଇଥାଏ । ମନ୍ଦରୁ ମନ୍ଦ ଓ ଉତ୍ତମରୁ ଉତ୍ତମ ଉତ୍ପନ୍ନ ହୁଏ । ଭାବନା ରାଗ ବୁଦ୍ଧିରେ କି ଦ୍ୱେଷ ବୁଦ୍ଧିରେ ହେଉ ଚିନ୍ତନୀୟ ବସ୍ତୁ ସହିତ ଆସକ୍ତ ହୋଇଯାଏ । ରୁକ୍ମିଣୀ ଅନୁରାଗ ସହ ଓ କଂସ ଦ୍ୱେଷ ରଖି ଶ୍ରୀକୃଷ୍ଣଙ୍କ ଚିନ୍ତା କରୁଥିଲେ । ଉଭୟଙ୍କୁ ଶ୍ରୀକୃଷ୍ଣ ପ୍ରାପ୍ତ ହେଲେ । ଯେଉଁ ବସ୍ତୁ ସହିତ ଆସକ୍ତି ଅନୁରକ୍ତିରେ ପରିଣତ ନହୁଏ, ଆମେ ତାପ୍ରତି ଦ୍ୱେଷ କାହିଁକି କରିବା ? ଯାହାକୁ ଆମେ ଚାହୁଁ, ଯାହା ଆମକୁ କୌଣସି କାରଣ ହେତୁ ପ୍ରାପ୍ତି ହୁଏ ନାହିଁ,

ଆମେ ଈର୍ଷା ହେତୁ ତାହା ପ୍ରତି ଦ୍ୱେଷ ପ୍ରକଟିତ କରୁଁ, ଖରାପ କହି ତା ପ୍ରତି ଅନୁରକ୍ତି ପ୍ରକାଶ କରୁ । ଅଙ୍ଗୁର ଫଳ ପ୍ରତି ଆସକ୍ତି ଅଛି; ନ ମିଳିଲେ ତାକୁ ଖଟା କହୁ । ଏହି ଖଟା କହିବାରେ ଅନୁରାଗ ନିହିତ । ଦ୍ୱେଷ ଭିତରେ ରାଗ ଲୁଚି ରହିଥାଏ ।

ବହୁତ ଦିନ ତଳର କଥା । ଥରେ ମୁଁ ବୃନ୍ଦାବନ ଧାମକୁ ଯାଇଥିଲି । ସେତେବେଳକୁ ମୋର "ଚୈତନ୍ୟ ଚରିତାବଳୀ" ପୁସ୍ତକ ପ୍ରକାଶିତ ହୋଇ ସାରିଥିଲା । ଲୋକମାନେ ସେହି ପୁସ୍ତକକୁ ବହୁତ ଆଦର କରୁଥିଲେ । ସେହି କାରଣରୁ ବହୁତ ଦୟାବାନ ଭଗବଦ୍ ଭକ୍ତ ବୈଷ୍ଣବ ମୋ ଉପରେ ଅତ୍ୟଧିକ ସ୍ନେହ କରୁଥିଲେ । ସେ ସମୟରେ ଶ୍ରୀ ବୃନ୍ଦାବନରେ ଗୁଜୁରାଟର ଏକ ବିଶିଷ୍ଟ ଭଗବଦ୍ ଭକ୍ତ ବୈଷ୍ଣବ ସେଠାରେ ବାସ କରୁଥିଲେ । ସେ ଗୁଜରାଟୀ ଭାଷାର ଲେଖକ ମଧ୍ୟ ଥିଲେ । ଏବଂ ଚୈତନ୍ୟ ସଂପ୍ରଦାୟ ଅନ୍ତର୍ଗତ କୌଣସି ଏକ ଶାଖାର ଶିଷ୍ୟ ଥିଲେ । ମୁଁ ତାଙ୍କର ଦର୍ଶନ ନିମିତ୍ତ ଗଲି । ସେ ରୁଗ୍‌ଣ ଥିଲେ । ଜଣେ ବଙ୍ଗୀୟ ମହିଳା ତାଙ୍କର ସେବାଶୁଶ୍ରୂଷା କରିବାରେ ନିଯୁକ୍ତ ଥିଲେ । ବୃନ୍ଦାବନରେ ସେବା କରିବା ପାଇଁ ଭଜନାଶ୍ରମର ବଙ୍ଗୀୟ ମହିଳାମାନେ ସ୍ୱଳ୍ପ ବେତନରେ ମିଳି ଯାଆନ୍ତି । ପୁରୁଷ ସାତଜନ୍ମରେ ମଧ୍ୟ ସ୍ତ୍ରୀ ପରି ସେବାପରାୟଣ ହୋଇ ପାରେ ନାହିଁ । ସେବା କରିବା ଭାରତୀୟ ଲଲନାମାନଙ୍କର ସହଜ ସ୍ୱଭାବ ଅଟେ । ତାଙ୍କୁ ସେବା ଶିଖାଇବା ଦରକାର ପଡ଼େନା, ସେମାନେ ମା ପେଟରୁ ଶିକ୍ଷାଲାଭ କରି ଥାଆନ୍ତି । ହଁ, ସେହି ବଙ୍ଗୀୟ ଭଦ୍ରମହିଳା ବଡ଼ ତତ୍ପରତା ସହିତ ସେହି ବୈଷ୍ଣବ ମହାତ୍ମାଙ୍କର ସେବା କରୁଥିଲେ । କଥା ହେଉହେଉ ସେହି ବୈଷ୍ଣବ ମହାତ୍ମା ମୋତେ ଦିନେ କହିଲେ—'ପ୍ରଥମେ ମୁଁ ସ୍ତ୍ରୀମାନଙ୍କର ବହୁତ ନିନ୍ଦା କରୁଥିଲି, କାହାର ସହିତ କୌଣସି ପ୍ରକାର ସମ୍ପର୍କ ରଖୁ ନଥିଲି । ବର୍ତ୍ତମାନ ବେମାର ଅବସ୍ଥାରେ ଏଠାରେ ପଡ଼ି ରହିଛି, କେହି ପଚାରିବାକୁ ନାହିଁ, ଏହି ସ୍ତ୍ରୀ ଲୋକଟି ଆସି ସେବାକରି ଚାଲି ଯାଉଛି । ଶ୍ରୀଲକ୍ଷ୍ମୀ ଶିକ୍ଷା ଦେଉଛନ୍ତି ତୁମେ ଯାହାର ଖରାପ ଚିନ୍ତା କରୁଥିଲ ସେ ହିଁ ତୁମର ରକ୍ଷା କରିବ ।

କୌଣସି ସାଧନା ଦ୍ୱାରା ନୁହେଁ, ବାଲ୍ୟକାଳରୁ ମୋର କୌଣସି ଗୃହଧର୍ମ ପାଇଁ ପ୍ରବୃତ୍ତି ନାହିଁ; ଗୃହସ୍ଥ ଜଞ୍ଜାଳରୁ ଦୂରରେ ରହି କୀର୍ତ୍ତିଲାଭ କରିବାର ଇଚ୍ଛା । ପରର ଉପକାର କରିବା ଏବଂ କିଛି ଭଗବତ୍ ଚିନ୍ତା କରିବା ଏହି ଇଚ୍ଛା ହେଉଥିଲା । ବୈରାଗ୍ୟ ନହେଲେ ନିସ୍ତାର ନାହିଁ, ଏହି ଭାବନା ବଂଶ ପରମ୍ପରାକ୍ରମରେ ଭାରତୀୟ ହୋଇଥିବା ହେତୁ ନ ଶିଖାଇବା ସତ୍ତ୍ୱେ ମନକୁ ଆସେ । ଜୀବନରେ ଥରେ ମାତ୍ର ବୈରାଗ୍ୟ ହେବାର ଇଚ୍ଛା ଜାତ ହେଲା । ଧନ, ରୂପ, ଅଧିକାର, ଇତ୍ୟାଦିର

ଅଭିମାନ ଏତେ ଦୁଃଖ ଦିଏନି, ଯେତେ ତ୍ୟାଗ ଓ ବୈରାଗ୍ୟର ଅଭିମାନ ଦୁଃଖ ଦିଏ । ନିଜ ଜୀବନରେ ବହୁତ ଲଙ୍ଗୁଟିଧାରୀ ବାବାଜୀଙ୍କୁ ଦେଖିଛି, ମୁଁ ନିଜେ ମଧ୍ୟ ରହି ସାରିଛି । ସେହି ଆଗର ଅଭିମାନ ହେତୁ ଅନ୍ୟଙ୍କୁ ତୁଚ୍ଛ ମନେକରିବା, ଗୁରୁଜନ ଏବଂ ବଡ଼ ଲୋକମାନଙ୍କୁ ଅପମାନଦେଇ ପାପ ଅର୍ଜ୍ଜନ କରିବାର ଅହେତୁକ ଇଚ୍ଛା ନ ହେଲେ ଲୋକର ତ୍ୟାଗ ଯଥାର୍ଥ ଅଟେ । ନଚେତ୍ ତ୍ୟାଗାଭିମାନୀର ପ୍ରଥମ କାର୍ଯ୍ୟ ହୁଏ, ନିଜ ଠାରୁ ଶ୍ରେଷ୍ଠ, ପ୍ରତିଷ୍ଠିତ, ପ୍ରସିଦ୍ଧ ବ୍ୟକ୍ତିମାନଙ୍କର ଛିଦ୍ରାନ୍ୱେଷଣ କରିବା ଏବଂ ସେମାନଙ୍କର ମନ୍ଦସ୍ୱଭାବକୁ ପ୍ରଚାର କରି ନିଜର ତ୍ୟାଗ ଓ ବୈରାଗ୍ୟକୁ ଶ୍ରେଷ୍ଠ ବୋଲି ପ୍ରତିପାଦନ କରିବା ।

ଯେଉଁଦିନ ଲଙ୍ଗୋଟି ପିନ୍ଧି ତ୍ୟାଗର ମିଥ୍ୟାଭିମାନ ଧାରଣ ପୂର୍ବକ ଗଙ୍ଗା ନଦୀକୂଳରେ ବୁଲିବାବେଳେ କୌଣସି ସାଧୁଙ୍କୁ ସୁନ୍ଦର ପକ୍କାକୁଟୀର ମଧ୍ୟରେ ଦେଖୁଥିଲି, ତାଙ୍କୁ କ୍ରୋଧାନ୍ୱିତ ହୋଇ କହୁଥିଲି, 'ତୁମର ଏବଂ ଗୃହସ୍ଥ ମଧ୍ୟରେ ପାର୍ଥକ୍ୟ କେଉଁଠି ।' କୌଣସି ସାଧୁଙ୍କ ନିକଟରେ ଔଷଧ ଥିବାର ଦେଖି କହୁଥିଲି, "ଏହି ସାଧୁ ଏଆଡ଼ୁ ସିଆଡ଼ୁ ଖାଇଦେଇ, ଔଷଧ ଖୋଜୁଛି ।' ସେ ସମୟରେ ଦେହରେ ଶକ୍ତି ଥିଲା, ହଜମ ଶକ୍ତି ତୀବ୍ରଥିଲା, ମାନ୍ଦାଗ୍ନି ଓ ଅଜୀର୍ଣ୍ଣ ସହିତ ପରିଚୟ ନଥିଲା । ସାଧୁଙ୍କୁ ବେମାର ଦେଖି ଘୃଣାଭାବ ଜାତ ହେଉଥିଲା । କାହାର କାହାର ଅତ୍ୟଧିକ ଦ୍ରବ୍ୟ ସଂଗ୍ରହଦେଖି ତାଙ୍କୁ ହସରେ ଉଡ଼ାଉଥିଲି । କାହାର ପାଖରେ ସ୍ତ୍ରୀ ମାନଙ୍କୁ ବସି ଥିବାର ଦେଖିଲେ ତାଙ୍କୁ ଚରିତ୍ରହୀନ ବୋଲି କହୁଥିଲି । କୌଣସି କଥା ନଦେଖି କେବଳ ମିଥ୍ୟା ସନ୍ଦେହରେ ତାଙ୍କ ଉପରେ ବହୁତ ଖରାପ ଲାଞ୍ଛନ ଆରୋପ କରୁଥିଲି । କୌଣସି ଏକ ପ୍ରତିଷ୍ଠିତ ମହାତ୍ମାଙ୍କ ନିକଟରେ ବହୁତ ମହିଳା ରହୁଥିଲେ । ତାଙ୍କର ଭାବ କପରି ଥିଲା, ତାହା ମୁଁ ଦେଖିନାହିଁ । କେବଳ ଅନ୍ୟଠାରୁ ଶୁଣି ସମସ୍ତଙ୍କ ସାମନାରେ ତାଙ୍କୁ ସମାଲୋଚନା କଲି । ଜଣେ ପ୍ରତିଷ୍ଠିତ ମହାତ୍ମା ନୌକା ଉପରେ ବାସ କରୁଥିଲେ । ସେ ପ୍ରାୟ ବେମାର ରହୁଥିଲେ । ବେମାରୀ ହେତୁ ତାଙ୍କୁ ବିଭିନ୍ନ ବସ୍ତୁ ରଖିବାକୁ ପଡ଼ୁଥିଲା । ତାଙ୍କୁ ମୁଁ ଓ ମୋର କେତେକ ସାଙ୍ଗ ଏପରି ହସରେ ଉଡ଼ାଇଲୁ, ଏଭଳି କଥା କହିଲୁ, ଯାହାକୁ ଶୁଣି ସେହି ଜ୍ଞାନୀ ମହାତ୍ମା ହସରେ ଉଡ଼ାଇଦେଲେ । ହସି ହସି ସେ ସବୁର ଉତ୍ତର ଦେଉଥିଲେ । ଆଜି ସେହି ଦୁଇ ଜଣଙ୍କ ମଧ୍ୟରୁ ଜଣେ ଗୃହସ୍ଥ ହୋଇ ଗଲା । ଦ୍ୱିତୀୟ ଜଣକ ମୁଁ ସାଧୁ କମ୍ଭା ଗୃହସ୍ଥ ଲୁହେଁ । ଉଭୟ ଭ୍ରଷ୍ଟ ହୋଇ ପୁସ୍ତକ ବିକ୍ରୀ କରୁଛି, ଯେଉଁ କଥାକୁ ଅଶ୍ରଦ୍ଧା କରୁଥିଲି ସେହି କଥା ଗୁଡ଼ିକ ମୋ ପାଖକୁ ଧିରେ ଧିରେ ଆସିଗଲା । ବଙ୍ଗ୍ଳୋରେ ରହୁଛି, ଗଦି ବିଛାଉଛି, ମସୁଣୀ ପକାଉଛି, ବିଭିନ୍ନ ରସଯୁକ୍ତ ପଦାର୍ଥ (ଭଗବାନଙ୍କୁ ନୈବେଦ୍ୟ ଦେଇ) ଖାଉଛି ।

ସମସ୍ତଙ୍କ ସହିତ ମିଶୁଛି। ଆରମ୍ଭରୁ ଯେଉଁ ଯେଉଁ କଥାକୁ ଖରାପ ଭାବୁଥିଲି, ସେଇ କାର୍ଯ୍ୟକୁ ବିବଶ ହୋଇ ପରିସ୍ଥିତି ଅନୁସାରେ କରିବାରେ ଲାଗିଅଛି।

ମନୁଷ୍ୟର ଏହା ହେଉଛି ସ୍ୱାଭାବିକ ଦୋଷ, ଅନ୍ୟ ଲୋକ ଯେଉଁ କାର୍ଯ୍ୟ କରେ ତା ଭିତରେ ତାକୁ କେବଳ ଦୋଷ ଦେଖାଯାଏ, ମାତ୍ର ସେହି କାର୍ଯ୍ୟକୁ ସେ ନିଜେ କରେ, ତେବେ ନାନାବିଧ ଯୁକ୍ତି ଦ୍ୱାରା ନିଜ କାର୍ଯ୍ୟର ସମର୍ଥନ କରେ, ବହୁତ ଯୁବକ ମୋ ପାଖକୁ ଆସନ୍ତି। କୀର୍ତ୍ତନର ଦୋଷ ଦେଖାନ୍ତି, ମୋ ସହିତ କୀର୍ତ୍ତନ କରିବାକୁ ସଙ୍କୋଚବୋଧ କରନ୍ତି। ପୁଣି ସେହିମାନେ ପରେ ନେତା ହୋଇ କୀର୍ତ୍ତନ କରନ୍ତି। ରାତି ରାତି ଉଜାଗର ହୋଇ କୀର୍ତ୍ତନ କରିବା ଦେଖିଛି। ସେଥିରେ ସେମାନଙ୍କର ଉନ୍ନତି ହୁଏ। ୧୯୮ ଶତାବ୍ଦ ଗ୍ରୀଷ୍ମୀୟ ଆନ୍ଦୋଳନ ବେଳେ ମୁଁ ଓ ମୋର ସାଥୀମାନେ ଇଂରେଜ ସରକାର ବିରୁଦ୍ଧରେ ନାନାପ୍ରକାର କଟୁ ମନ୍ତବ୍ୟ ଦେଉଥିଲୁ। ତାଙ୍କର ପ୍ରତ୍ୟେକ କାର୍ଯ୍ୟକୁ କଟୁ ସମାଲୋଚନା କରୁଥିଲୁ। ଆଜି ଯେତେବେଳେ ଆମର ସେହି ସାଙ୍ଗମାନେ ଶାସନ ଗାଦିରେ ବସି ସେଇ ସ୍ଥାନମାନଙ୍କରେ ପହଞ୍ଚିଗଲେ, ସେଠାରେ ମଧ୍ୟ ସେମାନେ ବହୁ ଖରାପ କାର୍ଯ୍ୟ କରୁଛନ୍ତି ଏବଂ ବହୁତ ଢଙ୍ଗରେ ନିଜ କାର୍ଯ୍ୟକୁ ସମର୍ଥନ କରୁଛନ୍ତି। କଥା ହେଉଛି ଯେ ସେହି ଖରାପ କାର୍ଯ୍ୟ ଭିତରେ ନିଜର ବାସନା ପୂରଣ କରିବାର ଭାବନା ଲୁଚି ରହିଛି। ଯେତେବେଳେ ସେହି ବାସନା ପୂର୍ତ୍ତି କରିବାର ସମୟ ଆସିଯାଏ, ସେହି ପ୍ରତିକୂଳ ଆଲୋଚନା ଅନୁକୂଳ ରୂପ ନିଏ। ପ୍ରଥମେ ମୁଁ ଲେଖକ, ପ୍ରକାଶକ ଏବଂ ପ୍ରେସବାଲାଙ୍କର କଟୁସମାଲୋଚନା କରୁଥିଲି। ଆଜି ନିଜେ ସେହି ପ୍ରକାଶକର ଜଞ୍ଜାଳ ପଡ଼ି ଯାଇଛି। ବର୍ତ୍ତମାନ ଯେଉଁ ପ୍ରେସବାଲାଙ୍କୁ ଦେଖିବାମାତ୍ରେ, ଆନନ୍ଦର ସହ ତାଙ୍କୁ ସାକ୍ଷାତ କରୁଛି, ତାଙ୍କ ସହିତ ଦ୍ୱାରା ସମ୍ପର୍କ ଯୋଗ ସମ୍ବନ୍ଧ ସ୍ଥାପିତ କରୁଛି। ତାଙ୍କର ଆଖିବୁଜିଆ ସ୍ୱାଗତ କରୁଛି। ଭାଗବତ କଥା ଯାହାଙ୍କ ଦ୍ୱାରା ପ୍ରଚାର ଏବଂ ପ୍ରସାର ହେବ, ତାଙ୍କ ପ୍ରତି ସ୍ନେହ ପ୍ରକଟ କରୁଛି। 'ସର୍ବଃ ସ୍ୱାର୍ଥଂ ସମୀହତେ'।

କେତେକ ଲୋକ କହନ୍ତି—"ହେ ମହାରାଜ ! ଆପଣଙ୍କର କଣ ସ୍ୱାର୍ଥ ! ଆପଣ ତ ସବୁ ପରୋପକାର ପାଇଁ କରୁଛନ୍ତି। ଆପଣଙ୍କର ଦୋକାନବାଲା ନାହିଁ। ଲାଭ କ'ଣ ? ଓଲଟା କଷ୍ଟ ସହିବାକୁ ହେଉଛି। ଏ ସବୁ ମୁହଁଦେଖା କଥା। ଆର୍ଥିକ ଲାଭ ନ ହେଲେ ମଧ୍ୟ ମନୁଷ୍ୟ କେବଳ ଆର୍ଥିକ ଲାଭ ପାଇଁ ମନ କରୁ [illegible]। ଆର୍ଥିକ ଲାଭ ହେଉଛି ଅଧର୍ମ ଲାଭ। ନାମ ପାଇଁ, ଯଶ ଓ ପ୍ର[illegible] ପାଇଁ ଲୋକ ଧନକୁ ପାଣି ପରି ବୁହାଇଦିଏ। ଫାଶୀ ଖୁଣ୍ଟରେ ମଧ୍ୟ ହସି ହସି ଚଢ଼ିଯାଏ।

ନାମ ପଛରେ "ରାୟସାହେବ' 'ରାୟବାହାଦୂର' ଲଗାଇବା ପାଇଁ ଲୋକମାନେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରୁଥିଲେ । ଦୋକାନରେ ଲାଭ ବା କ୍ଷତି ହେଉ, ତା'ର କୌଣସି ହିସାବ ରଖୁ ନ ଥିଲେ । ଲୋକମାନେ ନିଜ ନାମର ବିଜ୍ଞାପନ ନିମିତ୍ତ ଯାହା ଇଚ୍ଛା ତାହା କରନ୍ତି । ପ୍ରକୃତପକ୍ଷେ ସବୁଠାରେ ଭାଗବତ କଥା କିମ୍ବା ଭଗବାନଙ୍କ ନାମକୀର୍ତ୍ତନର ପ୍ରଚାର ହେଉ, ମୋର ପ୍ରଯତ୍ନ ଦ୍ୱାରା ହେଉ, ଏହା ମଧ୍ୟ ମୋର ଆନ୍ତରିକ ଇଚ୍ଛା । ଏହି ବାସନାର ବଶୀଭୂତ ହୋଇ ଏହିସବୁ କାର୍ଯ୍ୟମାନ କରୁଛୁ । ଏହି ସବୁ ଜଞ୍ଜାଳ ଭିତରେ ଛନ୍ଦି ହୋଇଛୁ । ହେ ଭଗବାନ ! କହଲ ମାୟା ଭିତରେ ତୁମେ ମୋତେ ଛନ୍ଦି ଦେଲ, ହଁ, ସବୁ ଆପଣାର କରୁଥିବା କର୍ମ । ଯେଉଁଭଳି ମଞ୍ଜି ପୋତିବ, ସେହିଭଳି ଫଳ ମିଳିବ ।

ପ୍ରଥମେ ଭାବିଥିଲି ଏପରି ଥିଲା କି ୫୦-୬୦ ଖଣ୍ଡରେ ଏହି ପୁସ୍ତକ ସମ୍ପୂର୍ଣ୍ଣ ହେବ । ମାତ୍ର ଯେତେବେଳେ ଲେଖିବାକୁ ବସିଲି ଏପରି ଅନୁଭବ ହେଲା ଯେ ଏତିକରେ ସମ୍ପୂର୍ଣ୍ଣ ହେବନାହିଁ । ଆଜି ମୁଁ ୭୦୧ ଅଧ୍ୟାୟ ଲେଖିଲି । ସେଥିରେ ନବମ ସ୍କନ୍ଧର ୧୧ ଅଧ୍ୟାୟର ୧୮ ଶ୍ଳୋକ ସମ୍ପର୍କରେ ଲେଖିଲି । ପ୍ରତ୍ୟେକ ଖଣ୍ଡରେ କୋଡ଼ିଏ ଅଧ୍ୟାୟ ରହିଛି । ନବମ ସ୍କନ୍ଧ ପୂର୍ଣ୍ଣ ହେଲାବେଳକୁ ମୋର ଅନୁମାନ ପଚାଶ ଖଣ୍ଡ ହୋଇଯିବ । ନବମ ସ୍କନ୍ଧ ପର୍ଯ୍ୟନ୍ତ ଭାଗବତରେ କେବଳ ଭୂମିକା ରହିଛି । (ଦଶମସ୍ୟ ବିଶୁଦ୍ଧ୍ୟର୍ଥଂ ନବାନାମିହ ଲକ୍ଷଣମ୍) ଭାଗବତ କଥାର ମୁଖ୍ୟ କଥା ଦଶମ ସ୍କନ୍ଧ ଠାରୁ ଆରମ୍ଭ । ଦଶମରେ ଅନ୍ତତଃପକ୍ଷେ ପଚାଶ ଖଣ୍ଡ ରଖିବାକୁ ହେବ । ଏକାଦଶ ଓ ଦ୍ୱାଦଶ ଆଠ ଖଣ୍ଡରୁ କ'ଣ କମ୍ ହେବ ! ଏହିଭଳି ଏକଶହ ଆଠ ଖଣ୍ଡ ଯାଏଁ ଅନୁମାନ କରାଯାଇପାରେ । ଏହା ସମ୍ଭବ ହେବ, ଯେତେବେଳେ ଖୁବ୍ ସଂକ୍ଷେପରେ ଏହା ଲେଖା ହେବ । ଗୋଟିଏ ଗୋଟିଏ ଶ୍ଳୋକକୁ ଧ୍ୟାନ ସହିତ ଦେଖିଲେ ଜଣାଯାଏ, ତାହା ଉପରେ ଗୋଟିଏ ଗୋଟିଏ ଗ୍ରନ୍ଥ ଲେଖା ଯାଇପାରେ । ଲେଖିବାରେ ମୋତେ ଅତ୍ୟନ୍ତ ଆନନ୍ଦ ମିଳେ । ଯଦି ଦେଶକାଳର ବନ୍ଧନ ନ ଥାନ୍ତା, ବାହାରର କୌଣସି ଜଞ୍ଜାଳ ନ ଥାନ୍ତା, ତେବେ ମୁଁ ନିରନ୍ତର ଲେଖି ଚାଲନ୍ତି । ଭଗବତ କଥା ଅନନ୍ତ, ତାହାର ଆଦି ନାହିଁ, ଅନ୍ତ ନାହିଁ, ଅବସାନ ନାହିଁ, ସମାପ୍ତି ନାହିଁ । ଆମେ କାଳରୂପକ ଜାଲ ଭିତରେ ପଶିଥିବା ପ୍ରାଣୀ ଆପଣାର ସ୍ୱାର୍ଥ ଯୋଗୁଁ ତାହାକୁ ସଂକ୍ଷିପ୍ତ କରଦେଉଛୁ । ଗଙ୍ଗାଜୀଙ୍କର ଲହରି ପ୍ରାତଃଠାରୁ ସନ୍ଧ୍ୟା ପର୍ଯ୍ୟନ୍ତ ଗଣି ଆମକୁ କହେ, ଆଜି ୧୦୮ ଖଣ୍ଡ ଲହରି ଆସିଛୁ, କିନ୍ତୁ ତା ଅନନ୍ତ କାଳଠୁ ଆସୁଛି । ତାହା ଅନନ୍ତକାଳ ପର୍ଯ୍ୟନ୍ତ ଆସୁଥିବ । ଆମ୍ଭେ କାଳର ସୀମା ନିରୂପିତ କରି କୌଣସି ଦିନଠାରୁ ମଝିରୁ ଗଣିବା ଆରମ୍ଭ କରିବା ଦ୍ୱାରା ମିଥ୍ୟା ସଂଖ୍ୟାର ନିର୍ଣ୍ଣୟ କରିଥାଉ ।

ଏହି କଥାରେ ମୋର ନିଜର କିଛି ନାହିଁ । ବଗିଚାରୁ ଫୁଲ ନେଇ ମାଳୀ ଗୋଟିଏ ମାଳା ପ୍ରସ୍ତୁତ କରେ, ସେଥିରେ ସୂତାଟି କେବଳ ତାର; ନଚେତ୍ ମାଳାଟିରେ ଏପରି କୌଣସି ଫୁଲ ନାହିଁ ଯାହା ପୁଷ୍ପବୃକ୍ଷର ନୁହେଁ । ତାହା ମଧ୍ୟ ଅନ୍ୟଦ୍ୱାରା ପ୍ରସ୍ତୁତ । ମାଳୀ ମାଳାର ନିମିତ୍ତ ମାତ୍ର । ଏହି ପ୍ରକାରେ ଭାଗବତ କଥାର ସମସ୍ତ କଥା ବ୍ୟାସଜୀଙ୍କର ସମସ୍ତ ଶାସ୍ତ୍ରର ସାରନିର୍ଯ୍ୟାସ ରୂପେ ନିଆଯାଇଛି । ସୂତଜୀଙ୍କର କୃପାରୁ ଶୌନକ, ଇତ୍ୟାଦି ମୁନିଗଣଙ୍କର ଅନୁଗ୍ରହରୁ ଏହା ଶୁଣାଯାଇଛି । ଏହି ହେତୁ ପ୍ରତ୍ୟେକ ଖଣ୍ଡର ପ୍ରଥମ ପୃଷ୍ଠାରେ ଏହି ଶ୍ଳୋକ ଲେଖାଯାଇଛି—

"ବ୍ୟାସ ଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱତା,
କୃତା ବୈ ପ୍ରଭୁଦତ୍ତେନ ମାଳା 'ଭାଗବତୀ କଥା' ।"

ବ୍ୟାସ ଶାସ୍ତ୍ରରୂପକ ଉପବନରୁ ଫୁଲମାନଙ୍କୁ ସଂଗ୍ରହ କରି ପ୍ରଭୁଦତ୍ତ ଭାଗବତ କଥା ରୂପକମାଳା ପ୍ରସ୍ତୁତ କରିଛନ୍ତି । ପ୍ରକୃତରେ ଏହା ନିତ୍ୟବସ୍ତୁ । ଏହା ଯେତେ ବିସ୍ତାରିତ ହେଲେହେଁ ସ୍ୱଳ୍ପ ପରି ଅନୁଭୂତ ହେବ ।

କେତେକ ଲୋକ କହନ୍ତି—ମହାରାଜ ! ୧୦୮ ଖଣ୍ଡ ବହୁତ ବେଶୀ । କିଏ ଏହାକୁ କିଣିବ । ବହୁତ ଦାମ୍ । ଧନୀଲୋକମାନଙ୍କର ଭଗବାନଙ୍କର କଥାରେ ଅଭିରୁଚି ନାହିଁ । ଗରିବ ଲୋକ ଏତେ ବଡ଼ ପୁସ୍ତକ କିଣି ପାରିବେ ନାହିଁ । ତେବେ ଏହା କେତେଦିନ ପର୍ଯ୍ୟନ୍ତ ପ୍ରକାଶିତ ହେବ । ପ୍ରତ୍ୟେକ ବର୍ଷ ଖଣ୍ଡିଏ ପ୍ରକାଶିତ ହେଲେ ନବେ ବର୍ଷ ଲାଗିବ । ଏତେ ଧୈର୍ଯ୍ୟ କାହିଁ ? ଛପାଇବାକୁ ଏତେ ଟଙ୍କା କେଉଁଠୁ ଆସିବ, ଇତ୍ୟାଦି ।

ଏହି ସବୁ କଥାର ଗୋଟିଏ ମାତ୍ର ଉତ୍ତର । ଭଗବାନଙ୍କୁ ଯେଉଁ କାର୍ଯ୍ୟ କରିବାର ଅଛି, ଏହା ଅସମ୍ଭବ ଜଣାଯାଉଥିଲେ ମଧ୍ୟ ସମ୍ଭବ ହୋଇପଡ଼େ । ଯାହା ନ ହେବାର ଥାଏ, ତାହା ଯେତେ ସାଧନ ଓ ପ୍ରଚେଷ୍ଟା କଲେ ମଧ୍ୟ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇପାରେ ନାହିଁ । ମନୁଷ୍ୟର ଅଧିକାର କେବଳ କର୍ମ ଉପରେ । ଫଳ ମିଳିବା ନ ମିଳିବା ଭଗବାନଙ୍କ ଉପରେ । ଯେଉଁମାନଙ୍କ ପାଖରେ ଧନ ଅଛି, ସେମାନେ କଥାକୀର୍ତ୍ତନରେ ଏହି ଧନବ୍ୟୟ କରିପାରିବେ ନାହିଁ । ସେମାନେ କରିବାକୁ ଚାହିଁଲେ ମଧ୍ୟ କରିପାରିବେ ନାହିଁ । ସେମାନଙ୍କର ଏପରି ଭାଗ୍ୟ ନାହିଁ । ସେମାନଙ୍କର ଦ୍ରବ୍ୟ ଯେପରି ହେବ, ସେହିପରି କାର୍ଯ୍ୟରେ ବିନିଯୋଗ ହେବ । ଯଦି ସେମାନେ ହିସାବ କରନ୍ତି, ତେବେ ଦିନଟିଏ ବଞ୍ଚିବା ମଧ୍ୟ କଷ୍ଟକର ବ୍ୟାପାର । ମାସକୁ ଟିଣେ ଘିଅ ଖର୍ଚ୍ଚ ହେବ । ପଚିଶ ବର୍ଷ ଯଦି ବଞ୍ଚେ, ତେବେ ଦଶ ହଜାର ଟଙ୍କା ହେଲା । "ହାୟ ! ଦଶ ହଜାର କେଉଁଠୁ ଆସିବ । ଘିଅ ଖାଇବା ବନ୍ଦ କରିଦେବା ।"

ଏଇଥି ଲାଗି କେହି ଖାଇବା ବନ୍ଦ କରି ଦିଏନାହିଁ । ଜୀବନର ଆବଶ୍ୟକ କାର୍ଯ୍ୟ ନିମିତ୍ତ ଟଙ୍କା ପଇସା ସଞ୍ଚୟ କରାଯାଏ । ଗରିବ ଲୋକ ଯଦି କୌଣସି ଅପରାଧ ପାଇଁ ଧରାଯାଏ, ତାକୁ ମୁକୁଳାଇବା ପାଇଁ ଯେକୌଣସି ଉପାୟରେ ୧୦୦।୨୦୦ ଟଙ୍କା ଯୋଗାଡ଼ କରିପାରେ । ଆବଶ୍ୟକତା ସୃଷ୍ଟି ହେଲେ ଉପାୟ ମନକୁ ମନ ଯୁଟିଯାଏ । ବରିଷ ଦିନରେ ଗୋଟିଏ ଦିନ ବଞ୍ଚାଇବା ସାଧାରଣ ଲୋକମାନଙ୍କ ପାଇଁ କଠିନ ନୁହେଁ, କାରଣ ପ୍ରତ୍ୟେକ କାର୍ଯ୍ୟ ପାଇଁ ଚାନ୍ଦା ସଂଗ୍ରହର ପ୍ରଚାର ବ୍ୟାପକ । ଜଣେ ଦେଲେ କୋଡ଼ିଏ ଜଣ ଅଣେ ଅଟଣ ଏକାଠି କରି ମଗାଇ ପାରନ୍ତି । ଶୁଣି ପାରନ୍ତି ଓ ଶୁଣାଇ ପାରନ୍ତି । ଯାହାଙ୍କ ମନରେ ଭାଗବତ କଥା ପାଇଁ ପ୍ରେମ ଅଛି, ସେତ କୌଣସି ଉପାୟରେ ପଇସା ଯୋଗାଡ଼ କରିଦେବେ । ଯାହାଙ୍କର ପ୍ରେମ ହେବନାହିଁ, ତାଙ୍କୁ ବିନା ମୂଲ୍ୟରେ ବହି ଦେଲେ ତାହା କେବଳ ପଡ଼ିରହିବ । ଛପାଇବା କାମ ମୋର ନୁହେଁ । ନିଜର ସମସ୍ତ ଶକ୍ତି ଦେଇ ପ୍ରଯତ୍ନ କରିବି । ସଫଳ ନ ହେଲେ ଭଗବାନଙ୍କର ଇଚ୍ଛା । ଲୋକଙ୍କର ପ୍ରଥମେ ବିଚାର ଥିଲା, ବାର ଖଣ୍ଡ ପ୍ରକାଶିତ ହେବ କି ନାହିଁ କେଜାଣି । ଆମ ଟଙ୍କା ପାଣିରେ ଗଲାଗଲା । ନାହିଁ ତ ? ମୁଁ ପାଠକଙ୍କୁ ଏହି ବିଶ୍ୱାସ ଦେଇପାରେ ଯେ ୧୨।୧୪ ଆମ ଦୃଷ୍ଟିରେ କୌଣସି ମହତ୍ତ୍ୱର ବସ୍ତୁ ନୁହେଁ । ତାକୁ ପ୍ରକାଶ କରିବା ପାଇଁ କୌଣସି ଢୋଲ ବଜାଇବାର ଆବଶ୍ୟକତା ନାହିଁ । ଆମର ଇଚ୍ଛା, ଏହାର ପ୍ରଚାର ହେଉ । ଯଦି ଛାପିବା ନିମିତ୍ତ ଆମେ ଅକ୍ଷମ ହୋଇଗଲୁ, ତେବେ କଥା ସ୍ୱତନ୍ତ୍ର । ଏହାର ମୂଲ୍ୟ ହେତୁ କାହାକୁ କଷ୍ଟ ଦେବା ଆମର ଉଦ୍ଦେଶ୍ୟ ନୁହେଁ । ବିକ୍ରୀ ନ ହେଲେ ଦାମ ଫେରାଇ ଦେବା ନିଶ୍ଚିତ କଥା । ଯଦି ଏପରି ହୁଏ, ତେବେ ଆଗ ଖଣ୍ଡ ବାହାର ନ କରି ପାରିଲେ କମ୍ବା ଦାମ ଫେରାଇ ନ ପାରିଲେ, ପାଠକ ସନ୍ତୋଷ ହେବା ଉଚିତ । ତାର କୌଣସି କ୍ଷତି ହେବନାହିଁ, ଏହା ପ୍ରଥମରୁ କହି ରଖିଛୁ—

"ଗଙ୍ଗାରେ ସ୍ନାନ ଆଉ ବିପ୍ରରେ ଦାନ
ବୁଡ଼ିଲେ ମୁକ୍ତି ତଥା ଉଠିଲେ ପୁଣ୍ୟ ।"

ଚତୁର୍ଦ୍ଦଶ ଖଣ୍ଡ ଆପଣଙ୍କ ପାଖରେ ପହଞ୍ଚିଗଲା । ପଞ୍ଚଦଶ ଖଣ୍ଡ ଛପା ଚାଲିଛି । ଏହିଭଳି ଭାବରେ ପ୍ରକାଶିତ ହେବ । ପରିସ୍ଥିତି ଅନୁକୂଳ ହେଲେ ମାସକୁ ଦୁଇଖଣ୍ଡ ପ୍ରକାଶିତ ହେବାର ବିଚାର ରହିଛି । ତା ସହିତ ପୂର୍ବଖଣ୍ଡ ମଧ୍ୟ ପ୍ରକାଶିତ ହୋଇଥିବ । ତାକୁ ମଧ୍ୟ ଛାପିବାକୁ ପଡ଼ିବ ଯେ ପର୍ଯ୍ୟନ୍ତ ଭାଗବତ କଥାର ପାଠକ ପୂର୍ଣ୍ଣ ସହଯୋଗ ନ ଦେଇଛନ୍ତି, ସେ ପର୍ଯ୍ୟନ୍ତ ଏ କାର୍ଯ୍ୟ କରିବା ବଡ଼ କଷ୍ଟକର ବ୍ୟାପାର । ତେଣୁ ପ୍ରତ୍ୟେକ ଚେଷ୍ଟା କରିବା ଉଚିତ, ପ୍ରତ୍ୟେକ ଏହାର ଗ୍ରାହକ

ବଢ଼ାଇବା ପାଇଁ ପ୍ରଯତ୍ନ କରିବା ଆବଶ୍ୟକ । ପ୍ରସ୍ତୁତି କାଳେ ଅନ୍ୟାନ୍ୟ ଭାଷାରେ ମଧ୍ୟ ଭାଗବତ କଥା ବାହାରିବା ଆରମ୍ଭ ହୋଇଯିବ । ନିଜର ପ୍ରେସ ନ ଥିବା ହେତୁ ବହୁ ଟଙ୍କାର ସମ୍ମୁଖୀନ ହେବାକୁ ହେଉଛି । ତେଲୁଗୁରେ ପ୍ରକାଶିତ ହେଲାଣି; ଏବେ ଗୁଜରାଟୀରେ ପ୍ରକାଶିତ ହେବ । ବର୍ତ୍ତମାନ ପଞ୍ଚମ ଖଣ୍ଡର ଏକମାତ୍ର କପି ମଧ୍ୟ କାର୍ଯ୍ୟାଳୟରେ ନାହିଁ । ଷଷ୍ଠ ଖଣ୍ଡ ମଧ୍ୟ ସମାପ୍ତ । ଦେଖାଯାଉ ଭଗବାନଙ୍କର ଇଚ୍ଛା କ'ଣ । ପାଠକମାନଙ୍କୁ ଯଦି ଏହି କଥା ରୁଚିକର ହେଉଛି, ତେବେ ସମସ୍ତେ ସେହି ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ଉଚିତ ଯେ ଏହି ସବୁ ଖଣ୍ଡ ପୁଣି ହୋଇ ପ୍ରକାଶିତ ହୋଇଯାଉ, ତତ୍ସହିତ ମୋ ପାଇଁ ମଧ୍ୟ ପ୍ରାର୍ଥନା କରିବାକୁ ନ ଭୁଲନ୍ତୁ ଯେପରି ପ୍ରଭୁ ପାଦପଦ୍ମରେ ମୋର ଭକ୍ତି ରହୁ, ଭଗବାନଙ୍କର ସୁମଧୁର ନାମ ଓ ତାଙ୍କର ଲୋକପାବନ କଥା ପ୍ରତି ଅନୁରାଗ ରହୁ ଏବଂ ତାହାର ପ୍ରଚାର ଓ ପ୍ରସାର କରିବାକୁ ଶକ୍ତି ମିଳୁ । ଯେପରି ଭାଗବତ କଥା ଅନନ୍ତ, ସେହିପରି ମୋର କଥା ମଧ୍ୟ ଅନନ୍ତ: ମାତ୍ର ଗଙ୍ଗାଜଳ ସମ୍ମୁଖରେ ମଇଳା ଜଳ ରଖି ପାଠକର ରୁଚିକୁ ଅରୁଚି କରିବା ପରିବର୍ତ୍ତରେ ମୋର କୁକଥା ନ ଶୁଣି ଭାଗବତ ସୁକଥା ଶ୍ରବଣ କରନ୍ତୁ ।

## ଛପ୍ପୟ

"କୋ ଜଗ ଏସୋ ପୁରୁଷ ଦୋଷ ଜାମେ ନହିଁ ହୋୱୈ ।
ସୌ ପରନିନ୍ଦା କରେ ବ୍ୟର୍ଥ ଗୁନ୍ ଅପନେ ଖୋୱୈ ॥
ତାଇ ଗୁନନି ତେଁ କାମ ଦେଖି ଗୁନ ତଜ କେ ଅବଗୁନ୍ ।
ଜୋ ସୋଚେ କୋ କହେ ହୋହି ନହିଁ ସୋଇ ତବ ମନ ॥
ତାତେଁ ତଜ କେ ଦୋଷ ଗୁନ୍, କୃଷ୍ଣ ଚରନ ମହଁ ସୌପି ଚିତ୍ ।
କର ହର କୀର୍ତ୍ତନ ନିୟମ ତେଁ ଭାଗବତୀ ସୁନ୍ କଥା ନିତ୍ ॥"

ସଂକୀର୍ତ୍ତନ ଭବନ, ଝୁଂସୀ
ଫାଲ୍‌ଗୁନ ଶୁକ୍ଳ ୨୦୦୪ ବିଂ



ପାଠକଙ୍କର କୃପାଭିଳାଷୀ
ପ୍ରଭୁଦତ୍ତ



# ପ୍ରଚେତାଙ୍କୁ ନାରଦଙ୍କର ସଦୁପଦେଶ

(୩୦୫)

ତଜ୍ଜନ୍ମ ତାନି କର୍ମାଣି ତଦାୟୁସ୍ତନ୍ମନୋ ବଚଃ
ନୃଣାଂ ଯେନେହ ବିଶ୍ୱାତ୍ମା ସେବ୍ୟତେ ହରିରୀଶ୍ୱରଃ ।
( ଭାଗବତ-୪-ସ୍କନ୍ଧ ୩୧-ଅଧ୍ୟାୟ ୯-ଶ୍ଳୋକ )

ଛପ୍‌ପୟ

ସବଇ ପ୍ରଚେଛଁ ପ୍ରଶ୍ନେ ! ସାର ଉପଦେଶ ସୁନାଓ ।
ମନ କୀ ଜୋଇ ଶଖ ଲଟ ଇ ଲଇ ମିଟାଓ ।।
ନାରଦ ବୋଲେ—ସୁନୋ, ସଫଳ ବହ ଜନ୍ମ କର୍ମ ମନ
ଜାତେ ସୁମିରନ ହୋହି କୃଷ୍ଣ କୋ ଧନ୍ୟବହୀ ତନ ।।
ବେଦ ପଢ଼ୟୋ ତପ କର କହା ? କାଲ ବିଗୟୋ ୟୋଗ କର ।
ପ୍ରେମବିନା ସବ ବ୍ୟର୍ଥ ହେଁ, ଜୋ ନହିଁ କହିଁ ଭକ୍ତି ହର ।।

ଯେଉଁ କର୍ମ ଆମକୁ ଅଧିକ ଅଧିକ ଚନ୍ତା ଭିତରେ ବୁଡ଼ାଇଦେଇ ସଂସାର ବନ୍ଧନରେ ଭର୍ତ୍ତି କରିଦିଏ, ତାହା କର୍ମ ନୁହେଁ କୁକର୍ମ । ସଫଳ କର୍ମ ହେଉଛି ସେହି ଯାହା ଆତ୍ମକୁ ସାଧନାର ସୋପାନରେ ଚଢ଼ାଇ ଶାନ୍ତିର ଶୀର୍ଷ ପର୍ଯ୍ୟନ୍ତ ନେଇ ପହଞ୍ଚାଏ । ଯେଉଁ ମୌନତା ଆମର ମୁଖକୁ ବୁଜାଇ ନେଇ ମୋହନ ନିକଟକୁ ନେଇଯାଏ, ତାହା ବାସ୍ତବିକ ମୌନ ଅଟେ । ନଚେତ୍ ବାକ୍ୟ ବନ୍ଦ କରି ମୌନୀ ବାବା ପାଲଟି ଯିବା ପେଟ ପୁରାଇବା ନିମିତ୍ତ ଏକ ଠକବିଦ୍ୟା । ସେହି ବ୍ରତ ସଫଳ ଯାହା ଆମକୁ ବନମାଳୀଙ୍କର ପାଦପଦ୍ମ ନିକଟରେ ପହଞ୍ଚାଏ । ଯେଉଁ ବ୍ରତରେ ଏପରି ନହୁଏ, ତାହା କେବଳ ରୋଜଗାର କରି ପେଟ ପୋଷିବାର ମାଧ୍ୟମ । ପ୍ରଭୁ

ପାଦପଦ୍ମରେ ଦୃଢ଼ ଅନୁରାଗ ରହିବା ପାଇଁ ବର୍ଣ୍ଣାଶ୍ରମ ଧର୍ମକୁ ଦୃଢ଼ ହୃଦୟରେ ପାଳନ କରାଯାଏ । ଯେଉଁ କର୍ମରେ ଏପରି ନହୁଏ, ତାହା କେବଳ ଶ୍ରମ ମାତ୍ର ଅଟେ ।

ମୈତ୍ରେୟ ଋଷି କହୁଛନ୍ତି—"ବିଦୁର ! ଯେତେବେଳେ ପ୍ରଚେତାମାନେ ଦେବର୍ଷି ନାରଦଙ୍କୁ ପରମାର୍ଥ ସମ୍ପର୍କିତ ଏହିଭଳି ପ୍ରଶ୍ନ କଲେ, ସେତେବେଳେ ପୂଣ୍ୟକୀର୍ତ୍ତି ପ୍ରଭୁ ପାଦପଦ୍ମରେ ନିଜର ମନକୁ ସ୍ଥିରକରି ଭଗବାନ ନାରଦ ମହାଶୟ ସେହି ରାଜାମାନଙ୍କୁ କହିବାକୁ ଲାଗିଲେ—"ପୁତ୍ରମାନେ ! ମୁଁ ତୁମ୍ଭର ପିତା ପ୍ରାଚୀନବର୍ହିଙ୍କୁ ମଧ୍ୟ ଆତ୍ମଜ୍ଞାନର ଉପଦେଶ ଦେଇଥିଲି, ତାହାର ସାରାଂଶ ବର୍ତ୍ତମାନ ତୁମ୍ଭମାନଙ୍କୁ ଶୁଣାଉଅଛି । ତୁମ୍ଭେମାନେ ସମାହିତ ହୃଦୟରେ ଏହାକୁ ଶ୍ରବଣ କର । ଯେଉଁ କର୍ମଦ୍ୱାରା ସର୍ବାନ୍ତର୍ଯ୍ୟାମୀ ଶ୍ରୀହରି ପ୍ରସନ୍ନ ହୋଇ ଯାଆନ୍ତି, ବାସ୍ତବରେ ତାହାହିଁ ହେଉଛି କର୍ମ । ଅନ୍ୟ ସବୁ କର୍ମ ବ୍ୟର୍ଥ, ସଂସାରବନ୍ଧନରେ ବୁଡାଇ ରଖେ, ଚୌରାଶି ଚକ୍ରରେ ବୁଲାଏ ଏବଂ ପୁରୁଷକୁ ଯାବୋଡ଼ ଧରେ, ଯାହା ଯୋଗୁଁ ଜନ୍ମରୁ ପୁଣି ପୁର୍ନଜନ୍ମ ଧାରଣ କରିବାକୁ ହୁଏ, ତାହା ଜନ୍ମ ନହୋଇ ଜଞ୍ଜାଳହୁଏ । ସେହି ଜନ୍ମ ସାର୍ଥକ ଅଟେ, ଯାହାକୁ ନେଇ ପୁଣି ଜନ୍ମ ନେବାକୁ ନ ପଡ଼େ । ତାହାର ବଞ୍ଚିବା ସାର୍ଥକ, ଯାହାର ପ୍ରତ୍ୟେକ ଶ୍ୱାସ ପ୍ରଶ୍ୱାସ ଶ୍ରୀହରିଙ୍କ କାର୍ଯ୍ୟରେ ଲାଗେ । ନଚେତ୍ ତାହାର ଆୟୁ ନିରର୍ଥକ, ସମୟର ଦୁରୁପଯୋଗ ମାତ୍ର । ସେହି ମନକୁ ମନ କୁହାଯାଏ ଯାହା ମନମୋହନଙ୍କର ମଧୁର ମୂର୍ତ୍ତି ସହିତ ଲାଗିଯାଏ । ବିଷୟ କଳ୍ପିତ ମନ ବେଶ୍ୟା ଅଟେ । ତାର କାର୍ଯ୍ୟ ପ୍ରତ୍ୟେକ ସମୟରେ ହିଂସା ଆଚରଣ ପୂର୍ବକ ପାପ ପେଟ୍‌ଲାଟିକୁ ଭାରି କରେ । କହିବାର ସାର୍ଥକତା ସେଇଠି, ଯାହାଙ୍କର ମୁଖରୁ ଶ୍ରୀହରିଙ୍କର ସୁମଧୁର ନାମ ହିତ୍ତ୍ରେର ନିର୍ଗତ ହେଉଥାଏ, ଭଗବାନଙ୍କର ନାମ ଓ ଗୁଣକୁ ଛାଡ଼ି ସେ ଦ୍ୱିତୀୟ କଥା କିଛି କହି ନଥାଏ ।

ପ୍ରଚେତାମାନେ ପଚାରିଲେ,—"ଭଗବନ ! ଯେଉଁସବୁ ଶ୍ରେଷ୍ଠ ତାହାର ପ୍ରକାର କପରି ? କେଉଁଥିପାଇଁ ଏସବୁ କରାଯାଏ ?"

ନାରଦ କହିଲେ—"ଦେଖ ପିଲାମାନେ ! ଆତ୍ମାରୂପୀ ଶ୍ରୀହରି ସମସ୍ତ ପ୍ରାଣୀମାନଙ୍କର ପ୍ରିୟ ଠାରୁ ପ୍ରିୟତମ ଆତ୍ମା । ଶ୍ରୀହରିଙ୍କର ଉପଲବ୍ଧି ସମସ୍ତ ଶ୍ରେୟର ମୂଳାଧାର । ସେ ହିଁ ଆତ୍ମା । ତାଙ୍କୁ ଜାଣିବାକୁ ଆତ୍ମଜ୍ଞାନ କୁହାଯାଏ, ତାଙ୍କର ଦର୍ଶନ ହିଁ ଆତ୍ମଦର୍ଶନ । ଅନ୍ତ୍ୟାଂଗରଣ ଦ୍ୱାରା ତାଙ୍କୁ ଆଲିଙ୍ଗନ କରିବାକୁ ଆତ୍ମରତି ବା ଆତ୍ମକ୍ରୀଡ଼ା କରାଯାଏ । ଯେଉଁ କର୍ମଦ୍ୱାରା ତାହାଙ୍କର ପ୍ରାପ୍ତି ହୁଏ, ସେହି କର୍ମହିଁ ସାର୍ଥକ । ଅନ୍ୟ ସମସ୍ତ କର୍ମକୁ ନିରର୍ଥକ କର୍ମ କୁହାଯାଏ ।

ବେଦରେ ଶ୍ଳୋକ, ସାବିତ୍ରୀ ଏବଂ ଯାଜ୍ଞିକ ଏହି ତିନି ଜନ୍ମକୁ ଶ୍ରେଷ୍ଠ ଜନ୍ମ କୁହାଯାଏ । ଶୁଦ୍ଧକୁଳ ଏବଂ ଉଚ୍ଚବଂଶରେ ଜନ୍ମ ନେବା ବ୍ୟକ୍ତିକୁ ଶୌକ୍ର ଜନ୍ମ ବୋଲି କହନ୍ତି । ଉଚ୍ଚକୁଳରେ ଜନ୍ମ ନେଇ ଶାସ୍ତ୍ରୀୟ ସଂସ୍କାର ନଥିଲେ ସଂସ୍କାରହୀନ ଦ୍ୱିଜ କୁହାଯାଏ । ଜନ୍ମ ପରେ ପାଞ୍ଚ, ଛଅ ବା ଆଠବର୍ଷରେ ଯଜ୍ଞୋପବୀତ ସଂସ୍କାର ରୂପ ନେଇ ଯେଉଁ ଗାୟତ୍ରୀ ମନ୍ତ୍ରର ଉପଦେଶ ମିଳେ, ଏହାକୁ ଦ୍ୱିତୀୟ ସାବିତ୍ରୀ ଜନ୍ମ କୁହାଯାଏ । ଏହାପରେ ବେଦାଧ୍ୟୟନ ପୂର୍ବକ ବିବାହ ପରେ ଯେଉଁ ବଡ଼ ବଡ଼ ଯଜ୍ଞରୁ ଦୀକ୍ଷା ନିଆଯାଏ, ଏହାକୁ ଯାଜ୍ଞିକଜନ୍ମ କୁହାଯାଏ । ଏହି ତିନିଗୋଟି ଜନ୍ମ ବିଧିବିଧାନ ପୂର୍ବକ ଶ୍ରେଷ୍ଠ ଅଟେ ଏବଂ ଏହା କରିବା ଦ୍ୱାରା ଯଦି ହୃଦୟରେ ଭଗବଦ୍ଭକ୍ତି ଉତ୍ପନ୍ନ ନ ହୁଏ, ତେବେ ତାର କୌଣସି ବିଶେଷ ମହତ୍ତ୍ୱ ରହେନାହିଁ, ଯେତେ ବେଦ ବିଧାନ ଅନୁଯାୟୀ ଶୁଭ କର୍ମ କଲେ ମଧ୍ୟ, ଆପଣଙ୍କର ଆୟୁ ମନ୍ୱନ୍ତର ବା କଳ୍ପ ପରି ଦୀର୍ଘ ହେଲେ ମଧ୍ୟ, ଚାରି ବେଦର ପ୍ରବକ୍ତା ହେଲେ ବି, ତପସ୍ୟା କରି କରି ସମସ୍ତ ଶରୀରକୁ ଶୁଖାଇ ଦେଇଥିଲେ ବି, ସଂସାରରେ ସବୁଠାରୁ ଶ୍ରେଷ୍ଠ ବକ୍ତା ହୋଇଗଲେ ମଧ୍ୟ, ସ୍ମରଣ ଶକ୍ତି ଯେତେ ତୀବ୍ର ହେଲେ ହେଁ, ଏକା ଥରକେ ଶତ ସହସ୍ର କଥାକୁ ସ୍ମରଣ କରି କହିଦେଲେ ମଧ୍ୟ, ଯେତେ ବନମାଳୀ ହେଲେହେଁ ଇନ୍ଦ୍ରିୟରେ ଯେତେ ଅଧିକ ତେଜ ଓ ଶକ୍ତି ସାମର୍ଥ୍ୟ ଥିଲେ ବି, ଯୋଗଶାସ୍ତ୍ରର ଯେତେବଡ଼ ପ୍ରଖର ପ୍ରବକ୍ତା ହେଲେ ମଧ୍ୟ, ଗଣିତଶାସ୍ତ୍ର ଓ ନ୍ୟାୟ ଶାସ୍ତ୍ରର ଯେତେ ବଡ଼ ଧୂରନ୍ଧର ବିଦ୍ୱାନ ହୋଇଥିଲେ ହେଁ, ସମସ୍ତ ଶାସ୍ତ୍ରରେ ଯେତେ ପାରଙ୍ଗମ ହୋଇଥିଲେ ହେଁ, ଯେତେ ଲୌକିକ, ବୈଦିକ ବିଦ୍ୟାର ବିଶାରଦ ହୋଇ ମଧ୍ୟ, ଯଦି ଏହି ସବୁ ଥାଇ ସର୍ବାନ୍ତର୍ଯାମୀ ପ୍ରଭୁଙ୍କର ପାଦପଦ୍ମ ପ୍ରତି ଭକ୍ତି ନହୁଏ, ଭଗବାନଙ୍କ ପ୍ରତି ଭକ୍ତି ନଆସେ, ତେବେ ଏହା ସବୁ ବ୍ୟର୍ଥ ଓ ନିରର୍ଥକ, ବନ୍ଧନର କାରଣ ହୋଇଯାଏ । ପ୍ରାଣୀର ସାମଗ୍ରିକ ଜୀବନରେ ଦାସ୍ୟଭାବ ନ ଆସିଲେ ହୃଦୟରେ ଅନନ୍ୟପ୍ରତି ପ୍ରେମଭାବ ପ୍ରକାଶିତ ନହେଲେ, ପ୍ରତ୍ୟେକ ସାଧନା ମୂଲ୍ୟହୀନ ଅଟେ ।

ପ୍ରଚେତାମାନେ ପଚାରିଲେ, "ପ୍ରଭୁ ! ସମସ୍ତଙ୍କୁ ପ୍ରେମ କିପରି କରାଯାଇ ପାରିବ ? ଅନେକ ଲୋକ ସ୍ୱାଭାବିକରୂପେ ଆମ ସହିତ ଦ୍ୱେଷ ରଖୁଛନ୍ତି । ଅନେକଙ୍କୁ ଆମେ ଜାଣୁନା, ଅନେକଙ୍କ ସହିତ କଥାବାର୍ତ୍ତା କରି ପାରୁନାହୁଁ । ନିଜର ମନୋଗତ ଭାବକୁ ସେମାନଙ୍କୁ ବୁଝାଇ ପାରୁନାହୁଁ । ତେଣୁ ସମସ୍ତଙ୍କ ସହିତ ଏକା ସାଙ୍ଗରେ ପ୍ରେମ କରିବା କଠିନ ବୋଲି ମନେ ହେଉଛି ।"

ଏହା ଶୁଣି ନାରଦ କହିଲେ, "ପିଲାମାନେ ! ସମସ୍ତଙ୍କ ପାଖକୁ ଯିବାର କୌଣସି ଆବଶ୍ୟକତା ନାହିଁ । ଦେଖ, ତୁମ ଶରୀରରେ ହାତ, ଗୋଡ଼, ମୁହଁ,

ଆଖି, କାନ, ନାକ, ଆଙ୍ଗୁଳି ଏବଂ ଆହୁରି କେତେ ଅଙ୍ଗ ଅଛି । ତୁମେ ଏହି ସବୁ ଅଙ୍ଗକୁ ଅଲଗା ଅଲଗା କରି ଖାଦ୍ୟଦେବା ଦରକାର ପଡ଼େନା । ଆଖିରେ ଜ୍ୟୋତି ବୃଦ୍ଧି କରିବା ପାଇଁ ଗରମ ଗରମ ହାଲୁଆ ଖିଆ ଯାଏନା । ଗୋଡ଼ର ଶକ୍ତି ବୃଦ୍ଧି କରିବା ପାଇଁ ପୃଥକ ରୂପେ ଗୋଡ଼କୁ ଦୁଧ ପିଆ ଯାଏନା । ହାତକୁ ପୃଥକଭାବେ ଘିଅ ଖିଆ ଯାଏନା । ତୁମେ କେବଳ ମୁହଁ ବାଟେ ଖାଦ୍ୟକୁ ପେଟ ଭିତରେ ପହଞ୍ଚାଇ ଦିଅ, ପ୍ରତ୍ୟେକ ଅଙ୍ଗ ଗୁଡ଼ିକ ଆପେ ଆପେ ତୃପ୍ତ ହୋଇଯିବେ । ବୃକ୍ଷରେ ଅନେକ ଶାଖା ଓ ଉପଶାଖା ରହିଛି । ସେଗୁଡ଼ିକୁ ଭିନ୍ନ ଭିନ୍ନ ଭାବରେ ପାଣି ଦିଆ ଯାଏନାହିଁ । ତୁମେ କେବଳ ମୂଳରେ ପାଣି ଢାଳ । ପତ୍ର ପର୍ଯ୍ୟନ୍ତ ତୃପ୍ତି ଆସିଯିବ । ଏହିଭଳି ରୂପେ ତୁମେ ପ୍ରଭୁଙ୍କ ସହିତ ପ୍ରେମକର । ଭଗବାନଙ୍କୁ ନିଜର ସମସ୍ତ ବୋଲି ଭାବ । ସମସ୍ତଙ୍କର ଲୋମ ଲୋମରେ ସେହି ତ ବିଦ୍ୟମାନ ! ସମସ୍ତଙ୍କର ହୃଦୟ ଦେଶରେ ବିରାଜମାନ କରି ସେହିତ ପ୍ରେରଣା ଦେଉ ଅଛନ୍ତି, ସମସ୍ତଙ୍କୁ ସେହି କାର୍ଯ୍ୟ କରାଉଛନ୍ତି, ତୁମେ ତାଙ୍କ ସହିତ ସମ୍ପର୍କ ଯୋଡ଼ିଦିଅ, ଦେଖିବ ସମସ୍ତେ ତୁମ ସହିତ ଆପେ ଆପେ ସମ୍ପର୍କ ଗୁନ୍ଥି ଦେଉଛନ୍ତି । ବର ବିବାହ କରିବାକୁ ଯାଏ, ସମସ୍ତଙ୍କ ସହିତ ପୃଥକ ପୃଥକ ସମ୍ପର୍କ କରେ ନାହିଁ । କିନ୍ତୁ ସାଙ୍ଗରେ କେବଳ ବିବାହ କରେ । ବିବାହ କରିବା ପରେ, କନ୍ୟା ସହିତ ସମ୍ପର୍କ ରଖିଥିବା ଯେତେ ସ୍ତ୍ରୀ ପୁରୁଷ ସମସ୍ତେ ସମ୍ପର୍କିତ ହୋଇ ଯାଆନ୍ତି । କିଏ ଶ୍ୱଶୁର ହୁଏ, କିଏ ଶଳା, କିଏ ଶାଳୀ ବା କିଏ ଶଳାଭାଉଜ, ଏହିଭଳି ଭାବେ ଭଗବାନଙ୍କ ସହିତ ପ୍ରେମହେଲେ ପ୍ରତ୍ୟେକ ପ୍ରାଣୀ ପ୍ରେମ କରିବାକୁ ଲାଗେ । ଭକ୍ତର ଶତ୍ରୁ କେହି ନାହିଁ । ସେ ସମସ୍ତଙ୍କୁ ନିଜର ସୁହୃଦ ବୋଲି ଭାବେ କାରଣ ତାହାର ପ୍ରଭୁ ଶ୍ରୀହରି ପ୍ରତ୍ୟେକ ପ୍ରାଣୀଙ୍କର ସ୍ୱାଭାବିକ ବନ୍ଧୁ ଅଟନ୍ତି ।"

ପ୍ରଚେତାମାନେ ପଚାରିଲେ—"ଭଗବନ୍ ! ତେବେ ଏହି ଚରାଚର ଜଗତକୁ ପ୍ରେମ କରିବା ନା କେବଳ ଭଗବାନଙ୍କୁ ପ୍ରେମ କରିବା । ଏହି ଜଗତ ହେଉଛି କାର୍ଯ୍ୟ, ଭଗବାନ ଏହାର କାରଣ । ଜଗତ ବୃକ୍ଷ, ଭଗବାନ ଏହାର ବୀଜ । ମାତ୍ର ଏମାନେ ପରସ୍ପର ଭିନ୍ନ ଭିନ୍ନ ଏଥିରେ ଶ୍ରେଷ୍ଠ କିଏ ? ଏହାଙ୍କୁ ଭିନ୍ନ ଭିନ୍ନ ଭାବରେ ଉପାସନା କରିବା ନା ଅଭେଦ ଭାବରେ ?"

ଏହା ଶୁଣି ନାରଦ ଋଷି ହସି କହିଲେ—"ଭାଇମାନେ ! ତୁମ୍ଭମାନଙ୍କୁ ତ ସବୁ କଥା ଜଣା, ତୁମ୍ଭଙ୍କୁ ସ୍ୱୟଂ ଶ୍ରୀହରି ନିଜେ ପୂର୍ଣ୍ଣରୂପରେ ବୁଝାଇ ଦେଇଅଛନ୍ତି । ଦେଖ, ସୂର୍ଯ୍ୟଙ୍କ ବାହୁରେ ବୁଝାଯାଉଛି, ଯେ ଗ୍ରୀଷ୍ମକାଳରେ ସମସ୍ତ ପ୍ରାଣୀ-ମାନଙ୍କର ଦେହରୁ, ବାପୀ, କୂଅ ଓ ପୋଖରୀରୁ ଏବଂ ସମୁଦ୍ରରୁ ପାଣି ଟାଣି ନିଜ ସହିତ ମିଶ କରିଦିଏ । ଯେତେବେଳେ ବର୍ଷାକାଳ ଆସେ, ଏହି ଜଳକୁ ନିଷ୍କାସନ

ଜରେ । ଏହିପରି ଭାବରେ ଏ ଚରାଚର ବିଶ୍ୱ ପ୍ରଳୟ କାଳରେ ବିରାଟ ଭଗବାନଙ୍କ ଅଙ୍ଗରେ ଲୀନ ହୋଇଯାଏ । ଯେତେବେଳେ ସୃଷ୍ଟିର ସମୟ ଆସେ, ତହିଁ ମଧ୍ୟରୁ ପ୍ରାଣୀମାନଙ୍କର ସୃଷ୍ଟି, ସ୍ଥିତି ସମ୍ଭବ ହୁଏ । ଏହି ପ୍ରବାହ ଅନାଦିକାଳରୁ ଚଳି ଆସୁଅଛି, ଅନନ୍ତକାଳ ପର୍ଯ୍ୟନ୍ତ ଚାଲୁଥିବ ମଧ୍ୟ । ମାଟିର ଘଡ଼ା, ହାଣ୍ଡି, ସୁରେଇ ଇତ୍ୟାଦି ନାନାପ୍ରକାର ବାସନ ରହିଛି । ମାଟିର ଯାହା ତିଆରି, ଶେଷରେ ସେହି ମାଟିରେ ମିଶିଯାଏ । ସମସ୍ତ ଆସିବାମାତ୍ରେ ପୂର୍ଣ୍ଣ ପ୍ରସ୍ତୁତ ହୋଇଯାଏ । ଏହିଭଳି ଭାବରେ ଏହି ଗୁଡ଼ିକ ନିଷ୍ପନ୍ନ ହୁଏ ଏବଂ ତାହା ପରିତ ହିଁ ଲୀନ ହୋଇଯାଏ

ପ୍ରଚେତାମାନେ କହିଲେ -"ହଁ, ମହାରାଜ ! ଏ ସବୁ ତ ଠିକ୍; ମାତ୍ର ଜଳ ଅଲଗା, ସୂର୍ଯ୍ୟ ଅଲଗା । ଜଳ ଏବଂ ସୂର୍ଯ୍ୟ ଏକ ହୋଇ ପାରିବେ କିପରି ?"

ନାରଦ କହିଲେ, "ରାଜପୁତ୍ରମାନେ ' ଏଠାରେ ଭିନ୍ନ ଅଭିନ୍ନର ପ୍ରଶ୍ନୋତ୍ତର ନାହିଁ । ଏହା ପ୍ରବାହର ନିତ୍ୟତା ସମ୍ପର୍କରେ ଦୃଷ୍ଟାନ୍ତ ଥିଲା । ଜଗତ ଏବଂ ହରିଙ୍କ ମଧ୍ୟରେ ବାସ୍ତବରେ କୌଣସି ଭେଦ ନାହିଁ । ଏହି ଦୃଶ୍ୟ ଜଗତ ଶ୍ରୀହରିଙ୍କ ସ୍ଥୂଳ ଜଗତ ଅଟେ । ଯେପରି ସୂର୍ଯ୍ୟ ଓ ତାଙ୍କର ପ୍ରଭା । ସୂର୍ଯ୍ୟାଲୋକକୁ କ'ଣ ସୂର୍ଯ୍ୟଙ୍କ ଠାରୁ ପୃଥକ୍ କରିହୁଏ ? ଦୁଗ୍ଧ ଓ ତା'ର ଧବଳତା, ସୁବର୍ଣ୍ଣ ଓ ତା'ର କାନ୍ତି ଯେପରି ପରସ୍ପର ଠାରୁ ଅଭିନ୍ନ, ସେହିପରି ଭାବରେ ଜଗତ ଏବଂ ଶ୍ରୀହରି ଅଭିନ୍ନ ଅଟନ୍ତି । ନିଜ ଶରୀରକୁ ନେଇ ବିଚାର କର । ଜାଗ୍ରତ ଅବସ୍ଥାରେ ଇନ୍ଦ୍ରିୟଗୁଡ଼ିକ କାର୍ଯ୍ୟ କରିଥାଆନ୍ତି । ସୁଷୁପ୍ତି ଅବସ୍ଥାରେ ଲୀନ ହୋଇଯାଆନ୍ତି, ନିଶ୍ଚେଷ୍ଟ ହୁଅନ୍ତି । ଏହି ପ୍ରକାର ଭାବରେ ସୃଷ୍ଟି ଆରମ୍ଭରୁ ଏହି ଜଗତ ଶ୍ରୀହରିଙ୍କ ଶରୀରରେ ପ୍ରକଟିତ ହୋଇ ଆସୁଅଛି ! ପ୍ରଳୟ କାଳରେ ତାଙ୍କର ଶ୍ରୀଅଙ୍ଗରେ ଲୀନ ହୋଇ ନିଶ୍ଚେଷ୍ଟ ଭାବରେ ପଡ଼ି ରହନ୍ତି ।

ପ୍ରଚେତାମାନେ କହିଲେ—"ଭଗବନ୍ ! ଏହି କଥାରେ ଗୋଟିଏ ସନ୍ଦେହ ବାକି ରହିଯାଉଛି । ଯେପରି ଯେତେପ୍ରକାର ଦ୍ରବ୍ୟ ଅଛି, ଯେତେ କ୍ରିୟା ଅଛି ଏବଂ ଏହା ଏପରି ନୁହେଁ, ଏହିପରି ଭାବରେ ଯେଉଁ ଜ୍ଞାନାତ୍ମକ ଭେଦର ଭ୍ରମ ରହିଛି, ତେବେ ଏହା ତ ଈଶ୍ୱରଙ୍କ ଠାରେ ବୋଲି ସିଦ୍ଧ ହେଉଅଛି । ଯେତେବେଳେ ଈଶ୍ୱରଙ୍କଠାରେ ଏହିଭଳି ଭେଦଭ୍ରମ ରହିଛି, ତେବେ କିପରି ଏହା ଜ୍ଞାନସ୍ୱରୂପ ହେଲା ?"

ନାରଦଜୀ ଅତ୍ୟନ୍ତ ଗମ୍ଭୀର ସ୍ୱରକାରେ କହିଲେ—"ଆଚ୍ଛା ଦେଖ, ଆକାଶରେ ତୁମ୍ଭଙ୍କୁ କଣ ଦେଖାଯାଉଛି ?"

ପ୍ରଚେତାମାନେ କହିଲେ—"ମହାରାଜ ! ଆକାଶରେ ଆମ୍ଭଙ୍କୁ ସୂର୍ଯ୍ୟ, ଚନ୍ଦ୍ର , ବନ୍ଧୁ, ନକ୍ଷତ୍ର, ତାରା, ଇତ୍ୟାଦି ଦେଖାଯାଉଛନ୍ତି ।'"

ନାରଦ କହିଲେ—"ଏହାର ଅର୍ଥ ଏଇଆ ହେଲା ଯେ, ଆକାଶରେ ତୁମକୁ ପ୍ରକାଶ ଦେଖାଯାଉଛି, ପ୍ରକାଶ ବ୍ୟତୀତ ଅନ୍ୟ କିଛି ଦେଖାଯାଉନ ।"

ପ୍ରଚେତାମାନେ କହିଲେ—"ଏବଂ କେବେ କେବେ ମେଘ ମଧ୍ୟ ଦେଖାଯାଏ ।"

ନାରଦଜୀ କହିଲେ—"ମେଘ ବ୍ୟତୀତ ଶ୍ରାବଣ ଭାଦ୍ରବ ମାସ ଅମାବାସ୍ୟାରେ ଅନ୍ଧକାର ରାତିରେ କ'ଣ ଦେଖାଯାଏ ?"

ପ୍ରଚେତାମାନେ ଉତ୍ତର ଦେଲେ—"ଏହି ସମୟରେ ମହାରାଜ ! କେବଳ ଅନ୍ଧକାର ବ୍ୟତୀତ ଅନ୍ୟ କିଛି ଦେଖାଯାଏନ ।"

ନାରଦ ତତ୍‌କ୍ଷଣାତ୍ କହିଉଠିଲେ—"ହଁ, ଠିକ୍ । ଅନ୍ଧକାର କେବଳ ଦେଖାଯାଏ । ତୁମ୍ଭର କହିବା ହେଉଛି ଯେ କେବଳ ଅନ୍ଧକାର ବ୍ୟତୀତ ଅନ୍ୟ କିଛି ଦେଖାଯାଏ ନାହିଁ । ଅର୍ଥାତ୍ କେବଳ ଅନ୍ଧକାର । ଦେଖାଯାଏ ତ, ଅନ୍ଧକାର କେବଳ ହେଲେ ବି, ବର୍ତ୍ତମାନ ଆକାଶରେ ପ୍ରକାଶ, ମେଘ, ଅନ୍ଧକାର ଇତ୍ୟାଦି ଉତ୍ପନ୍ନ ହୁଏ, ଶେଷରେ ସେଥିରେ ହିଁ ଲୀନ ହୋଇଯାଏ, ମାତ୍ର ଆକାଶ ସର୍ବଦେଳେ ନିର୍ଲିପ୍ତ । କେହି କହି ପାରେ ନାହିଁ ଯେ, ଆକାଶ ପ୍ରକାଶ ଅନ୍ଧକାର ବା ମେଘମୟ ଅଟେ । ଏହି ପ୍ରକାର ଭାବେ ସେ ଭଗବାନଙ୍କ ଠାରୁ ରଜ, ତମ ଇତ୍ୟାଦି ଗୁଣମାନ ଉତ୍ପନ୍ନ ହୁଏ, ପୁଣି ଲୀନ ହୋଇଯାଏ । ଏହି ଗୁଣ ପ୍ରବାହ ନିରନ୍ତର ପ୍ରବାହିତ ହେଉଥାଏ, ମାତ୍ର ଶ୍ରୀହରି ତ୍ରିଗୁଣାତୀତ ଏବଂ ନିର୍ଗୁଣ ଅଟନ୍ତି । ମାୟାର ଗୁଣ ତାହାଙ୍କୁ ସ୍ପର୍ଶ କରି ପାରେନାହିଁ । ସେ କାଳ ରୂପରେ ଏହି ଜଗତ୍ର ନିମିତ୍ତ ପ୍ରକୃତି ବା ପ୍ରଧାନ ରୂପରେ ଉପାଦାନ ଅଟନ୍ତି । ପୁରୁଷ ରୂପରେ ସେ ସମସ୍ତ ଚରାଚର ଜଗତର ନିୟନ୍ତା ଅଟନ୍ତି । ସେ ସମସ୍ତଙ୍କ ଠାରେ ସମାନ ରୂପରେ ବ୍ୟାପ୍ତ ହୋଇଥିବା ହେତୁ ଆତ୍ମ ସ୍ୱରୂପ ଅଟନ୍ତି । ସେ ବ୍ରହ୍ମାଦି ଦେବତାଙ୍କ ଠାରୁ ଇନ୍ଦ୍ର ଆଦି ଲୋକପାଳଙ୍କର ଅଧୀଶ୍ୱର ଅଟନ୍ତି । ସେ ନିଜର ଚୈତନ୍ୟ ଶକ୍ତି ବଳରେ ସତ୍ୱ ଇତ୍ୟାଦି ଗୁଣର ପ୍ରବାହ ରୂପରେ ଚାଲି ଆସୁଛନ୍ତି ଏବଂ ଏହି ଦୃଶ୍ୟମାନ ପ୍ରପଞ୍ଚ ଠାରୁ ସର୍ବଦା ପୃଥକ ରହି ଅଛନ୍ତି । ସେହି ଆତ୍ମସ୍ୱରୂପ ଶ୍ରୀହରିଙ୍କର ଅଭେଦ ଭାବକୁ ତୁମେ ସର୍ବଦା ଭଜନ କର, ତାଙ୍କର ଅତିରିକ୍ତ ଅନ୍ୟ କୌଣସି ତତ୍ତ୍ୱ ନାହିଁ, ତାଙ୍କର ଅତିରିକ୍ତ ଅନ୍ୟ କୌଣସି ଚୈତନ୍ୟ ନାହିଁ, ତାଙ୍କୁ ଛାଡ଼ି ଅନ୍ୟ

କୌଣସିଥିରେ ଆନନ୍ଦ ନାହିଁ । ସେହି ସଚ୍ଚିଦାନନ୍ଦ ସ୍ୱରୂପ ଶ୍ରୀହରି ଏକମାତ୍ର ସମସ୍ତଙ୍କର ଭଜନୀୟ ଅଟନ୍ତି । ତୁମେ ସର୍ବାତ୍ମଭାବରେ ତାଙ୍କର ଶରଣ ନିଅ । ତାଙ୍କର ପ୍ରସନ୍ନତାକୁ ପ୍ରାପ୍ତ କର ।"

ପ୍ରଚେତାମାନେ ପଚାରିଲେ—"ଭଗବନ୍ ! ଭଗବାନଙ୍କର ପ୍ରସନ୍ନତା କିଭଳି ଭାବରେ ପ୍ରାପ୍ତ ହେବ, ତାହାର ଉପାୟ ବତାନ୍ତୁ । ଭଗବତ୍ ପ୍ରାପ୍ତି, ଶରଣାଗତିର ସାଧନ ବୁଝାଇ କହ ।"

ନାରଦ କହିଲେ—"ରାଜାମାନେ ! ଭଗବାନଙ୍କର ପ୍ରସନ୍ନତା ତାଙ୍କରି କୃପା ହେତୁ ଉପଲବ୍ଧି ହୋଇଥାଏ । ତଥାପି ମନୁଷ୍ୟ ତାଙ୍କ କୃପାର ପ୍ରତୀକ୍ଷା କରି ସେହି ସାଧନାରେ ଚିତ୍ତ ଲଗାଇ ରଖିଲେ ତାଙ୍କୁ ଭଗବାନଙ୍କର ପ୍ରସନ୍ନତା ନିଶ୍ଚିତ ରୂପେ ପ୍ରାପ୍ତ ହୁଏ । ସମସ୍ତ ପ୍ରାଣୀମାନଙ୍କୁ ସମାନ ଭାବରେ ନିଜର ଇଷ୍ଟଭାବନା କରି ଦୟାପୂର୍ବକ ସେ ବ୍ୟବହାର କରେ । ପ୍ରାରବ୍ଧ ହେତୁ ଯାହା କିଛି ପ୍ରାପ୍ତହୁଏ, ତାକୁ ଭଗବାନଙ୍କର ପ୍ରସାଦଭାବ ସେବନ କରେ, ସେଥିରେ ସନ୍ତୁଷ୍ଟ ରହେ । ନିଜର ଇନ୍ଦ୍ରିୟମାନଙ୍କୁ ସବୁବେଳେ ବିଷୟବାସନା ଠାରୁ ନିୟନ୍ତ୍ରିତ କରେ । ସବୁ ପ୍ରକାର ବାସନା ଠାରୁ ଦୂରରେ ରହେ । ଏହା କରିବା ଫଳରେ ମନର ମଳିନତା ଦୂର ହୁଏ, ଚିତ୍ତର ଚଞ୍ଚଳତା ବିଲୀନ ହୋଇଯାଏ । ଅହଙ୍କାର ନଷ୍ଟ ହୋଇ, ବୁଦ୍ଧି ଶୁଦ୍ଧ ହୁଏ । ଏହିଭଳି ଭାବରେ ଅନ୍ତଃକରଣ ନିର୍ମଳ ହୋଇଯିବା ଦ୍ୱାରା, ଭିତରର କୋଠରୀ ପରିଷ୍କାର ହେବା ଫଳରେ, ତନ୍ମଧ୍ୟରେ ଶ୍ରୀହରି ଆସି ବିରାଜମାନ କରନ୍ତି । ଏବଂ ସେହି ନିର୍ମଳଚିତ୍ତ ସତ୍ୟ ପୁରୁଷଙ୍କର ଅନ୍ତଃକରଣରୁ କେବେ ଦୂର ହୁଅନ୍ତି ନାହିଁ ଏବଂ ସେ ନିଶ୍ଚଳଭାବରେ ସେହିଠାରେ ଆବଦ୍ଧ ହୋଇ ରହନ୍ତି । ସେହି ବିଶୁଦ୍ଧ ହୃଦୟ ମନ୍ଦିରରେ ଶ୍ରୀହରିଙ୍କର ବିଧି ସମ୍ମତ ସମସ୍ତ ଉପଚାର ପୂଜା ଅର୍ଚ୍ଚନା କରିବା ଉଚିତ ।"

ପ୍ରଚେତାମାନେ ପଚାରିଲେ—"ମହାରାଜ ! ପୂଜା ଅର୍ଚ୍ଚନାର ନିମିତ୍ତ ସାମଗ୍ରୀ ନ ମିଳିଲେ କିମ୍ବା ଯଥେଷ୍ଟ ସାମଗ୍ରୀର ଅଭାବ ହେଲେ ପୂଜା କିପରି କରା ହେବ ।'

ଏହା ଉପରେ ନାରଦ ମୁନି କହିଲେ—"ଦେଖ ଭାଇ ! ଭଗବାନ ବାହ୍ୟ ପୂଜାରେ ଏତେ ସନ୍ତୁଷ୍ଟ ହୁଅନ୍ତି ନାହିଁ, ଯେତେ ପ୍ରେମରେ ଭାବାବେଗରେ ପୂଜା ହେବା ଦ୍ୱାରା ସନ୍ତୁଷ୍ଟ ହୁଅନ୍ତି । ଭଗବାନଙ୍କର ଏଠାରେ କିଛି ଧନ ବୈଭବ ପୂଜାପାଇଁ ଅଭାବ ତ ନାହିଁ । ସେ ସର୍ବଦା ପ୍ରେମ ବୁଭୁକ୍ଷୁ । ଯେ ନିଜର ଧନଗର୍ବ ବା ଉଚ୍ଚକୁଳ ହେତୁ ଅଭିମାନ କରି ନିଷ୍କିଞ୍ଚନ ସଜ୍ଜନମାନଙ୍କୁ ତିରସ୍କାର କରେ, ଏବଂ

ବହୁତ ବଡ ବଡ ମୂଲ୍ୟବାନ ସାମଗ୍ରୀ ଦ୍ୱାରା ଭଗବାନଙ୍କର ଶ୍ରୀବିଗ୍ରହକୁ ଅର୍ଚ୍ଚନା କରେ, ଭଗବାନ ସେହି ମଦଗର୍ବୀ ଅଭିମାନୀଙ୍କର ପୂଜାକୁ କେବେହେଲେ ସ୍ୱୀକାର କରନ୍ତି ନାହିଁ । ଯେ ଶୁଦ୍ଧ ଭାବନାରେ ତାଙ୍କ ଚରଣରେ ଭାବାବେଶରେ ପୁଷ୍ପ ଚଢ଼ାନ୍ତି, ଗୋଟିଏ ତୁଳସୀଦଳ ଅର୍ପଣ କରନ୍ତି, ଚଳୁ ପୂର୍ଣ୍ଣ ଜଳ ପ୍ରଦାନ କରନ୍ତି, ତେବେ ଭଗବାନ ତାଙ୍କର ସେହି ଭାବମୟୀ ଅଳ୍ପ ପୂଜାରେ ବହୁତ ଅଧିକ ସନ୍ତୁଷ୍ଟ ହୋଇଯାନ୍ତି । ସେ ଶ୍ରୀହରି ଲକ୍ଷପତି ହୋଇଥିଲେ ମଧ୍ୟ ନିଷ୍କିଞ୍ଚନ ପ୍ରିୟ ଅଟନ୍ତି । ସେ ଷଡୈଶ୍ୱର୍ଯ୍ୟ ସମ୍ପନ୍ନ ହୋଇଥିଲେ ସୁଦ୍ଧା ଦରିଦ୍ରମାନଙ୍କ ପ୍ରତି ଦୟା କରନ୍ତି, କାଙ୍ଗାଳମାନଙ୍କ ଉପରେ କୃପା କରନ୍ତି ଏବଂ ନିରାଶ୍ରୟମାନଙ୍କୁ ଆଶ୍ରୟ ପ୍ରଦାନ କରନ୍ତି । ଏହିଭଳି କୃପାଳୁପୁରୁଷ, ସମସ୍ତଙ୍କର ସୁହୃଦ, ଦୀନଦୁଃଖୀର ବନ୍ଧୁ ସେହି ଶ୍ରୀହରିଙ୍କୁ କେଉଁ କୃତଜ୍ଞପୁରୁଷ ପରିତ୍ୟାଗ କରିବ ? ହେ ପ୍ରଚେତା-ମାନେ ! ତୁମେ ସର୍ବାତ୍ମଭାବରେ ସେହି ଶ୍ରୀହରିଙ୍କର ଶରଣରେ ପଶ । ତାହା ତୁମ ପାଇଁ ମୋର ସାମୟିକ ଉପଦେଶ ।"

ମୈତ୍ରେୟ ମୁନି କହୁଛନ୍ତି—"ବିଦୁରଜୀ ! ଏହି ପ୍ରକାର ଭାବରେ ପ୍ରଚେତା-ମାନଙ୍କୁ ଉପଦେଶ ଦେଇ ତାଙ୍କଦ୍ୱାରା ଅଭ୍ୟର୍ଥିତ ହୋଇ ହରିଗୁଣ ଗାଇ ନାରଦ ବ୍ରହ୍ମଲୋକକୁ ଗମନ କଲେ ।"

## ଛପ୍ପୟ

"ହେ ଜଗ ହରିକୋ ରୂପ ଇନ୍ହିଁ ତେ ପୈଦା ହୋଏଁ ।
ଜନମେଁ ଇ ଥିର ରହେ ଅନ୍ତ ମହ ଉନ ମହଁ ସୋଏଁ ॥
ସବ ମହଁ ସତତହିଁ ବ୍ୟାପ୍ତ ରୂପ ଚୈତନ୍ୟ କହାଏଁ ।
ସୁଖ ସ୍ୱରୂପ ଭଗବାନ ଜୀବ ଆନନ୍ଦ ତହଁ ପାଏଁ ॥
ଶରଣାଗତ ବତ୍ସଲ ଅମଲ ସ୍ୱତଃ ତୃପ୍ତ ପରିପୂର୍ଣ୍ଣ ପ୍ରଭୁ ।
ଭକ୍ତବତ୍ସଲ ଅଟେ ଟେଣ, ଅଜ ଅବିନାଶୀ ଅଲଖ ବିଭୁ ॥"



# ବିଦୁର ମୈତ୍ରେୟ ସମ୍ବାଦ ସମାପ୍ତ

( ୩୦୭ )

"ଇତ୍ୟାନମ୍ୟ ଦମାମନ୍ତ୍ର୍ୟ ବିଦୁରୋ ଗଜସାହ୍ୱୟମ୍ ।
ସ୍ୱାନାଂ ଦିଦୃକ୍ଷୁଃ ପ୍ରୟୟୌ ଜ୍ଞାତିନାଂ ନିର୍ବୃତାଶୟଃ ॥"

( ଭାଗବତ-୪-ସ୍କନ୍ଧ ୩୧-ଅଧ୍ୟାୟ ୩୦-ଶ୍ଳୋକ

## ଛପ୍‌ପୟ

"ବିନା ଶରନ ହରି ଗୟେ ଶାନ୍ତି ସୁଖ ଜୀବ ନ ପାୱେ ।
ଚୌବିସ ମହଁ ଭ୍ରମେ ବିବିଧ ଯୋନିନ ମହ ଯାୱେ ॥
ତାତେଁ ସବ କଛୁ ତ୍ୟାଗି ଶରଣ ଶ୍ରୀହରି କ ଜାଓ ।
କରିକେ ଓନକୋ ଧ୍ୟାନ ପରମପଦ ତବ ତୁମ ପାଓ ॥
ବୋଲେ ମୁନି ମୈତ୍ରେୟ ସୁନି, ଜ୍ଞାନ ପ୍ରଚେତେନ କୁଁ ଦୟୋ ।
ବିଦୁର ! ସୁଖଦ ସଂବାଦ ୟହ, ସାର ମୂଲ ତୁମତେ କହ୍ୟୋ ॥"

ସଂସାରରେ ଜନ୍ମ ଦେବା ପିତାର ଅଭାବ ନାହିଁ । ଯାହାର କୌଣସି ବି ଯୋଗ୍ୟତା ନାହିଁ, ସେ ମଧ୍ୟ ପିତା ହୋଇଯାଏ । ପରୋପକାର ପୁରୁଷ ଯଦିଓ ଅଳ୍ପ ସଂଖ୍ୟକ, ସେମାନେ ମଧ୍ୟ ଖୋଜିବା ଦ୍ୱାରା ଲାଭ ହୋଇଥାନ୍ତି । କ୍ଷୁଧାର୍ଥୀକୁ ଅନ୍ନ ଦେଇ ତୃପ୍ତ କରିବା ଲୋକ, ଶୋଷାର୍ତ୍ତର ତୃଷା ମେଣ୍ଟାଇବା ପାଇଁ ବାର୍ମି, କୂଅ, ପୋଖରୀ ଇତ୍ୟାଦି ପ୍ରସ୍ତୁତ କରି ଜଳଦାନ କରିବା ଲୋକ ମଧ୍ୟ ମିଳନ୍ତି । ନିଜ ଅର୍ଥରେ ଅଧ୍ୟାପକ ରଖି ବିଦ୍ୟାର୍ଥୀମାନଙ୍କୁ ବିଦ୍ୟାଦାନ କରୁଥିବା ପୁଣ୍ୟାତ୍ମା ମଧ୍ୟ ଏହି ପୃଥିବୀରେ ମିଳିଥାନ୍ତି । ଅସମର୍ଥ ଏବଂ ଆତୁର ରୋଗୀ ମାନଙ୍କର ଚିକିତ୍ସା କରି ତାଙ୍କୁ ବିନା ମୂଲ୍ୟରେ ଔଷଧ ଦେଇ ତାଙ୍କର ଦୁଃଖକୁ ଦୂର କରୁଥିବା ବା ହ୍ରାସ

କରୁଥିବା ବକ୍ତାବାଚକମାନେ ମଧ୍ୟ ଅଳ୍ପ ଅଧିକ ମିଳିଯାଆନ୍ତି । କିନ୍ତୁ ଜ୍ଞାନୋପଦେଶ ଦେଇ ହୃଦୟ ମଧ୍ୟରେ ଉଠୁଥିବା ସମସ୍ତ ମୂଳ ସଂଶୟକୁ ଛେଦନ କରୁଥିବା ସଦ୍‌ଗୁରୁ ମିଳିବା ବହୁତ କଷ୍ଟକର ବ୍ୟାପାର ।

ଆହା, ଏହା କେତେ ସୁଖମୟ ସମୟ ହୋଇ ନଥିବ, ଯେତେବେଳେ ଜ୍ଞାନ ପିପାସାରେ ପିପାସିତ ହୋଇ ଜିଜ୍ଞାସୁ ସଦ୍‌ଗୁରୁଙ୍କ ଶିଷ୍ୟ ଖୋଜି ଏଆଡ଼େ ସେଆଡ଼େ ବୁଲୁଥିବ । ଚାରିଆଡ଼େ ତାକୁ ଲାଗୁଥିବ କେବଳ ନିରାଶା । ବଡ଼ ବଡ଼ ଉପଦେଶରେ ସଜା ହୋଇଥିବା ଦୋକାନମାନଙ୍କ ନିକଟକୁ ଆଶା ନେଇ ସେ ଯାଇଥିବ ଏବଂ ସେହି ଉଚା ଦୋକାନ ମାନଙ୍କରେ ରନ୍ଧା ହୋଇଥିବା ବାସୀ ଅନ୍ନ ଦେଖି ନିରାଶ ହୋଇ ଫେରି ଆସୁଥିବ, ସେହି ସମୟରେ ତାହାର ମନୋବୃତ୍ତିର ଅଧ୍ୟୟନ ଯେ କରିଛୁ, ସେ ବୁଝି ପାରିବ ଯଦି ହଠାତ୍ ସଦଗୁରୁ ତାକୁ ପ୍ରାପ୍ତ ହୁଏ ତାର ହୃଦୟ କମଳ ପଡେ ହଠେ, ତାଙ୍କର ଦର୍ଶନମାନେ ଚିତ୍ତ ପ୍ରସନ୍ନ ହୁଏ, ନିଜେ ନିଜେ ସେ ଚିହ୍ନି ପାରେ । ଅନ୍ତଃକରଣରେ ବିଶ୍ୱାସ ସୃଷ୍ଟି ହୁଏ ଯେ ଏଠୁ ନିରାଶରେ ଫେରିବା ଦରକାର ହେବ ନାହିଁ । ଏହିଠାରେ ମୋର ବୁଭୁକ୍ଷା ଶାନ୍ତ ହେବ । ଏହିଠାରେ ଜ୍ଞାନପିପାସା ମେଣ୍ଟାଇବାପାଇଁ ନିରନ୍ତର ସୁଧା ମିଳିଯିବ । ପ୍ରଣାମ କରି ମନଭିତରେ ଥିବା ସନ୍ଦେହକୁ ସେ ଜଣାଇଲା । ସେଠାରୁ ଯେଉଁ ଉପଦେଶ ମିଳିଲା, ତାହା ହୃଦୟଭିତରକୁ ଚାଲିଗଲା । ଚିତ୍ତଶାନ୍ତ ହୋଇଗଲା, ସମସ୍ତ ସନ୍ଦେହ ଦୂରୀଭୂତ ହେଲା । ହୃଦୟ ଭିତରେ ଗ୍ରନ୍ଥି ହୋଇ ରହିଥିବା ଗ୍ରନ୍ଥିମାନ ଖୋଲିଗଲା । ସମସ୍ତ ସଞ୍ଚିତ କର୍ମ କ୍ଷୟ ହୋଇଯାଇ, କ୍ରିୟମାଣ କର୍ମରୁ ଆସକ୍ତି ଦୂର ହେଲା । ସେ ସମୟରେ ଯେଉଁ ଆନନ୍ଦ, ତାହାକୁ ବର୍ଣ୍ଣନା କରିବା ମନୁଷ୍ୟର ସମସ୍ତ ଶକ୍ତିର ବାହାରେ । ଏହା କହିବାର କଥା ନୁହେଁ, ଅନୁଭବର କଥା କେବଳ । ଯାହା ଉପରେ ସଦ୍‌ଗୁରୁଙ୍କର କେତେବେଳେ କୃପା ହୁଏ, ସେ କେବଳ ତାହା ଅନୁଭବ କରିପାରେ । ଯାହାଙ୍କୁ କେତେବେଳେ ହେଲେ ସଦ୍‌ଗୁରୁଙ୍କର ପାଦପଦ୍ମରେ ବସିବାର ସୌଭାଗ୍ୟ ମିଳିନି, ସେହି ଗୁରୁସ୍ଥାନ ଆନନ୍ଦ ବିଷୟରେ କ'ଣ ବୁଝି ପାରିବେ ?

ମୈତ୍ରେୟ ମୁନି କହିଲେ,—"ହେ ବିଦୂର ! ମୋର ଯାହା କିଛି ବୁଦ୍ଧି ଥିଲା, ଯେପରି ଭାବରେ ମୁଁ ଗୁରୁଙ୍କର ମୁଖାରବିନ୍ଦରୁ ଶୁଣିଥିଲି, ସେହିପରି ଭାବରେ ମୁଁ ତୁମକୁ, ନାରଦ ଏବଂ ପ୍ରଚେତାମାନଙ୍କ ଶୁଭ ସମ୍ବାଦ ଦେଲି, ଏବେ ତୁମେ କ'ଣ ଶୁଣିବାକୁ ଚାହୁଁଛ ? ଏପରିକି ମୁଁ ତୁମ ପାଖରେ ମନୁଙ୍କର ପୁତ୍ର ଉତ୍ତାନପାଦ ବଂଶ କଥା ବର୍ଣ୍ଣନା କଲି । ମୁଁ ପ୍ରଥମରୁ କହି ରଖିଛି ମହାରାଜ ସ୍ୱାୟଂଭୁବଙ୍କର ପ୍ରିୟବ୍ରତ ଓ ଉତ୍ତାନପାଦ ନାମରେ ଦୁଇପୁତ୍ର ଥିଲେ । ତାଙ୍କର ଠାରୁ ଉତ୍ତାନପାଦ ବଂଶର ପରମ

ଭକ୍ତ ଧ୍ରୁବଙ୍କ ଠାରୁ ପ୍ରଚେତାମାନଙ୍କ ପର୍ଯ୍ୟନ୍ତ ବର୍ଣ୍ଣନା କ୍ରମାନୁସାରୀ ମୁଁ ତୁମ ନିକଟରେ ବର୍ଣ୍ଣନା କଲି । ଏବେ ତୁମେ ଯାହା ପଚାରିବ, ମୁଁ ତାହା ତୁମ ନିକଟରେ ଶୁଣାଇବି ।"

ଏହା ଶ୍ରବଣ କରି ହାତ ଯୋଡ଼ି ପ୍ରେମାଶ୍ରୁ ନୟନରୁ ନିର୍ଗତ କରି ବିଦୁର ଗଦ୍ ଗଦ କଣ୍ଠରେ କହିଲେ,—ଗୁରୁଦେବ ! ବର୍ତ୍ତିମାନ ମୋର ପଚାରିବାର କିଛି ବାକି ରହିଲା ନାହିଁ । ବର୍ତ୍ତମାନ ମୋର ସମସ୍ତ ସନ୍ଦେହ ଦୂର ହୋଇ ଯାଇଛି । ଭଗବାନଙ୍କର ବଚନାମୃତ ଦ୍ୱାରା ମୋର ସମସ୍ତ ଶଙ୍କା ସମାଧାନ ହୋଇଗଲା । ମୋର ଜ୍ଞାନପିପାସା ଶାନ୍ତ ହୋଇଗଲା ।"

ଶ୍ରୀ ଶୁକଦେବ ରାଜା ପରୀକ୍ଷିତଙ୍କୁ କହୁଛନ୍ତି,—"ରାଜନ୍ ! ଏହି ପ୍ରକାର ଭାବରେ ମୁଁ ବିଦୁର ମୈତ୍ରେୟ ସମ୍ବାଦ ରୂପରେ ଏହି ଦିବ୍ୟ କଥା ତୁମ୍ଭଙ୍କୁ ଶୁଣାଇଲି । ଏଥିରେ ମନୁବଂଶର ରାଜାମାନଙ୍କର ଚରିତ୍ର ସହିତ ଭଗବାନଙ୍କର ଅବତାର ସମ୍ପର୍କରେ, ତାଙ୍କର ତ୍ରୈଲୋକ୍ୟପାବନ ଲୀଳା ସମ୍ପର୍କରେ ଦିବ୍ୟ ଉପଦେଶ ମାନ ନିହିତ ଅଛି, ଏହି ଉତ୍ତାନପାଦ ବଂଶ ବିଷୟରେ ଶୁଣାଇ ବର୍ତ୍ତିମାନ ତାଙ୍କର ଭାଇ ପ୍ରିୟବ୍ରତ ଏବଂ ତାଙ୍କ ବଂଶର ଚରିତ୍ର ସମ୍ପର୍କରେ ତୁମ ଆଗରେ ଶୁଣାଉଛି ।"

ଏହା ଶୁଣି ପ୍ରେମରେ ଅଧୀର ହୋଇ ଅତ୍ୟନ୍ତ ପ୍ରସନ୍ନତା ପ୍ରକଟ କରି ମହାରାଜ ପରୀକ୍ଷିତ କହିବାକୁ ଲାଗିଲେ—"ପ୍ରଭୋ ! ଆପଣ ଏହି ବିଦୁର ମୈତ୍ରେୟ ସମ୍ବାଦ ଅତ୍ୟନ୍ତ ରୁଚିକର ଭାବରେ ଶ୍ରବଣ କରାଇଲେ । ତାହାକୁ ଶୁଣି ମୋର ପ୍ରତ୍ୟେକ ଲୋମ ମୂଳ ଆନନ୍ଦରେ ଉତ୍ଫୁଲ୍ଲିତ ହୋଇ ଉଠିଲା । ମୋର ପିତାମହଙ୍କର ପୂଜନୀୟ ପିତୃବ୍ୟ ବିଦୁର ଯଥାର୍ଥ ଭାବେ ଭଗବତ୍‌କୃପାର ପାତ୍ର ଥିଲେ, ଯାହାଙ୍କ ପାଇଁ ଏହି ମରଣଶୀଳ ଶରୀରକୁ ତ୍ୟାଗ କରିବା ସମୟରେ ନିଜେ ସାକ୍ଷାତ ଭଗବାନ ମୈତ୍ରେୟ ମୁନିଙ୍କୁ ଉପଦେଶ ଦେବା ପାଇଁ ଆଦେଶ ଦେଇଥିଲେ । ଠିକ ସେହିଭଳି ଭାବେ ତାଙ୍କର ଭଗବତ୍ କୃପା ପାତ୍ର ସାକ୍ଷାତ ଭଗବାନ ସ୍ୱରୂପ ପୂଜନୀୟ ଗୁରୁଦେବ ଭଗବାନ ମୈତ୍ରେୟ ଥିଲେ । ମୋତେ କୃପାକରି କୁହନ୍ତୁ ସେମାନଙ୍କ ମଧ୍ୟରେ ଆଉ କ'ଣ କ'ଣ ଆଲୋଚନା ହେଲା । ମୈତ୍ରେୟ ମୁନିଙ୍କ ଠାରୁ ଶିକ୍ଷାଲାଭ କରି ଭକ୍ତମାନଙ୍କ ମଧ୍ୟରେ ଅଗ୍ରଣୀ ଶ୍ରୀ ବିଦୁର କେଉଁଠାକୁ ଗଲେ ?"

ଏହା ଶୁଣି ଶ୍ରୀ ଶୁକଦେବ କହୁଛନ୍ତି, "ହେ ରାଜା ! ମୈତ୍ରେୟ ମୁନିଙ୍କ ଠାରୁ ଉପଦେଶ ପାଇଁ ଅତ୍ୟନ୍ତ ଆନନ୍ଦିତ ଚିତ୍ତରେ ବିଦୁର ମହାଶୟ ଗୁରୁଦେବଙ୍କ ଚରଣ ତଳେ ସାଷ୍ଟାଙ୍ଗ ପ୍ରଣିପାତ କଲେ । ତାଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରି

ତାଙ୍କର ବିଧିପୂର୍ବକ ପୂଜାର୍ଚ୍ଚନା କରି କହିଲେ, "ହେ ମହାଯୋଗି ! ଆପଣ କରୁଣାର ସାକ୍ଷାତ ସଜୀବ ମୂର୍ତ୍ତି । ଅଜ୍ଞାନରୂପକ ଅନ୍ଧକାର ମଧ୍ୟରେ ଘୂରି ବୁଲିବା ମୋ ପରି ପ୍ରାଣୀମାନଙ୍କୁ ନିଜ ହାତରେ ଧରି ସେ ପାରିରେ ପହଞ୍ଚାଇ ଦେଉଛନ୍ତି, ଯେଉଁଠାରେ ଅକିଞ୍ଚନମାନଙ୍କର ସମ୍ପତ୍ତି, ମହାପୁରୁଷ ମାନଙ୍କର ପ୍ରାପ୍ତିସ୍ଥାନ ଭଗବାନ ବାସୁଦେବ ସ୍ୱୟଂ ବିରାଜମାନ କରୁଛନ୍ତି; ଯେଉଁଠାରେ ମାୟା ପ୍ରପଞ୍ଚର ଲେଶ ମାତ୍ର ସ୍ଥାନ ନାହିଁ । ଆପଣଙ୍କର ଅହେତୁକ କୃପା ହେତୁ କୃତାର୍ଥ ଅନୁଭବ କରୁଛି । ବର୍ତ୍ତମାନ ମୋତେ ଆଦେଶ ମିଳିବା ଆବଶ୍ୟକ । ଶୁଣିଛି, ପାଣ୍ଡବମାନେ ରାଜସିଂହାସନ ଆରୋହଣ କଲେଣି । ଧର୍ମରାଜ ଯୁଧିଷ୍ଠିରଙ୍କୁ ଦେଖିବା ପାଇଁ ମୋର ଚିତ୍ତ ଆକୁଳିତ ହେଉଛି ।"

ଏହା ଶୁଣି ମୈତ୍ରେୟ ମୁନି କହିଲେ, "ବିଦୁର ! ତୁମ୍ଭର ସର୍ବକଲ୍ୟାଣ ହେଉ । ତୁମେ ଭଗବାନଙ୍କର ବଡ଼ ଭକ୍ତ ଏବଂ ତତ୍ ସଙ୍ଗେ ସଙ୍ଗେ ମୋର ବନ୍ଧୁ ଭଗବାନ ବେଦବ୍ୟାସଙ୍କର ପୁତ୍ର । ଭଗବାନ ବାସୁଦେବଙ୍କର ପରମ କୃପାପାତ୍ର ! ବର୍ତ୍ତମାନ ତୁମେ ନିଶ୍ଚିନ୍ତରୂପେ ହସ୍ତିନାପୁର ଗମନ କର । ପାଣ୍ଡବମାନେ ମଧ୍ୟ ତୁମର ଦର୍ଶନ ପାଇଁ ଲାଳାୟିତ ହୋଇ ରହିଛନ୍ତି । ଧୃତରାଷ୍ଟ୍ର ମଧ୍ୟ ସଦାସର୍ବଦା ତୁମ୍ଭ କଥା ଚିନ୍ତା କରୁଛନ୍ତି । ମଙ୍ଗଳମୟ ଶ୍ରୀହରି ତୁମ୍ଭର ସର୍ବମଙ୍ଗଳ କରନ୍ତୁ ! ତୁମ୍ଭେ ଏହି ଉପଦେଶକୁ ସ୍ମରଣ ରଖିବ । ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ଚରଣ ତଳେ ସଦାସର୍ବଦା ଚିତ୍ତ ଲଗାଇ ରହିବ ।"

ଶ୍ରୀ ଶୁକଦେବ କହୁଛନ୍ତି, "ହେ ରାଜା ! ନିଜ ଗୁରୁଦେବଙ୍କଠାରୁ ଏହିପରି ଆଜ୍ଞା ଓ ଆଶୀର୍ବାଦ ଲାଭ କରି ବିଦୁର ତାଙ୍କ ଚରଣରେ ବାରମ୍ବାର ପ୍ରଣାମପୂର୍ବକ ହସ୍ତିନାପୁର ଗମନ କଲେ । ହସ୍ତିନାପୁରରେ ପହଞ୍ଚିବା ପରେ ଯେପରି ତାଙ୍କର ସ୍ୱାଗତ ସମ୍ଭାଷଣ ହେଲା, ଯେପରି ସେ ତାଙ୍କର ଜ୍ୟେଷ୍ଠ ଭାଇ ଧୃତରାଷ୍ଟ୍ର ଏବଂ ଗାନ୍ଧାରୀଙ୍କୁ ନେଇ ବଣକୁ ଗମନ କଲେ, ଯେଉଁପରି ହରିଦ୍ୱାରରେ ସେ ପ୍ରଭାସ କ୍ଷେତ୍ରକୁ ଯାଇ ନିଜର ନଶ୍ୱର ଶରୀରକୁ ତ୍ୟାଗ କଲେ, ସେହିସବୁ ଘଟଣାମାନ ମୁଁ ତୁମ୍ଭଙ୍କୁ ପୂର୍ବରୁ ଶୁଣାଇ ସାରିଛି । ଯେ ଏହି ବିଦୁର ମୈତ୍ରେୟ ସମ୍ବାଦକୁ ଶ୍ରଦ୍ଧା ସହକାରେ ଶୁଣିବ ସେ ଦୀର୍ଘାୟୁ, ଧନ, ଯଶ, କଲ୍ୟାଣ, ସଦ୍‌ଗତି ଏବଂ ଐଶ୍ୱର୍ଯ୍ୟ, ଇତ୍ୟାଦି ପ୍ରାପ୍ତ ହେବ ଏବଂ ପରିଶେଷରେ ଭଗବାନଙ୍କର ପାଦପଦ୍ମ ଲାଭ କରିବ ।

ବର୍ତ୍ତମାନ ଆପଣ କୁହନ୍ତୁ, ମୁଁ ଆପଣଙ୍କ ସମ୍ମୁଖରେ ଆଉ କେଉଁ କଥା ବ୍ୟାଖ୍ୟାନ କରିବି ? ସୂତ ମହାଶୟ କହୁଛନ୍ତି, "ହେ ମୁନିମାନେ ! ଭଗବାନ ଶୁକଦେବଙ୍କ ମୁଖରୁ ଏହା ଶ୍ରବଣ କରି ମହାରାଜ ପରୀକ୍ଷିତ ଘଟଣାବିନ୍ୟାସର

ବିତ୍ୟାଗ ନାହିଁ ହେବା ନମିତ୍ତ ସ୍ୱାୟଂଭୁବ ମନୁଙ୍କର ଅନ୍ୟ ପୁତ୍ର ଧ୍ରୁବଙ୍କର ପିତା ଉତ୍ତାନପାଦଙ୍କର ଭାଇ ପ୍ରିୟବ୍ରତଙ୍କ ବଂଶ ସମ୍ପର୍କରେ ଶୁଣିବାକୁ ଇଚ୍ଛା ପ୍ରକଟ କଲେ । ମହାମୁନି ଶୁକଦେବ ଯେଉଁପରି ଭାବରେ ରାଜା ପ୍ରିୟବ୍ରତଙ୍କର ବଂଶର ବର୍ଣ୍ଣନା କଲେ, ମୁଁ ତାକୁ ଆପଣମାନଙ୍କୁ ସଂପ୍ରଥମେ ଶୁଣାଇବି । ଆପଣମାନେ ସମସ୍ତେ ଧୀରସ୍ଥିର ଚିତ୍ତରେ ସେହି ବଳିର୍ମିଙ୍କର ପରମପାବନ ଚରିତକୁ ଶ୍ରବଣ କରନ୍ତୁ ।"

ସୁତ ମହାଶୟଙ୍କର ଏହି କଥା ଶୁଣି ଗାଢ଼ ନିଦ୍ରାରେ ନିଦ୍ରାଗତ ପୁରୁଷ ଯେପରି ହଠାତ୍ ଉଠି ଚାରିଆଡ଼କୁ ଦୃଷ୍ଟି ନିକ୍ଷେପ କରେ, ସେହିପରି ଭାବରେ ବୃଦ୍ଧି ମହାମୁନି ଶୌନକ ପଚାରିଲେ, "ସୁତ ମହାଶୟ ! ଆପଣ କି ଭଳି ଅଦ୍ଭୁତ କଥା କହୁଛନ୍ତି ? ଆମ୍ଭେମାନେ ଭୁଲି ଯାଇଥିଲୁ ଯେ ମହାରାଜ ପରୀକ୍ଷିତଙ୍କୁ ଶ୍ରୀ ଶୁକଦେବ ଏହି କଥା ଶୁଣାଉଛନ୍ତି । ବାରମ୍ବାର ମୈତ୍ରେୟ ମୁନି କହୁଛନ୍ତି, ଏହା ଶୁଣିବା ମାତେ ବିଦୁର ଏବଂ ମୈତ୍ରେୟ ଦୁହେଁ ମନରେ ରହିବେ । ଆମ୍ଭେ ଭାବୁଥିଲୁ ବିଦୁର ମୈତ୍ରେୟ ସମ୍ବାଦକୁ ଆପଣ ଶୁଣାଉ ଅଛନ୍ତି । ଆମ୍ଭ ଚକ୍ଷୁ ସମ୍ମୁଖରେ ଏ ପର୍ଯ୍ୟନ୍ତ ଭଗବତୀ ଭାଗୀରଥୀ କୂଳରେ ଆହ୍ଲାଦିତ ହୃଦୟରେ ବସିଥିବା ବିଦୁର ଓ ମୈତ୍ରେୟ ପ୍ରତ୍ୟକ୍ଷଭାବେ ଦୃଷ୍ଟ ହେଉଛନ୍ତି । ହଁ, ବିଦୁର ହସ୍ତିନାପୁର ଚାଲିଗଲେ, ମୈତ୍ରେୟ ମୁନି ଭଗବାନଙ୍କୁ ଧ୍ୟାନ କରି ତନ୍ମୟ ହେଲେ । ଏହିଠାରେ ବିଦୁର ମୈତ୍ରେୟ ସମ୍ବାଦ ସମ୍ପୂର୍ଣ୍ଣ ହେଲା । ବର୍ତ୍ତମାନ ମହାରାଜ ପରୀକ୍ଷିତ ଶ୍ରୀ ଶୁକଦେବଙ୍କୁ କେଉଁ ପ୍ରଶ୍ନ କଲେ । ସେହି କଥାକୁ ଆପଣ ଆମ୍ଭଙ୍କୁ ଶୁଣାନ୍ତୁ ।"

ଏହା ଶୁଣି ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ସୁତଜୀ କହିଲେ, "ମୁନିମାନେ ! ମହାରାଜ ପରୀକ୍ଷିତ ଯାହା କିଛି ପଚାରିଲେ ଏବଂ ମୋର ଗୁରୁଦେବ ଶୁକଦେବ ଯାହା ସବୁ ଉତ୍ତର ଦେଲେ ମୁଁ ତାହା ଆପଣମାନଙ୍କୁ ଶୁଣାଇବି । ଆପଣମାନେ ମୋ ଉପରେ କୃପା କଲେ, ମୁଁ ତାହାକୁ ଉତ୍ତମରୂପେ ଶୁଣାଇ ପାରିବି ।

## ଛପ୍‌ପୟ

ଶୁକ ମୁନି ବୋଲେ—'ଭୂପ ! ବିଶଦ ସମ୍ବାଦ ସୁନାୟୋ ।
ମୁନି ମୈତ୍ରେୟ ମହାନ୍ ବିଦୁରଜୀକେ ପ୍ରତି ଗାୟୋ ।
ଜୋ ନର ଜାକୁଁ ପଢ଼ହିଁ ପ୍ରେମତେ ସୁନହିଁ ସୁନାଵେ ।
ତେ ନିଶ୍ଚୟ ପରମେଶ ପରମ ପାବନ ପଦ ପାବେ ।।
ସ୍ୱାୟମ୍ଭୁବ ସୁତ ଧ୍ରୁବ ପିତା, ଭୂପ ଭୟେ ଉତ୍ତାନପାଦ ।
ବରନେୟା ତିନକୋ ବଂଶ ଅବ, ସୁନୋ ପ୍ରିୟବ୍ରତକୋ ବିଶଦ ।



# ମହାରାଜ ପ୍ରିୟବ୍ରତଙ୍କ ଚରିତ୍ରର
## ଉପୋଦ୍‌ଘାତ

"ପ୍ରିୟବ୍ରତୋ ଭାଗବତ ଆତ୍ମାରାମଃ କଥଂ ମୁନେ ।
ଗୃହେଽରମତ୍‌ ଯନ୍ମୂଲଃ କର୍ମବନ୍ଧଃ ପରାଭବଃ ॥"

( ଭାଗବତ ୫ମ ସ୍କନ୍ଧ ୧ମ ଅଧ୍ୟାୟ ୧ମ ଶ୍ଳୋକ )

### ଛପ୍‌ପୟ

"କହନ୍ତି ପରୀକ୍ଷିତ—ପ୍ରଭୋ ! ପରମଜ୍ଞାନୀ ନୃପ ପ୍ରିୟବ୍ରତ ।
କର୍ମବନ୍ଧ କସ ଫଁସେ ଗୃହୀ ବନି ପରମ ଭାଗବତ ॥
ଚରନ ଶରନ ହରି ଲଇ କିନନ ତେ ଫସେ ମୋହ କସ
ଧରମହୁଁ ଭକ୍ତି ନ ହୋଇ ଭଇ ଶଙ୍କା ମୋ ମନ ଅସ ॥
ହଁସି ବୋଲେ ଶୁକ—ଭୂପବର ! ସତ୍ୟ ବାତ ତୁମନେ କହୀ ।
କହୁଁ କଥା ସୁନୁ କୃଷ୍ଣକୀ, ଜସ ନୃପହରିପଦ ରତ୍‌ ଲହୀ ॥"

ଅନାଦିକାଳରୁ ଦୁଇଟି ମାର୍ଗ ଚାଲି ଆସୁଅଛି, ଗୋଟିଏ ପ୍ରବୃତ୍ତି ମାର୍ଗ ଓ ଅନ୍ୟଟି ନିବୃତ୍ତି ମାର୍ଗ । ପ୍ରବୃତ୍ତି ମାର୍ଗ ଆଚରଣ କରୁଥିବା ବ୍ୟକ୍ତି ସ୍ୱର୍ଗଲୋକ ପ୍ରାପ୍ତି କଲେ ମଧ୍ୟ ସଂସାରର ସକଳ ଜଞ୍ଜାଳ ମଧ୍ୟରୁ ମୁକ୍ତ ହୋଇ ପାରେନାହିଁ । ତାହାର ପାର୍ଥିବ ବିଷୟ ବା ଦିବ୍ୟ ବିଷୟ ପ୍ରତି କିଛି ନା କିଛି ଆସକ୍ତି ରହେ । ଏହି ଆସକ୍ତି ହେତୁ ପୁଣ୍ୟକ୍ଷୀଣ ହେଲେ ତାଙ୍କର ପୁନର୍ଜନ୍ମ ହୁଏ । ଯେ ନିବୃତ୍ତି ମାର୍ଗକୁ ଅବଲମ୍ବନ କରି ଚାଲେ, ତାର ଶରୀର ଯେ ପର୍ଯ୍ୟନ୍ତ ଅଛି, ସେ ପର୍ଯ୍ୟନ୍ତ ପ୍ରାରବ୍ଧ କର୍ମକୁ ସେ ଅନାଶକ୍ତ ଭାବରେ ଭୋଗ କରେ । ପ୍ରାରବ୍ଧ କ୍ଷୀଣ ହୋଇ ଆସିବା ମାତ୍ରେ ତାର ପରମପଦ ପ୍ରାପ୍ତି ଘଟେ । ସେ ହୁଏ ସତ୍ୟସ୍ୱରୂପ । ଯେ ପ୍ରବୃତ୍ତି

ମାର୍ଗକୁ ନିବୃତ୍ତି ମାର୍ଗର ସାଧନ ବୋଲି ଉପଲବ୍ଧି କରି କାମନା ବାସନାକୁ କ୍ଷୟ କରିବା ନିମିତ୍ତ, ଅନ୍ତଃକରଣକୁ ନିର୍ମଳ କରିବା ପାଇଁ ସ୍ୱୀକାର କରେ, ତାର ସାଂସାରିକ ବାସନା ଶାନ୍ତ ହେବାମାତ୍ରେ ସେ ସବୁ କିଛି ତ୍ୟାଗକରି ଶ୍ରୀହରିଙ୍କ ଆରାଧନାରେ ତତ୍ପର ହୋଇଉଠେ । ଏହିପରି ଲୋକମାନଙ୍କ ପାଇଁ ପ୍ରବୃତ୍ତି ମାର୍ଗ ବନ୍ଧନ ନହୋଇ ନିବୃତ୍ତି ମାର୍ଗର ସହାୟକ ହୋଇଥାଏ ।

ଶ୍ରୀ ଶୁକଦେବ କହୁଛନ୍ତି,—"ହେ ରାଜନ୍ ! ମହାରାଜ ସ୍ୱାୟମ୍ଭୁବ ମନୁଙ୍କ ପୁତ୍ର ପୁଣ୍ୟଶ୍ଳୋକ ମହାରାଜ ପ୍ରିୟବ୍ରତ ବଡ ଧାର୍ମିକ ଭଗବଦ୍ ଭକ୍ତ ଏବଂ ନିଜର ଆତ୍ମା ସହିତ ସଂଯୁକ୍ତ ଥିଲେ । ସେ ଚିରକାଳ ଗୃହସ୍ଥ ଧର୍ମକୁ ଅତ୍ୟନ୍ତ କୁଶଳତାର ସହ ପାଳନ କରିଥିଲେ ।

ମହାରାଜ ପରୀକ୍ଷିତ ପ୍ରଶ୍ନ କଲେ—"ପ୍ରଭୋ ! ଏହି ପରସ୍ପର ବିରୋଧ କରୁଥିବା ଯୁକ୍ତି ଶୁଣି ମୋ ମନରେ ଆଶଙ୍କା ଉପୁଜୁଛି । ପ୍ରଥମେ ଆପଣ ମହାତ୍ମା ପ୍ରିୟବ୍ରତଙ୍କୁ ପରମ ଭାଗବତ ଭଗବଦ୍ ଭକ୍ତ ଏବଂ ଆତ୍ମାରାମ ବୋଲି କହିଲେ, ଏବଂ ପୁଣି କହୁଛନ୍ତି-"ସେ କୁଶଳତାର ସହ ଗୃହସ୍ଥାଶ୍ରମକୁ ଚିରକାଳ ପାଳନ କରିଥିଲେ । ଭଗବନ ! ମନ ତ ଏକ । ମନୁଷ୍ୟ ଗୋଟିଏ ବିଷୟରେ କୁଶଳତାର ସହ ପୂର୍ଣ୍ଣତା ଲାଭ କରିପାରେ । ଯେ ସାଂସାରିକ ବିଷୟ ବାସନାରେ ଏବଂ ବ୍ୟବହାରରେ କୁଶଳି ହେବ, ପୂର୍ଣ୍ଣ ମାତ୍ରାରେ ପରମାର୍ଥ ସାଧନ କରି ପାରିବ ନାହିଁ ଏବଂ ଯାହାର ଚିତ୍ତ ପରମାର୍ଥ ଚିନ୍ତନରେ ଚିର ଜାଗ୍ରତ, ସେଠାରେ ସାଂସାରିକ ପ୍ରପଞ୍ଚ ନଥିବ । ଏକ ସମୟରେ ଦୁଇଟି କାର୍ଯ୍ୟ କିପରି ଭାବରେ କୁଶଳତାର ସହ ସମ୍ପନ୍ନ କରାଯାଇ ପାରିବ ? ମହାରାଜ ପ୍ରିୟବ୍ରତ ଆତ୍ମାରାମ ହୋଇ ମଧ୍ୟ କିପରି ଭାବରେ ଗୃହସ୍ଥାଶ୍ରମରେ ପ୍ରବୃତ୍ତ ହେଲେ ? କାରଣ ଯେ ଅସଙ୍ଗତାକୁ ଗୃହସ୍ଥାଶ୍ରମର ଅଭିମାନ ହୋଇ ନପାରେ ଏବଂ ଏହାକୁ ଛାଡ଼ିଦେଲେ ଗୃହସ୍ଥି ଚଳେନାହିଁ ।"

ଶ୍ରୀ ଶୁକଦେବ ପଚାରିଲେ—"କାହିଁକି, ଗୃହସ୍ଥାଶ୍ରମରେ ତ ସାଧନା କରାଯାଇ ପାରେ ! ଏଠାରେ ମଧ୍ୟ ଯତ୍ନକଲେ ସିଦ୍ଧି କାହିଁକି ମିଳିବନି । ଭାଇ ! ଯେଉଁଠାରେ ରହିନା କାହିଁକି, ପୃଥିବୀ, ଜଳ, ପ୍ରକାଶ ବାୟୁ ଏବଂ ଆକାଶ ସେଠି ତ ରହିବ । ନିକଟରେ ବିଭିନ୍ନ ପ୍ରକାର ପଶୁପକ୍ଷୀ କୀଟପତଙ୍ଗ ମଧ୍ୟ ରହିବେ । ଗୃହସ୍ଥାଶ୍ରମରେ ଏପରି କ'ଣ ଅଛି ଯାହାପାଇଁ ସିଦ୍ଧି ପ୍ରାପ୍ତ ହେବନି ?"

ରାଜା କହିଲେ,—"ହଁ ଭଗବନ୍ ! ଏକଥା ସତ୍ୟ ଯେ, ଯେ ଯେଉଁଠି ରହିବ, ପଞ୍ଚଭୂତ ସେଇଠାରେ ପ୍ରସ୍ତୁତ ହୋଇ ରହିବ, କିନ୍ତୁ ସ୍ତ୍ରୀ, ପୁତ୍ର, ଘର,

ଧନ, ଯାନବାହନ, ଭୂମି ଇତ୍ୟାଦି ସହିତ ଆସକ୍ତ ବୃଦ୍ଧି ପ୍ରାପ୍ତହୁଏ ଏବଂ ସେ ସେହି ଚକ୍ରାରେ ପ୍ରବେଶ କରେ । ଯେବେ ଚିତ୍ତ ଏହି ସବୁରେ ଆସକ୍ତ ହୁଏ, ତାହା ପୁଣ୍ୟକୀର୍ତ୍ତି ଶ୍ରୀହରିଙ୍କ ଚରଣର ଶୀତଳ ଛାଇ ନିକଟକୁ ଯିବାକୁ ଇଚ୍ଛା କରେନାହିଁ । ଶାନ୍ତ ସୁଖକୁ ଅନୁଭବ କରିବାର ଅବକାଶ ତା ପାଖରେ ନାହିଁ । ଏହିପରି ଭାବରେ ଯେଉଁମାନେ ଭଗବଦ୍ଭକ୍ତି ରସକୁ ଆସ୍ୱାଦନ କରିଥାନ୍ତି, ସେମାନଙ୍କର କୁତୂହଳାଦି ନିରସ ଏବଂ ଦୁର୍ଗନ୍ଧଯୁକ୍ତ ପଙ୍କପାଣି ପ୍ରତି ପ୍ରବୃତ୍ତି ହୁଅନ୍ତି ନାହିଁ ।"

ଏହା ଶୁଣି ହସି ହସି ଶ୍ରୀ ଶୁକଦେବ କହିଲେ,—"ରାଜନ୍ ! ଆପଣ ଠିକ୍ କହୁଛନ୍ତି ଯେ, ଯାହାର ଚିତ୍ତ ଶ୍ରୀହରିଙ୍କ ରୂପମାଧୁରୀ ପ୍ରତି ଆସକ୍ତ, ତାଙ୍କର ସ୍ତ୍ରୀ ପୁତ୍ରଙ୍କ ଠାରୁ ଆସକ୍ତି ଦୂର ହୋଇଯାଏ; କିନ୍ତୁ ରାଜନ୍ ! ଯଦି କେହି କେବେ କୌଣସି ପ୍ରତ୍ୟେବାୟ ଦେଖିନିଏ, ତୁରନ୍ତ ସେ ସାବଧାନ ହୋଇଯାଏ ଯେ ଏହା ହିଁ ମୋର ଉଚିତ ଗନ୍ତବ୍ୟ ପଥ । ଯେତେବେଳେ ତାହାର ଚେତନା ଆସେ, ସେତେବେଳେ ସେ ସେହି ମାର୍ଗକୁ ପରିତ୍ୟାଗପୂର୍ବକ ରାଜପଥରେ ପୁନରାୟ ଚାଲିବାକୁ ଆରମ୍ଭ କରେ । ଏହିପରି ଭାବରେ ଯାହାର ଚିତ୍ତ କମଳାକାନ୍ତ ଶ୍ରୀହରିଙ୍କର ଚରଣ କମଳର ମକରନ୍ଦ ପ୍ରତି ଆସକ୍ତ ହୋଇଯାଏ, ସେ କୌଣସି ବାଧାବିଘ୍ନର ସମ୍ମୁଖୀନ ହେଲେ ମଧ୍ୟ ପ୍ରାୟତଃ ଭଗବାନ ବାସୁଦେବଙ୍କର ଭବଭୟ ହରଣକାରୀ କଥାରୂପକ ପଥକୁ ପରିତ୍ୟାଗ କରି ପାରେନାହିଁ । ଭଗବଦ୍ଭକ୍ତି କୌଣସି ଏକ ଜନ୍ମର ସୁକୃତିର ଫଳ ନୁହେଁ । ଅନେକ ଜନ୍ମ ଧରି ପରମ ପୁଣ୍ୟ କାର୍ଯ୍ୟ କରିବା ପରେ ସମସ୍ତ ପାପ କ୍ଷୟ ହୋଇଯାଏ । ତେବେ ସେହି ନିଷ୍ପାପ ପୁରୁଷର ହୃଦୟରେ ପ୍ରଭୁଙ୍କ କୃପା ହେତୁ ଭକ୍ତିର ବୀଜ ଅଙ୍କୁରିତ ହୁଏ । ମଝିରେ କୌଣସି ବିଘ୍ନ ଘଟିଲେ ମଧ୍ୟ କିଛି ସମୟ ମଧ୍ୟରେ କେହି ବିଘ୍ନ ଶାନ୍ତ ପଡ଼ିଯାଏ ।

ରାଜକୁମାର ପ୍ରିୟବ୍ରତ ଜନ୍ମରୁ ମହାନ ଭଗବଦ୍ ଭକ୍ତ ଥିଲେ । ତାଙ୍କର ଶ୍ରୀହରିଙ୍କର ପାଦପଦ୍ମରେ ସ୍ୱାଭାବିକ ଅନୁରକ୍ତି ଥିଲା । ସୌଭାଗ୍ୟ ହେତୁ ସେ ଭକ୍ତି ମାର୍ଗର ପରମ ଆଚାର୍ଯ୍ୟ ନାରଦଙ୍କ ପରି ସଦ୍‌ଗୁରୁଙ୍କର ସାନ୍ନିଧ୍ୟ ଲାଭ କଲେ । ତାଙ୍କ ପାଦପଦ୍ମର ପରିଚର୍ଯ୍ୟା କରିବାର ପ୍ରଭାବ ହେତୁ ଅତି ସହଜ ଭାବରେ ପରମାର୍ଥ ତତ୍ତ୍ୱର ବୋଧ ହୋଇଗଲା । ନାରଦଙ୍କର ଚରଣରେ ତାଙ୍କର ଅଟଳ ଅନୁରାଗ ଥିଲା । ଉଭୟ ଗୁରୁଶିଷ୍ୟ ପରସ୍ପର ଆସ ଚନ୍ଦନରେ ବ୍ୟାପୃତ ରହୁଥିଲେ । ସତ୍ସଙ୍ଗର ସ୍ରୋତ ବହି ଚାଲିଥିଲା ।

ମହାରାଜ ପରୀକ୍ଷିତ ପ୍ରଶ୍ନ କଲେ,—"କାହିଁକି ମହାରାଜ । ଘରେ ବ୍ରହ୍ମ ଉପାସନା ଚାଲିଥିଲା । ତାଙ୍କର ଏଭଳି ନିରନ୍ତର ଅମୃତଚିନ୍ତନରେ ନିମଗ୍ନ ରହିବା ଦ୍ୱାରା ତାଙ୍କର ପିତା କିଛି ଖରାପ ଭାବିଲେ ନାହିଁ ତ ?

ଏହା ଶୁଣି ଶୁକଦେବ ମନକୁ ମନ ହସି କହିଲେ—"ରାଜନ ! ପିତାଙ୍କର ଆନ୍ତରିକ ଇଚ୍ଛା ଯେ ମୋର ପୁତ୍ର ମୋରପରି ବିବାହ କରି କୁଳର ବଂଶ ପରମ୍ପରାକୁ ଅବିଚ୍ଛିନ୍ନ ରଖୁ । ଏଣୁ ଯଦି କୌଣସି ପିତା ନିଜର ପୁତ୍ରକୁ ବାବାଜୀଙ୍କ ମେଳରେ ଦେଖେ, ତେବେ ତାଙ୍କର ଚିନ୍ତା ବଢ଼ିଯାଏ ଯେ ଏପରି ନହେଉ, ସେ ବାବାଜୀ ହୋଇଯାଉ । ଏହିପରି କେତେ ଯୋଗୀ ମହାତ୍ମାମାନଙ୍କୁ ଦେଖି ବୟସ୍କ ଲୋକମାନେ କହନ୍ତି—ଏହାଙ୍କର ପିତାମାତା ଧନ୍ୟ, ଏହିପରି ଭଗବତ୍ ଭକ୍ତ ପୁତ୍ର ଜନ୍ମ ନେଇଛନ୍ତି ଯେ ନିଜର ଭକ୍ତି ବଳରେ ଏକୋଇଶ ପୁରୁଷକୁ ଉଦ୍ଧାର କରିପାରିବ । କିନ୍ତୁ କେହି କେହି କେତେବେଳେ କହେ‌କି, "ତୁମେ କାହିଁକି ଧନ୍ୟ ହୋଇ ଯାଉନ ? ନିଜର ପୁତ୍ରକୁ ବାବାଜୀ କରି ଏକୋଇଶ ପୁରୁଷକୁ ଉଦ୍ଧାର କରୁନାହଁ ? କିନ୍ତୁ ଏତିକି ଶୁଣିବା ମାତ୍ରେ, ତାଙ୍କର ପେଟ କଣ ହୋଇଯିବ ଏବଂ ସେ ଇଚ୍ଛା କରିବେ, ଆମପୁଅ ଏଇ ବାବାଜୀମାନଙ୍କ ଠାରୁ ଦୂରରେ ରହିଲେ ଭଲ । ତାକୁ ଏମାନଙ୍କ ସଙ୍ଗଦୋଷ ନ ଲାଗିଲେ ଭଲ । ଏହାର ନାମ ମୋହ । ହଁ, ହେ ରାଜନ ! ଯେତେବେଳେ ସ୍ୱାୟଂଭୁବ ମନୁ ଦେଖିଲେ ତାଙ୍କର ପୁତ୍ର ଯୁବକ ଅବସ୍ଥାକୁ ପ୍ରାପ୍ତ ହେଲା, ଏବଂ ପୃଥିବୀ ପାଳନ ନିମିତ୍ତ ଶାସ୍ତ୍ରକାରମାନେ ରାଜାର ଯେଉଁ ଯେଉଁ ଗୁଣ ଆବଶ୍ୟକ ସେହି ସବୁ ସଦ୍‌ଗୁଣ ତାଙ୍କଠାରେ ଦେଖାଗଲା । ସେ ଦିନେ କହିଲେ—"ପୁଅ, ଦେଖ ! ବର୍ତ୍ତମାନ ତୁମେ ପିଲା ନୁହଁ, ଯୁବକ । ହିତ ଅହିତ ସବୁ କିଛି ବୁଝିପାରୁଛ । ବର୍ତ୍ତମାନ ତୁମେ ଧର୍ମପାଳନ ପୂର୍ବକ ପ୍ରଜା ପାଳନ କର । ଗୃହସ୍ଥିଙ୍କର ଦାୟିତ୍ୱକୁ ସମର୍ପଣ କର, ମୋ କାନ୍ଧରେ ଥିବା ବୋଝକୁ ହାଲୁକା କର । ମୋର କାର୍ଯ୍ୟରେ ହାତ ଲଗାଇ ଦିଅ । ମୁଁ କ'ଣ ସବୁବେଳେ ବସି ରହିଥିବି । ଆଗରେ ହେଉ ବା ପଛରେ ହେଉ, ତୁମକୁ ଏହି କାର୍ଯ୍ୟ କରିବାକୁ ହେବ ।"

ପିତାଙ୍କର ଏହିପରି ମାୟା ମୋହ କଥା ଶୁଣି ପ୍ରିୟବ୍ରତଙ୍କୁ ଭଲ ଲାଗିଲା ନାହିଁ, କାରଣ ସେ ତାଙ୍କର ସମସ୍ତ ଇନ୍ଦ୍ରିୟମାନଙ୍କର କାର୍ଯ୍ୟକଳାପକୁ ଭଗବାନ ବାସୁଦେବଙ୍କ ଚରଣାରବିନ୍ଦରେ ସମର୍ପିତ କରିଦେଇଥିଲେ । ସମାଧି ଯୋଗ ବଳରେ ସେ ପରମାର୍ଥୀ ମାର୍ଗ ଅନୁସରଣ କରିବା ନିମିତ୍ତ ପ୍ରସ୍ତୁତ ହେଉଥିଲେ । ସେ ନିଜ ମନରେ ବିଚାର କଲେ—"ଯଦି ମୁଁ ରାଜକାର୍ଯ୍ୟରେ ଲାଗିଗଲି, ତେବେ ମୋର ଆତ୍ମସ୍ୱରୂପ ଅସତ୍ ପ୍ରପଞ୍ଚରେ ଆଚ୍ଛାଦିତ ହେବ । ମୋର ସତ୍ୟସ୍ୱରୂପର ବିସ୍ମୃତି ଘଟିଯିବ ।" ଏହା ସବୁ ଭାବି ଓ ବିଚାର କରି ସେ ତାଙ୍କର ପିତାଙ୍କର ଆଜ୍ଞାକୁ ପାଳନ କଲେ ନାହିଁ । ଯଦିଓ ସତ୍ ପୁତ୍ର ନିମିତ୍ତ ପିତାଙ୍କର ଆଜ୍ଞାକୁ ଲଙ୍ଘନ କରିବା ଏକ ଅତ୍ୟନ୍ତ ଗର୍ହିତ କାର୍ଯ୍ୟ, ମାତ୍ର ସେ କ'ଣ କରନ୍ତେ, ଏହା କରିବାକୁ ସେ ଥିଲେ ଅତ୍ୟନ୍ତ ବିବଶ ।

ମୋର ଏତେବଡ଼ ଯୋଗ୍ୟପୁତ୍ର ମୋ ଆଜ୍ଞାକୁ ଅବହେଳା କଲା, ଏହି କଥା ମହାରାଜ ସ୍ୱାୟଂଭୁବ ମନୁଙ୍କୁ ଅତ୍ୟନ୍ତ ଦୁଃଖଦେଲା । ସେ ଭାବିବାକୁ ଲାଗିଲେ ବର୍ତ୍ତମାନ ମୋର ବଂଶ କିପରି ବଢ଼ିବ । ସୃଷ୍ଟିର କ୍ରମ କିପରି ଭାବରେ ଅଗ୍ରସର ହେବ । ସ୍ୱେ ବାବାଜୀ ପାଲଟିଯିବ । ତେବେ ବ୍ରହ୍ମାଙ୍କର ପ୍ରସ୍ତୁତ ଏହି ସୃଷ୍ଟିକୁ କିଏ ବଢ଼ାଇବ । ଏପାଖରେ ମହାରାଜ ମନୁ ଏହିପରି ଚିନ୍ତିତ ଥିବାବେଳେ, ଅପର ପକ୍ଷରେ ସ୍ୱୟଂ ଲୋକପାଳକ ପିତାମହ ବ୍ରହ୍ମା ମଧ୍ୟ ଚିନ୍ତିତ ଥିବାରୁ ଆମର ମାନସିକ ପୁତ୍ରମାନଙ୍କ ମଧ୍ୟରୁ ଚାରି ସନକ ଏବଂ ନାରଦ ବାବାଜୀ ପାଲଟି ଗଲେ । ଏକା ଏକା ଏଇଭଳି ହୋଇଗଲେ ଭାବିବାକୁ କିଛି ନଥିଲା, କିନ୍ତୁ ମନୁଷ୍ୟର ଏହା ସହଜ ସ୍ୱଭାବ ଗୁଣ ଯେ ନିଜେ ଯେପରି ହୁଏ ଅନ୍ୟକୁ ସେହିପରି କରିବାକୁ ଚେଷ୍ଟାକରେ । ଯେଉଁ ବସ୍ତୁ ନିଜକୁ ପ୍ରିୟ ତାହା ଅନ୍ୟମାନେ ମଧ୍ୟ ଆସ୍ୱାଦନ କରିବାକୁ ଇଚ୍ଛା କରନ୍ତୁ । ଏହି ନାରଦ ବୁଲି ବୁଲି ଲୋକମାନଙ୍କୁ ନିବୃତ୍ତି ମାର୍ଗ ସମ୍ପର୍କରେ ଶିକ୍ଷା ଦେଉଅଛି । ଯଦି ସମସ୍ତେ ନିବୃତ୍ତି ମାର୍ଗର ପଥିକ ହୋଇଯାନ୍ତି, ତେବେ ଏହି ତ୍ରିଗୁଣମୟ ଜଗତର ବୃଦ୍ଧି କିପରି ହେବ ? ଏହାସବୁ ଚିନ୍ତାକରି ସେ ନିଜର ପୌତ୍ର ପ୍ରିୟବ୍ରତଙ୍କୁ ଗୃହସ୍ଥ ଧର୍ମ ଶିକ୍ଷା ଦେବାକୁ ସ୍ଥିର କଲେ । ଏପଟେ ନାରଦ ତାଙ୍କୁ ମାଳାଞ୍ଚଳକୁ ନେଇ ନିବୃତ୍ତି ମାର୍ଗ ସମ୍ପର୍କରେ ପଢ଼ାଇବାକୁ ଲାଗିଲେ । ଏହି ସଂସାରର ପ୍ରତ୍ୟେକ ବସ୍ତୁ ଅସାର । ସଂସାରରୁ ଦୂରରେ ରହି ପ୍ରଭୁ ପାଦପଦ୍ମକୁ କିପରି ଭାବରେ ଧରି ରଖାଯାଏ, ତାହାର ମର୍ମକଥା କହିବାକୁ ଲାଗିଲେ ।

ଆହା ! ଯେତେବେଳେ ଉଭୟ ଗୁରୁ ଶିଷ୍ୟ ପରମାର୍ଥର ଗହନତା ଭିତରେ ପଶି ଗଳ୍ପିତଧାରରେ ଚିନ୍ତାମଗ୍ନ, ସେ ସମୟରେ ଉଭୟଙ୍କର ହୃଦୟ ତନ୍ମୟ ହୋଇ ଯାଇଥିଲା । ଉଭୟେ ଦୃଶ୍ୟଜଗତକୁ ଭୁଲି ଯାଇଥିଲେ । ସେଠାରେ ଏକ ଅନିର୍ବଚନୀୟ ଆନନ୍ଦର ପାଦୁର୍ଭାବ ବଢ଼ି ଯାଇଥିଲା ।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ ! ଏ ପାଖରେ ରାଜକୁମାର ପ୍ରିୟବ୍ରତ ଓ ନାରଦ ପରମାର୍ଥ ଚିନ୍ତନରେ ବ୍ୟାପୃତ ଥିବା ବେଳେ ବ୍ରହ୍ମା ତାଙ୍କୁ ଗୃହସ୍ଥି କରିବା ପାଇଁ ଉପଦେଶ ଦେବା ନିମିତ୍ତ ତାଙ୍କ ନିକଟକୁ ଆସିବା ପାଇଁ ନିଜର ହଂସକୁ ସଜାଡ଼ିବାରେ ଲାଗିଥିଲେ । ତାଙ୍କର ମାରୀଚ ଇତ୍ୟାଦି ମାନସ ପୁତ୍ରମାନେ କହିଲେ—"ଭଗବନ୍ ! ଆମ୍ଭେମାନେ ମଧ୍ୟ ଆପଣଙ୍କ ସହିତ ଯିବୁ ।" ବ୍ରହ୍ମା କହିଲେ, "ଭଲ କଥା ! ତୁମ୍ଭେମାନେ ମଧ୍ୟ ଚାଲ । ସମସ୍ତେ ମିଳିମିଶି ତାଙ୍କୁ ବୁଝାଇଲେ, ତା ଉପରେ ଅଧିକ ପ୍ରଭାବ ପକାଇବ ।" ଏହା ଶୁଣି ମରୀଚ ଇତ୍ୟାଦି ମୁନିଗଣ ବେଦ ବ୍ରହ୍ମାଙ୍କ ସହିତ ଚାଲିବାକୁ ଲାଗିଲେ ।

## ଛପ୍‌ପୟ

ପରମ ଭାଗବତ ଭୟେ ପ୍ରିୟବ୍ରତ ଜ୍ଞାନୀ ଧ୍ୟାନୀ
ଗୁରୁ ନାରଦ ପ୍ରେମକୀ ଶିଖ ତେ ଉନନେ ମାନୀ ॥
ଲଖି ବିରକ୍ତ ସୁତ ପିତା ରାଜାକୋ କାଜ ବତାୟୋ
କିନ୍ତୁ କୁମରକେ ନହୀ ଗୃହସ୍ଥାଶ୍ରମ ମନ ଭାୟୋ ॥
ଇତ ମନୁ ଚିନ୍ତା ମହଁ ପରେ, ଉତ ଚତୁରାନନ ଚଢ଼ ଚଢ଼ୀ
ଯଦି ବିରକ୍ତ ପ୍ରିୟବ୍ରତ ବନୈ, ତୋ ହୋୱେ ଗଡ଼ବଡ଼ ବଢ଼ୀ ॥



# ଶ୍ରୀ ବ୍ରହ୍ମାଙ୍କର ପ୍ରିୟବ୍ରତଙ୍କ ନିକଟକୁ ଆଗମନ

"ନିବୋଧ ତାତେଦମୃତଂ ବ୍ରବୀମି
ମାସୂୟିତୁଂ ଦେବମର୍ହସ୍ୟ ପ୍ରମେୟମ୍ ।
ବୟଂ ଭବସ୍ତେ ତତ୍ ଏଷ ମହର୍ଷି
ର୍ବହାମ ସର୍ବେ ବିବଶା ଯସ୍ୟ ଦିଷ୍ଟମ୍ ॥

( ଭାଗବତ ୫-ସ୍କନ୍ଧ ୧-ଅଧ୍ୟାୟ ୧୧ଶ୍ଳୋକ )

### ଛପ୍ପୟ

"ଚଢ଼େ ହଂସପୌ ସଙ୍ଗ ମରୀଚ୍ୟାଦିକ ମୁନି ଧାୟେ ।
ସତ୍ୟ ଲୋକତେଂ ଉତର ତପାଦିକ ଲୋକନ ଆୟେ ॥
ବିଧିକୁଁ ଲଖି ସବ ଅମର ସୁମନ ଝନପୌ ବରସାୱେ ।
ସ୍ୱାଗତକେ ହିତ ସିଦ୍ଧ ସାଧ୍ୟ ଋଷି ମଣ୍ଡ ମିଲି ଆୱେ ॥
ଗାବତ ଗୁନ ଗନ୍ଧର୍ବ ଗନ, ସୁୟଶ ସଙ୍ଗ ଋଷି ମୁନି ସୁନତ ।
ଲଖି ବିଧି ନାରଦ କୁମର ମନୁ, ଉଠେ ସବହିଁ ସଂଭ୍ରମ ସହିତ ॥"

ମହାପୁରୁଷମାନଙ୍କର ଆଗମନକୁ ଏକ ପ୍ରକାର ଉତ୍ସବ କୁହାଯାଏ । ପ୍ରତିଷ୍ଠା ପ୍ରଭାବ, ତପ, କୀର୍ତ୍ତି, ପଦ ପ୍ରତିଷ୍ଠାରେ ଶ୍ରେଷ୍ଠ, ତାଙ୍କର ଆଗମନରେ ଏକ ପ୍ରକାର ଆନନ୍ଦ ଅନୁଭବ ହୁଏ । ତାଙ୍କର ଦର୍ଶନରେ ଚିତ୍ତରେ ସ୍ୱାଭାବିକ ଉତ୍କଣ୍ଠା ଜାଗ୍ରତ ହୁଏ, ତାଙ୍କର ସ୍ୱାଗତ ସତ୍କାରରେ ଏକ ପ୍ରକାର ଅଭିନବ ଉଲ୍ଲାସ ଉତ୍ପନ୍ନ ହୁଏ ଏବଂ ତାଙ୍କର ଆଗମନରେ ଯଥା ଶକ୍ତି ଶ୍ରଦ୍ଧାଞ୍ଜଳି ସମର୍ପଣ କରିବାର ଲାଳସା ବଳବତ୍ତର ହୋଇ ଉଠେ । କୌଣସି କୌଣସି ସ୍ୱାଗତ ସମ୍ଭାଷଣ ବଳପୂର୍ବକ ଇଚ୍ଛା ବିରୁଦ୍ଧରେ ମଧ୍ୟ କରାଯାଏ । ସେଥିରେ ଆଦୌ ଆନନ୍ଦ ମିଳେନା । ଏହା ଏକ ପ୍ରକାର ଅନ୍ୟାସ୍ତ ଦୁର୍ବଳ ହେବା କାରଣରୁ ବିବଶ ହୋଇ ଏହା କରି ଯାଇଥାଏ । ସ୍ୱାଗତ ତାହାକୁ

କ୍ରିୟାଏ, ଯେଉଁଥିରେ ସ୍ୱାଭାବିକ ପ୍ରବୃତ୍ତି ରହିଥାଏ, ଏହା କହିବେଳେ ପ୍ରତ୍ୟେକ ଲୋମମୂଳ ପ୍ରଫୁଲ୍ଲିତ ହୋଇଉଠେ ।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ ! ଲୋକ ପିତାମହ ବ୍ରହ୍ମା ଯେତେବେଳେ ରାଜକୁମାର ପ୍ରିୟବ୍ରତଙ୍କୁ ବୁଝାଇବା ପାଇଁ ସତ୍ୟଲୋକରୁ ଭୂମି ଉଦ୍ଦେଶ୍ୟରେ ତଳକୁ ଖସିବାକୁ ଲାଗିଲେ, ତାଙ୍କର ଚାରି ପାଖରେ ମରୀଚ ଇତ୍ୟାଦି ମୁନି ଋଷିମାନେ ଘେରିକରି ଆସୁଥିଲେ । ଚାରି ବେଦ ମୂର୍ତ୍ତିମାନ ହୋଇ ତାଙ୍କର ଅନୁସରଣ କରୁଥିଲେ । ପୃଥିବୀର ଚତୁର୍ଦ୍ଦିଗରେ ବ୍ୟାପି ଯାଇଥିଲା ଯେ ଆଜି ଲୋକ ପିତାମହ ବ୍ରହ୍ମାଙ୍କର ସବାରୀ ଏହି ରାସ୍ତାଦେଇ ଯିବ । ଏହି ସମ୍ବାଦକୁ ଶୁଣିବାମାତ୍ରେ ପ୍ରତ୍ୟେକ ଲୋକର ଦେବଗଣମାନେ ପିତାମହଙ୍କର ସ୍ୱାଗତ ସମ୍ଭାଷଣ ନିମିତ୍ତ ଉପସ୍ଥିତ ହୋଇ ଗଲେ । ସମସ୍ତଙ୍କ ହାତରେ ଥିଲା ଦ୍ରବ୍ୟପତ୍ର, ପୁଷ୍ପ, ଫଳ ଇତ୍ୟାଦି ନାନାପ୍ରକାରର ବିବିଧ ସାମଗ୍ରୀ । ସମସ୍ତେ ପିତାମହଙ୍କର ସୁସ୍ୱାଗତ କରିବାପାଇଁ ଥିଲେ ଲାଳାୟିତ ଯେଉଁ ଲୋକରୁ ସେ ନିଷ୍କ୍ରାନ୍ତ ହେଉଥିଲେ, ସେ ଲୋକର ପୁରୁଷମାନେ ତାଙ୍କୁ ବିଭିନ୍ନ ଭାବରେ ପୂଜା କରୁଥିଲେ ଏବଂ ଦ୍ରବ୍ୟପୁଷ୍ପର ବର୍ଷାକରି ଆନନ୍ଦ ପ୍ରକଟ କରୁଥିଲେ । ଭଗବାନ ଚତୁରାନନଙ୍କର ସମ୍ମୁଖରେ ଅସଂଖ୍ୟ ସିଦ୍ଧ, ସାଧ୍ୟ ଗନ୍ଧର୍ବ, ଚାରଣ ତଥା ମୁନିଗଣ ତାଙ୍କର ସୁଯଶ ଗାନକରି ଚାଲିଥିଲେ । ଅପ୍ସରାମାନେ ନୃତ୍ୟ କରୁଥିଲେ, ଉପଦେବ ବିଭିନ୍ନ ପ୍ରକାର ବାଦ୍ୟ ବଜାଇ ଚାଲିଥିଲେ । ଶ୍ୱେତହଂସ ଉପରେ ଆସିନ ବ୍ରହ୍ମା ମୁନିଋଷିମାନଙ୍କ ଗହଣରେ ଶଙ୍ଖ ସଦୃଶ ପ୍ରତୀୟମାନ ହୋଇଥିଲେ । ଶରତ ଋତୁରେ ଚନ୍ଦ୍ର ଯେପରି ଗ୍ରହଦ୍ୱାରା ପରିବେଷ୍ଟିତ ହୋଇ ଆକାଶରେ ନିଜର ଜ୍ୟୋତ୍ସ୍ନାକୁ ବିଛାଇଦେଇ ଆନନ୍ଦରେ ହସୁଅଛି ।

ମହାରାଜ ସ୍ୱାୟଂମ୍ଭୁବ ମନୁ ଥିଲେ ଚିନ୍ତାମଗ୍ନ । ତାଙ୍କ ନିକଟରେ ରାଜକୁମାର ପ୍ରିୟବ୍ରତ ଏକାଗ୍ରତାର ସହ ନାରଦଙ୍କର ପରମାର୍ଥିକ ଉପଦେଶକୁ ଶ୍ରବଣ କରୁଥିଲେ । ହଠାତ୍ ସମସ୍ତେ ଦେଖିଲେ ଗନ୍ଧମାର୍ଦ୍ଦନ ପର୍ବତର କୋରଡ଼ମାନ ଆଲୋକିତ ହୋଇ ଉଠିଲେ । ଉଲ୍କାପାତ ହେବା ସମୟରେ ଯେପରି ହଠାତ୍ ଆଲୋକ ପ୍ରକାଶ ପାଏ, ସେହିପରି ପ୍ରକାଶ ହଠାତ୍ ଗଗନମଣ୍ଡଳରେ ଦେଖାଗଲା । ସମସ୍ତେ ଆଶ୍ଚର୍ଯ୍ୟ ଚକିତ ହୋଇ ସେହି ଦୃଶ୍ୟକୁ ଦେଖିବାକୁ ଲାଗିଲେ । କିଛିକ୍ଷଣ ପରେ ସମସ୍ତେ ଭଗବାନ ଚତୁରାନନଙ୍କର ବାହନ ହଂସର ପକ୍ଷୀକୁ ଦୋହଲାଇ ଆସୁଥିବାର ଦେଖି ବୁଝିଗଲେ ଯେ ଭଗବାନ ଲୋକ ପିତାମହ ବ୍ରହ୍ମା ଆସୁଛନ୍ତି । ସ୍ୱାୟଂମ୍ଭୁବ ମନୁ ଏବଂ ନାରଦ ନିଜ ପିତାଙ୍କୁ ଅବତରଣ କରିବାର ଦେଖି ସଂଭ୍ରମର ସହିତ ଛିଡ଼ାହୋଇ ପଡ଼ିଲେ । କୁମାର ପ୍ରିୟବ୍ରତ ମଧ୍ୟ ସତ୍କାର ନିମିତ୍ତ ସମସ୍ତଙ୍କ ସହିତ ଛିଡ଼ାହେଲେ । ସମସ୍ତେ ନିକଟକୁ ଆସି ବ୍ରହ୍ମାଙ୍କର ପାଦପଦ୍ମରେ ନମସ୍କାର କଲେ । ତାଙ୍କ ସହିତ

ଆସିଥିବା ଋଷିମାନେ ମଧ୍ୟ ପରସ୍ପର ମଧ୍ୟରେ କୁଶଳ ପ୍ରଶ୍ନ ପଚ୍ଚରିଲେ । ପ୍ରଣାମ ନମସ୍କାର ପରେ ନାରଦ ମହାଶୟ ବିବିଧ ସାମଗ୍ରୀ ନେଇ ନିଜ ପିତାମହ ବ୍ରହ୍ମାଙ୍କର ବିଧିବଦ୍ଧ ପୂଜାର୍ଚ୍ଚନା କଲେ । ତତ୍ପରେ ତାଙ୍କୁ ନାନାପ୍ରକାର ବୈଦିକ ମନ୍ତ୍ର ସାହାଯ୍ୟରେ ସ୍ତୁତିକରି ପୂଜା କଲେ, ତାଙ୍କ ଅବତାରର ଉତ୍କୃଷ୍ଟତା ବର୍ଣ୍ଣନା କରି ପୁଣି ତାଙ୍କ ଚରଣ କମଳରେ ନମସ୍କାର କଲେ, ନାରଦ ମହାଶୟ ଏବଂ ସ୍ୱାୟଂମ୍ଭୁବ ମନୁଙ୍କର ପୂଜାକୁ ସ୍ୱୀକାର କରି ବ୍ରହ୍ମା ପ୍ରସନ୍ନ ହେଲେ ଏବଂ କୁମାର ପ୍ରିୟବ୍ରତ ଆଡକୁ ଦୟା ଦୃଷ୍ଟି ନିକ୍ଷେପ କରି ହସି ହସି କହିଲେ—"ପୁତ୍ର ! ତୁମେ କଣ କରୁଥିଲ ?"

ହାତ ଯୋଡି ଲଜ୍ଜାରେ ମୁଣ୍ଡକୁ ନୁଆଁଇ ସଙ୍କୁଚିତ ହୋଇ କୁମାର ପ୍ରିୟବ୍ରତ କହିଲେ—"ଭଗବନ୍ ! ମୁଁ ଗୁରୁଦେବ ନାରଦଙ୍କର ଉପଦେଶ ଶ୍ରବଣ କରୁଥିଲି ।" ହସିକରି ବ୍ରହ୍ମା ନିଜର ଧବଳ ଦାଢ଼ୀ ଉପରେ ହାତ ବୁଲାଇ ଆଣି କହିଲେ,—"ଆଚ୍ଛା । ନାରଦଙ୍କର ଠାରୁ ତୁମେ ବହୁତ କଥା ଶୁଣିଲଣି । ମୋର କିଛି କଥା ଶୁଣିବ କି ?"

ଲଜ୍ଜାରେ କୁମାର କହିଲେ—"ଭଗବନ୍ ! ଆପଣ କପରି କଥା କହୁଛନ୍ତି । ଆପଣ ଯେଉଁ ଆଜ୍ଞା ଦେବେ, ତାହାକୁ ମୁଁ ଶ୍ରଦ୍ଧା ପୂର୍ବକ ଗ୍ରହଣ କରିବି ।"

ବ୍ରହ୍ମା କହିଲେ, "ମୋର କଥା ନାରଦଙ୍କ କଥା ଠାରୁ ପ୍ରତିକୂଳ ପରି ତୁମକୁ ଜଣା ପଡ଼ିପାରେ । ତୁମେ ଏହା ଭାବିବ ନାହିଁ ତ ବ୍ରହ୍ମା ମୋତେ ଓଲଟା ପାଠ ପଢ଼ାଇ ହଇରାଣରେ ପକାଇବାକୁ ଇଚ୍ଛା କରୁଛନ୍ତି, ମୋତେ ଭୁଲାଇଦେଇ ଅନ୍ୟ ମାର୍ଗରେ ନେବାକୁ ଇଚ୍ଛା କରୁଛନ୍ତି ।"

ମୁଣ୍ଡ ତଳକୁ ନୁଆଁଇ ରାଜକୁମାର କହିଲେ, "ନାଁ ଭଗବାନ । ଏହା କେମିତି ହୋଇ ପାରିବ । ଆପଣତ ଯାହା କିଛି କହିବେ ତାହା ମୋର କଲ୍ୟାଣ ନିମିତ୍ତ କହିବେ । ଆପଣ ଦେଇଥିବା ଉପଦେଶ ମୋ ପାଇଁ ମଙ୍ଗଳମୟ ହିଁ ହେବ ।"

ବ୍ରହ୍ମା କହିଲେ,—"ଦେଖ ଭାଇ, ମୁଁ ତୁମକୁ ମୋ ତରଫରୁ କିଛି କହୁନାହିଁ । ମୁଁ ତୁମକୁ ସେଇ ଉପଦେଶ ଦେବି, ଯାହା ଭଗବାନ ମୋତେ କହିଥିଲେ । ମୁଁ କେବଳ ସେହି ଭଗବାନଙ୍କର ବାର୍ତ୍ତାବହ ଯାହାଙ୍କର ଆଜ୍ଞା ଶିବ ମନୁ, ଇନ୍ଦ୍ର ଇତ୍ୟାଦି ସମସ୍ତ ପ୍ରଜାପତି ତଥା ଅନ୍ୟାନ୍ୟ ସମସ୍ତ ଲୋକମାନେ ଅସମର୍ଥ ହୋଇ ପାଳନ କରୁଛନ୍ତି ।"

ପ୍ରିୟବ୍ରତ କହିଲେ, "ହେ ଭଗବନ୍ ! ଏହି କଥାତ ଭଗବାନ ନାରଦ କହିଥିଲେ, ଯେ ସେହି ସର୍ବାନ୍ତର୍ଯ୍ୟାମୀ ପ୍ରଭୁଙ୍କର ପ୍ରାପ୍ତି ହିଁ ଜୀବର ଚରମ ସାଧ । ତାଙ୍କୁ ପାଇବା ହେଉଛି ପରମ ପୁରୁଷାର୍ଥ ।"

ବ୍ରହ୍ମା କହିଲେ, "ଭାଇ ! ମୁଁ ତ ସେହିକଥା ତୁମକୁ କହିବାକୁ ଆସିଅଛି ଯେ ତୁମେ ତୁମର ସଂକଳ୍ପକୁ ଭଗବାନଙ୍କ ସଂକଳ୍ପରେ ମିଶାଇ ଦିଅ । ନିଜର ଇଚ୍ଛାକୁ ତାଙ୍କର ଇଚ୍ଛା ସହିତ ସମ୍ମିଶ୍ରଣ କର । ସେ ଯାହା କରିବେ, ସେଥିରେ ତୁମର କଲ୍ୟାଣ ନିହିତ । କେହି ଦେହଧାରଣ କରିଥିବା ବ୍ୟକ୍ତି ଯଦି ଏହା, ଯେ ଆମେ ଭଗବାନଙ୍କର ବିଧାନକୁ ଉଗ୍ର ତପସ୍ୟା ବଳରେ, ବିଦ୍ୟା ଦ୍ୱାରା, ଯୋଗ ବଳଦ୍ୱାରା, ବୁଦ୍ଧି ବଳ ଅଥବା ଧର୍ମ ଦ୍ୱାରା ନିଜେ ବା ଅନ୍ୟ ସାହାଯ୍ୟରେ ପରିବର୍ତ୍ତନ କରିଦେବୁ, ତେବେ ସେ କେବେହେଲେ ଏହା କରିବାକୁ ସକ୍ଷମ ହୋଇ ପାରିବେ ନାହିଁ ।"

ଏହା ଶୁଣି ରାଜକୁମାର ପ୍ରିୟବ୍ରତ ପଚାରିଲେ,—"ତେବେ ଭଗବନ୍ ! ମଣିଷର ପୁରୁଷାର୍ଥ କ'ଣ ରହିଲା ?"

ବ୍ରହ୍ମା, ଉତ୍ତର ଦେଲେ—"ଭାଇ ! ପୁରୁଷାର୍ଥ ଦୈବୀ ସଂଯୋଗ ହେତୁ କେବଳ ଘଟେ । ଯାହା ହେବାର ଥାଏ, ସେ ସବୁ ସାଧନ ଆସିଯାଏ ଏବଂ ତାହା ବିଧାନ ହୋଇଯାଏ । ପୂର୍ବ ଜନ୍ମର କର୍ମଫଳ ହେତୁ, ପ୍ରାରବ୍ଧ ହେତୁ ସେହିପରି ବଂଶରେ ଜନ୍ମ ଗ୍ରହଣ କରେ । ଯେତେବେଳେ ପାରବ୍ଧ କର୍ମର ଯେଉଁ ସ୍ଥାନରେ ଶେଷ ହେବା କଥା, ସେଠାରେ ହିଁ ସମାପ୍ତି ଘଟେ । ତେବେ ସେହି ସ୍ଥାନରେ, ସେହି କାଳରେ ମୃତ୍ୟୁ ହୋଇଯାଏ । ସେଠାରେ ତାହାଦ୍ୱାରା ଯେଉଁ ଶୋକ, ମୋହ ଓ ଭୟ ହେବାର ଥାଏ, ତାହା ହୁଏ, ଜୀବର ଦେହ ସହିତ ଯେତେଦିନ ଦୈବୀ ଯୋଗୁ ସୁଖ ଦୁଃଖ ଭୋଗିବାର ସଂଯୋଗ ଥାଏ, ସେତେଦିନ ଏହା ଅବଶ୍ୟ ଭୋଗ କରିବାକୁ ପଡେ ।"

କୁମାର ପ୍ରିୟବ୍ରତ କହିଲେ, "ତେବେ ଭଗବନ୍ ! ଏହା ବଡ ବିଷମ କଥା । ଯଦି କାହାକୁ କୌଣସି କାର୍ଯ୍ୟ ପ୍ରିୟ ନୁହେଁ ଏବଂ ସେ କରିବାକୁ ଚାହେଁ, ତେବେ କଣ କରାଯିବ ?"

ସରଳତାର ସହ ବ୍ରହ୍ମା ଉତ୍ତର ଦେଲେ—"ଭାଇ ! ଉପରି କରିବ ନାହିଁ ? ସମସ୍ତେ କରିବା ପାଇଁ ବାଧ୍ୟ । ଯେପରି ନାକରେ ଦଉଡ଼ି ଭର୍ତ୍ତିକରି ମାଲିକ ଓଟକୁ ଯେଣେ ନେବାକୁ ଇଚ୍ଛା କରେ ନେଇପାରେ, ଯେପରି ବଳଦର ନାକରେ ଦଉଡ଼ି

ଦେଇ ଯେଣେ ଇଚ୍ଛା ତାର ମାଲିକ ତାକୁ ନେଇପାରେ, ସେହିପରି ଭାବରେ ଆମେ ସବୁ ବେଦରୂପକ ଦଉଡ଼ିରେ ସତ୍ୱ, ରଜ ଓ ତମ ଇତ୍ୟାଦି ଗୁଣ ଏବଂ ବିବିଧ କର୍ମରୂପ ସୂତ୍ରର ବନ୍ଧନରେ ଈଶ୍ୱର୍ ଶକ୍ତି ଦ୍ୱାରା ବନ୍ଧା ହୋଇଛନ୍ତି । ତାଙ୍କର ଇଚ୍ଛା ବିରୁଦ୍ଧରେ ଆମେ ସାମାନ୍ୟ ମାତ୍ର ଏପାଖ ସେପାଖ ହୋଇ ପାରିବା ନାହିଁ ।"

ପ୍ରିୟବ୍ରତ କହିଲେ—"ପ୍ରଭୋ ! ବ୍ୟାକରଣ ଇତ୍ୟାଦି ଶାସ୍ତ୍ରରେ କର୍ତ୍ତାକୁ ସ୍ୱତନ୍ତ୍ର କୁହା ଯାଇଛି, ଶାସ୍ତ୍ରରେ ବାରମ୍ବାର କୁହା ଯାଇଛି, ମନୁଷ୍ୟ ଯୋନିରେ ବୁଝିଲେ ମୁକ୍ତିଲାଭ କରିହୁଏ । ଆପଣଙ୍କ କଥା ଅନୁସାରେ ଜୀବ ଅବଶ, ତାର ଇଚ୍ଛା ନ ଥିଲେ ମଧ୍ୟ ବିବଶ ହୋଇ ପୂର୍ବ କର୍ମର ଅଧୀନ ହୋଇ ନାନା ଯୋନିକୁ ଯିବାକୁ ପଡ଼ିଥାଏ ।

ବ୍ରହ୍ମା କହିଲେ—"ଦେଖ ଭାଇ ଯେଉଁଠାରୁ କର୍ତ୍ତାକୁ ସ୍ୱତନ୍ତ୍ର କୁହା ଯାଇଛି, ସେଠାରେ ଜୀବ କର୍ତ୍ତା ନୁହେଁ । ସେଠାରେ ଶ୍ରୀହରି କେବଳ କର୍ତ୍ତା-ହର୍ତ୍ତା ଭୋକ୍ତା ଏବଂ ରକ୍ଷକ । ମନୁଷ୍ୟ ଯୋନି ମୋକ୍ଷର ଦ୍ୱାର, ଏହା ଠିକ୍ କଥା ମାତ୍ର ସବୁ ମନୁଷ୍ୟ ତ ଭକ୍ତ ହୋଇପାରୁ ନାହାଁନ୍ତି । ଯେଉଁମାନେ ଭଗବାନ କୃପାର ଅଧିକାରୀ ହୋଇ ପାରୁଛନ୍ତି ତାଙ୍କର କର୍ମ ବନ୍ଧନ ଛୁଡ଼ିଯାଏ, ସେ ଚୌରାଶୀ ଚକ୍ରରୁ ମୁକ୍ତି ପାଏ । ତୁମେ କହିପାର, ତେବେ ଭଗବାନ ପକ୍ଷପାତ କରୁଛନ୍ତି, କେତେକ ଜୀବ ଉପରେ କୃପା କରୁଛନ୍ତି, ତାଙ୍କୁ ଜନ୍ମ ମରଣରୁ ଛାଡ଼ି ଦେଉଛନ୍ତି କାହାକୁ ଚୌରାଶୀ ଚକ୍ରରେ ବୁଲାଉଛନ୍ତି । ତେବେ ଭଗବାନଙ୍କ ଉପରେ ମୃତ୍ୟୁ ସଂସର୍ଗଜନ୍ୟ ଦୋଷ ଆସିଯିବ । ସେ କଥା ମଧ୍ୟ ନୁହେଁ, କାରଣ ସମସ୍ତଙ୍କ ଉପରେ ତାଙ୍କର କୃପା ସମାନ । ତାର ଅନୁଭବ କେବଳ ସେହି କହିପାରେ, ଯାହାର ବିବିଧ କର୍ମରୂପୀ ବନ୍ଧନ ଶିଥିଳ ହୋଇ ଯାଇଛି । ବର୍ତ୍ତମାନ ତୁମେ କହିବ, ହେଲେ ନା ହେଲେ ସମସ୍ତଙ୍କ ବିଗୁଣାତୀତ ହେବାକୁ ହିଁ ହେବ କାହାର ଚଞ୍ଚଳ ଏବଂ ଶୀଘ୍ର ଏହା ପୃଥକ କଥା । ବର୍ତ୍ତମାନ ତୁମେ କହିବ, ତେବେ ଭଗବାନ ସମସ୍ତଙ୍କୁ କାହିଁକି ଏକ ସାଙ୍ଗରେ ମୁକ୍ତ କରି ଦେଉ ନାହାନ୍ତି ? ହଁ ଭାଇ, ଯଦି ଏପରି ହୁଅନ୍ତା ତେବେ ଏ ସୃଷ୍ଟି କ୍ରମ କିପରି ଭାବରେ ଚାଲିବ, ସେ ଭଗବନ୍ତ ଅଜଣା କିପରି ହେବ । ବାସ୍ତବରେ ବନ୍ଧନ କିମ୍ବା ମୋକ୍ଷ ନାହିଁ । ସମସ୍ତେ ତାଙ୍କର ପାତ୍ର । ତାଙ୍କର ଶରଣରେ ଗଲେ କିଛି ହୁଏନାହିଁ । ଯେ ପର୍ଯ୍ୟନ୍ତ ମୂଢ଼ ହୋଇ ରହିଥିବ, ସେ ପର୍ଯ୍ୟନ୍ତ ଯାଦୁକରର ଇଚ୍ଛାନୁସାରୀ କାର୍ଯ୍ୟ କରୁଥିବ । ଯାହା ସେ କହିବେ, ତାକୁ ହିଁ କରିବ । ସେ ଉଠାଇବେ, ଉଠିବାକୁ ପଡ଼ିବ । ଯେପରି ଆଖିଥିବା ଲୋକ ଅନ୍ଧ ଲୋକକୁ ଧରି ଯେଉଁଆଡେ ନେବାକୁ ଇଚ୍ଛା କରେ, ନେଇଯାଏ, ସେହିପରି

ଭାବରେ ଆମର ଗୁଣ ଓ କର୍ମ ଅନୁସାରେ ଶ୍ରୀହରି ଆମକୁ ଯେଉଁ ଯେଉଁ ଯୋନିରେ ନିଯୁକ୍ତ କରି ଦିଅନ୍ତି, ସେହି ସେହି ଯୋନିକୁ ସ୍ୱୀକାର କରି ଈଶ୍ୱରଙ୍କ ଦ୍ୱାରା ନିର୍ଦ୍ଧାରିତ ସୁଖ ଦୁଃଖକୁ ଭୋଗ କରନ୍ତି । ସବୁକିଛି ତାଙ୍କର ଇଚ୍ଛାରୁ ହିଁ ହୁଏ, ଏଥିପାଇଁ ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ହେଉଛି, ଯେଉଁମାନେ ଭଗବତ୍ କୃପାର ଦର୍ଶନଲାଭ କରିଛନ୍ତି, ତାଙ୍କର ଅନୁଗ୍ରହକୁ ଉପଲବ୍ଧି କରିଛନ୍ତି, ତାଙ୍କର କଥାମାନି ତାଙ୍କର ଶିକ୍ଷାନୁସାରେ କାର୍ଯ୍ୟ କରିବା ଉଚିତ ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ ! ବ୍ରହ୍ମାଙ୍କର ଏହି କଥା ଶୁଣିକରି ରାଜକୁମାର ପ୍ରିୟବ୍ରତ କିଛି ସମୟ ପାଇଁ ଗଭୀର ଚିନ୍ତା ମଧ୍ୟରେ ପଡ଼ିଗଲେ । ସେ କୌଣସି ଜଟିଳ ବିଷୟକୁ ଚିନ୍ତା କରିବାକୁ ଲାଗିଗଲେ ।"

## ଛପ୍‌ପୟ

"ସ୍ୱାଗତ ଶ୍ରଦ୍ଧା ସହିତ ସବନିକରି ପଦ ଶିର ନାୟେ ।
ବିଧିବତ ପୂଜା କରି ଦିବ୍ୟ ଆସନ ବୈଠାୟେ ॥
ପ୍ରେମ ସହିତ ମୁସକାୟ କହେ ବ୍ରହ୍ମା-ସୁନୁ ପ୍ରିୟବ୍ରତ ।
ଦେହୁଁ ସାର ଉପଦେଶ ହୋହି ଜାତେ ଜଗ କୋ ହିତ ॥
ଜୀବ ବଂଧେ ଗୁଣ କର୍ମ ତେ, କରେ କର୍ମ ହୈକେ ଅବଶ ।
ଜନମ ମରଣ ଭୟ ଶୋକ ଦୁଃଖ, ସୁଖ ପାଵେଁ ପାରବ୍ଧ ବଶ ॥"



# ଶ୍ରୀ ବ୍ରହ୍ମାଙ୍କର ଆଦେଶ ଅନୁସାରେ ଶ୍ରୀ ପ୍ରିୟବ୍ରତଙ୍କର ଗୃହସ୍ଥାଶ୍ରମରେ ପ୍ରବେଶ

( ୩୦୭ )

"ଭୟଂ ପ୍ରମତ୍ତସ୍ୟ ବନେଷ୍ୱପି ସ୍ୱାଦ
ଯତଃ ସ ଆସ୍ତେ ସହଷଟ୍ ସପତ୍ନଃ ।
ଜିତେନ୍ଦ୍ରିୟସ୍ୟାତ୍ମ ରତେ ର୍ବୁଧସ୍ୟ
ଗୃହାଶ୍ରମଃ କିଂ ନୁ କରୋତ୍ୟବଦ୍ୟମ୍ ॥"

( ଭାଗବତ ୫-ସ୍କନ୍ଧ ୧-ଅଧ୍ୟାୟ ୧୭-ଶ୍ଳୋ )

## ଛପ୍ପୟ

"ବିଷୟ ଭୋଗ କିଛୁ ନାହିଁ ବନ୍ଧକୋ କାରନ ମନ ହୈ ।
ଇନ୍ଦ୍ରିୟ ମନ ଅଧିନ ଯନ୍ତ୍ର କେ ସମ ଯହ ତନ ହୈ ॥
ଜାକୋ ମନ ଅଧିନ ତାହି ବନ କାଜ କହା ହୈ ।
ଇନ୍ଦ୍ରିୟ ବଶ ଯେ ଭୟେ ତିନହି ବନ୍ ହାନ ମହା ହୈ ॥
ପ୍ରଭୁପଦ ପଙ୍କଜ କର୍ଣିକା, କଲୌ ତାହି ଦୃଢ଼ ମାନକେ,
ଭୋଗ ସୁଖ ଔର କାମ ହୁନ, ପ୍ରଭୁ ପ୍ରସାଦ ଦୟ ଜାନକେ ॥"

ସାଧନାର ସୁବିଧା ନିମିତ୍ତ ଦେଶ, ଆଶ୍ରମ, ବର୍ଣ୍ଣ ଇତ୍ୟାଦିର, ବିଚାର କରାଯାଏ । ବାସ୍ତବପକ୍ଷେ କୁହାଯାଏ ଯେ ବାହ୍ୟବସ୍ତୁରେ ବନ୍ଧନ ନାହିଁ । କୌଣସି ବସ୍ତୁ ଆମକୁ ବାନ୍ଧି ପାରେନାହିଁ । ମନରେ ବନ୍ଧନ, ମନରେ ହିଁ ମୁକ୍ତି । ମନ ଯାହାକୁ ସୁଖ ବୋଲି ଗ୍ରହଣ କରେ ତାହା ହିଁ ସୁଖ ଓ ଯାହାକୁ ଦୁଃଖ ଭାବେ ତାହା ହିଁ ଦୁଃଖ । ଜୀବ ପ୍ରାରବ୍ଧ କର୍ମର ଅଧୀନ ହୋଇ କାର୍ଯ୍ୟ କରେ, ସେହି କର୍ମରେ ଯେଉଁ ପରି ଭାବରେ ଆସକ୍ତି ବଢ଼େ, ସେହି ପ୍ରକାର ସୁଖ ଦୁଃଖ ମନ ଉପରେ ପଡ଼େ । କର୍ମ ତିନପ୍ରକାର, ଜନ୍ମ ଜନ୍ମାନ୍ତରରୁ କରିଥିବା ଅନନ୍ତ କର୍ମକୁ ସଞ୍ଚିତ କର୍ମ

କୁହାଯାଏ । ଏହି ସଞ୍ଚିତ କର୍ମରେ ଗୋଟିଏ ଜନ୍ମର ଭୋଗ ଯାଇ ଯେଉଁ ଶରୀର ମିଳେ, ସେହି ଗୋଟିଏ ଜନ୍ମର ଭୋଗିବା କର୍ମର ନାମ ପ୍ରାରବ୍ଧ କର୍ମ ଅଟେ । ପ୍ରାରବ୍ଧ କର୍ମକୁ ଭୋଗିବା ସମୟରେ, ଯେଉଁ ଥିରେ ତାହାର ଆସକ୍ତି ଜାତହୁଏ ସେଥିରୁ ଯେଉଁ କର୍ମ ଉତ୍ପନ୍ନ ହୁଏ, ତାହକୁ କ୍ରିୟମାଣ କର୍ମ କୁହାଯାଏ, ତାହା ଯାଇଁ ସଞ୍ଚିତ କର୍ମରେ ମିଳିଯାଏ । ଯେପରି କାହା ପାଖରେ ଲକ୍ଷ ଟଙ୍କା ଅଛି, ତାହା ତାର ମୂଳଧନ, ସେଥିରୁ ଜୀବନ ନିର୍ବାହ କରିବା ପାଇଁ ଯାହା ମିଳିଥାଏ, ତାକୁ ପ୍ରାରବ୍ଧ କର୍ମ କୁହାଯାଏ । ଅତଏବ ମୂଳଧନରୁ ସୁଧ ବଢ଼ିବାକୁ ଲାଗେ, ଯେ ପର୍ଯ୍ୟନ୍ତ ମୂଳଧନ ଅଛି, ସେ ପର୍ଯ୍ୟନ୍ତ ସୁଧ ବଢ଼ି ଚାଲିଥିବ । ଯେଉଁଠାରେ ଆମର ମୂଳଧନ ସଞ୍ଚିତ ହୋଇ ରହିଛି, ଯଦି ତାହା ବାହାରି ଯାଏ, ତେବେ ମୂଳଧନ ସମ୍ପୂର୍ଣ୍ଣ ନଷ୍ଟ ହୋଇଯାଏ । ସୁଧ ଆସିବା ମଧ୍ୟ ବନ୍ଦ ହୋଇଯାଏ, ମାତ୍ର ଯେଉଁ ଧନ ଆମ ହାତକୁ ଆସିଛି, ସେ ପର୍ଯ୍ୟନ୍ତ ଶେଷ ହେବନାହିଁ, ଯେ ପର୍ଯ୍ୟନ୍ତ ଆମେ ତାହାକୁ ସମ୍ପୂର୍ଣ୍ଣ ଖର୍ଚ୍ଚ ନ କରିଛୁ । ଏହିପରି ଭାବରେ ଯେ ପର୍ଯ୍ୟନ୍ତ ସଞ୍ଚିତ କର୍ମ ରହିଛି, ସେ ପର୍ଯ୍ୟନ୍ତ ଏହା ନିରନ୍ତର ବଢ଼ି ଚାଲିଥିବ, ଜନ୍ମ ମୃତ୍ୟୁର ଚକ୍ର ଚାଲିଥିବ । ସଞ୍ଚିତ କର୍ମ ଜ୍ଞାନ ବା ଭଗବଦ୍ଭକ୍ତି ଦ୍ୱାରା ନଷ୍ଟ ହୋଇଗଲେ, କ୍ରିୟମାଣ କର୍ମ ମଧ୍ୟ ପ୍ରସ୍ତୁତ ହେବନାହିଁ । ଯେତିକି ପ୍ରାରବ୍ଧ, ତାହାକୁ ଭୋଗ କରି ଜନ୍ମ ମରଣ ବନ୍ଧନରୁ ମୁକ୍ତି ପାଇଯିବା ଓ ପରମପଦ ଲାଭ ହେବା ହିଁ ଉଚିତ ।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ ! ଯେତେବେଳେ ବ୍ରହ୍ମା ଗୁଣ ପ୍ରବାହ ରୂପୀ କର୍ମ ଉପରେ ଆଧ୍ୟାତ୍ମିକ ବଳ ଦେଲେ ଏବଂ ପ୍ରାରବ୍ଧକୁହିଁ ପ୍ରଧାନତା ଦେଲେ; ସେତେବେଳେ ବହୁତ କିଛି ଭାବି ରାଜକୁମାର ପ୍ରିୟବ୍ରତ କହିଲେ— "ଭଗବନ୍ ! ଯେତେବେଳେ ଆପଣ ପ୍ରାରବ୍ଧକୁ ଏତେ ଶକ୍ତିଶାଳୀ ବୋଲି କହୁଛନ୍ତି ତେବେ ତ ସବୁ ପ୍ରାଣୀ ପ୍ରାରବ୍ଧର ଅଧୀନ । ଆମେ ଶୁଣିଛୁ ଯେଉଁମାନେ ଜୀବନ ମୁକ୍ତ ପୁରୁଷ ତାଙ୍କର କୌଣସି କର୍ମବନ୍ଧନ ନାହିଁ । ସେମାନେ ସଂସାରରେ ସ୍ୱଚ୍ଛନ୍ଦରେ ବିଚରଣ କରନ୍ତି, ସେମାନଙ୍କୁ ଦୁଃଖ ବା ସୁଖ କିଛି ଅନୁଭବ ହୁଏନାହିଁ । ସେମାନଙ୍କୁ ଦୁଷ୍କର୍ମ ଦୁଃଖ ବା ସତ୍କର୍ମ ସୁଖ ଦେଇ ପାରେନାହିଁ । ସେ ଦ୍ୱନ୍ଦ୍ୱାତୀତ ହୋଇ ବାଳକ ପରି ବିଚରଣ କରନ୍ତି ।

ବ୍ରହ୍ମା କହିଲେ—"ହଁ ଭାଇ ! ଏ କଥା ଠିକ୍ । ମୁକ୍ତ ପୁରୁଷ ପାଇଁ କର୍ମ ବନ୍ଧନ ରହେନାହିଁ । ସେ ସୁଖ ଦୁଃଖ ଠାରୁ ବହୁ ଊର୍ଦ୍ଧ୍ୱରେ । ତାଙ୍କର ସମସ୍ତ ସଞ୍ଚିତ କର୍ମ ନଷ୍ଟ ହୋଇଯାଏ । ତାଙ୍କର କ୍ରିୟମାଣ କର୍ମ ଆଗକୁ ଯିବାପାଇଁ ତତ୍ପର ହୁଏ । ଏତେ ସବୁ ହେଲେ ମଧ୍ୟ ପ୍ରାରବ୍ଧ କର୍ମକୁ ଜୀବନମୁକ୍ତ ପୁରୁଷକୁ ଭୋଗ କରିବାକୁ ହୁଏ । ଏକଥା ସତ୍ୟ ଯେ ତାହାର କର୍ମ ଦ୍ୱାରା ସେ ସୁଖ ଦୁଃଖ

ଅନୁଭବ କରି ପାରେନାହିଁ । ତଥାପି ପ୍ରାରବ୍ଧ କର୍ମ ଭୋଗକରି ସାରିବା ପରେ ହିଁ ସମାପ୍ତି ହୁଏ । ଯେଉଁ ବାଣ ଧନୁରୁ ବହିର୍ଗତ ହୋଇଗଲା, ଯେ ପର୍ଯ୍ୟନ୍ତ ତାହାର ବେଗର ଗତି ସମାପ୍ତି ନ ହୋଇ ତଳେ ନ ପଡ଼ିଛି ସେ ପର୍ଯ୍ୟନ୍ତ ତାହା ଚାଲିଥିବ । ପ୍ରାରବ୍ଧ ଅନୁସାରେ କର୍ମ ଯନ୍ତ୍ର ପରି ଅଟେ, କିନ୍ତୁ ଏହା ଆଗକୁ ଯିବା ପାଇଁ କ୍ରିୟମାଣ କର୍ମରେ ପରିବର୍ତ୍ତିତ ହୁଏ ନାହିଁ । ଯେପରି ଭୂଇଁରେ ପଡ଼ିଥିବା ଚଣାର ଅସ୍ତିତ୍ୱ ରହିଥାଏ, କିନ୍ତୁ ଅଙ୍କୁର ଉତ୍ପନ୍ନ କରିବାରେ ଅସମର୍ଥ ହୁଏ । ଜୀବନମୁକ୍ତ ପୁରୁଷ କର୍ମର ସୁଖ ଦୁଃଖରେ ସମାନ ରହେ ଯେପରି କୌଣସି ବ୍ୟକ୍ତି ସ୍ୱପ୍ନରେ କିଛି ପାଣି ଦୁଧରେ ପସ୍ତୁତ ଅତ୍ୟନ୍ତ ସ୍ୱାଦିଷ୍ଟ କ୍ଷିରି ଖାଏ ଏବଂ ହଠାତ୍ କିଏ ଲାଠି ମାରେ, ତାର ଶିର ଫାଟିଯାଏ, ଉଠିବା ବେଳକୁ ତା ନିକଟରେ କ୍ଷିରର ହାଣ୍ଡି ନଥାଏ, ଲାଠି ମାରିବା ଦ୍ୱାରା ମୁଣ୍ଡ ମଧ୍ୟ ଫାଟି ନଥାଏ । ଉଠିବାବେଳେ ଉଭୟ କଥାକୁ ସ୍ମରଣ କରି କେବଳ ହସିଦିଏ । କ୍ଷିରିର ସୁଖ ତାଙ୍କୁ ମିଳେନି କିମ୍ବା ଲାଠି ଖାଇବାର ଦୁଃଖ ପାଏନି । ଉଭୟ ତା ନିକଟରେ ମିଥ୍ୟା । ଏହିପରି ଭାବରେ ଜ୍ଞାନୀପୁରୁଷ ମଧ୍ୟ ଯେ ପର୍ଯ୍ୟନ୍ତ ପ୍ରାରବ୍ଧର ଶେଷ ରହେ, ସେ ପର୍ଯ୍ୟନ୍ତ ତାକୁ ଭୋଗ କରିବା ନିମିତ୍ତ ଦେହ ଧାରଣ କରି ରହେ; କିନ୍ତୁ ସେ ନିଜକୁର ଅଭିମାନ କରେ ନାହିଁ କିମ୍ବା ଅନ୍ୟ ଦେହପରି ପାଇଥିବା ସଂସ୍କାର ନିଜ ପାଇଁ ସ୍ୱୀକାର କରେ ନାହିଁ ।"

ଏହା ଶୁଣି ରାଜକୁମାର ପ୍ରିୟବ୍ରତ କହିଲେ—"ତେବେ ଭଗବନ୍ ! ସବୁଠାରୁ ଶ୍ରେଷ୍ଠତମ କାର୍ଯ୍ୟ ଏହି ଯେ ଏ ସମସ୍ତ ବ୍ୟସ୍ତତାକୁ ତ୍ୟାଗ କରି ଶାନ୍ତ ହୃଦୟରେ ଏକାନ୍ତରେ ଯାଇଁ ସର୍ବେଶ୍ୱର ଶ୍ରୀହରିଙ୍କର ଭଜନ କରିବ । ଏଭଳି ଗୃହସ୍ଥ ରୂପକ ଜଳରେ ପ୍ରବେଶ କରିବା ଉଚିତ ନୁହେଁ । ଏଥିରେ ରହିଛି ନାନା ପ୍ରକାର କ୍ଲେଶ, ବିବିଧ ରୂପର ବନ୍ଧନ ।"

ଏହା ଶୁଣି ବ୍ରହ୍ମା ହସି ହସି କହିଲେ—"ଆରେ ଭାଇ ! ବଣରେ ତ ଏପରି କିଛି ଯାଦୁ ନାହିଁ ଯେ ପହଞ୍ଚିବା ମାତ୍ରେ ଚିତ୍ତ ଶାନ୍ତ ହୋଇଯିବ । ତେବେ କେବେ ମଧ୍ୟ ଦେଖାଯାଇଛି, ଏକାନ୍ତରେ କାମବାସନା ଅତ୍ୟନ୍ତ ପ୍ରବଳ ହୋଇ ଉଠେ । ମୋର ପ୍ରିୟ ପୁତ୍ର ! କୌଣସି ସ୍ଥାନରେ କିଛି ନାହିଁ; ଯଦି ନିଜର ମନ ନିଜ ବଶୀଭୂତ, ଇନ୍ଦ୍ରିୟଙ୍କ ଉପରେ ବିଜୟ ଲାଭ କରିଛୁ । ତେବେ ବଣରେ ରୁହ ବା ଘରେରୁହ ଉଭୟ ସ୍ଥାନ ଏକାପରି ଏବଂ ଉଭୟ ସ୍ଥାନରେ ଆନନ୍ଦ ମଧ୍ୟ ରହିଛି । ଯଦି ମନ ଚଞ୍ଚଳ, ଇନ୍ଦ୍ରିୟ ନିଜର ଅଧୀନ ନୁହେଁ, ତେବେ ତୁମେ ଲକ୍ଷେ ବଣକୁ ଯାଅ, ସେଠାରେ ମଧ୍ୟ ଛନ୍ଦି ହୋଇଯିବ । କାରଣ ବିଘ୍ନ କରାଉଥିବା କାମ, କ୍ରୋଧ, ଲୋଭ, ମୋହ, ମଦ ଏବଂ ମାତ୍ସର୍ଯ୍ୟ ଏ ଛଅ ଶତ୍ରୁ ସଦା ସର୍ବଦା ପୁରୁଷ ସହିତ

ରହୁ ଅଛନ୍ତି । ଯେଉଁଠାକୁ ସ୍ଖଳିଯାଅ ସେ ପାଖ ଛାଡ଼ିବେ ନାହିଁ । ଯେ ଏହି କାମ, କ୍ରୋଧ ଉପରେ ବିଜୟପ୍ରାପ୍ତ କରିଛି, ସେଇଁଠାରେ ରୁହନ୍ତା କାହିଁକି, କେବଳ ହିଁ ଆନନ୍ଦ ମିଳିବ ।"

କୁମାର ପ୍ରିୟବ୍ରତ କହିଲେ—"ମହାରାଜ ! ଆପଣଙ୍କର ଏ କଥା ତ ଠିକ୍, ଯେ ପର୍ଯ୍ୟନ୍ତ ମଣିଷ ଜିତେନ୍ଦ୍ରିୟ ନ ହୋଇଛି, କାମ, କ୍ରୋଧ ଇତ୍ୟାଦି ଶତ୍ରୁମାନଙ୍କୁ ଜୟ ନ କରିଛି, ସେ ପର୍ଯ୍ୟନ୍ତ ତାହାର ଏକାନ୍ତ ଭାବରେ ରହିବା, ଜପ, ତପ, ପୂଜା, ପାଠ, ବେଦାଧ୍ୟୟନ ସବୁ କେବଳ ବ୍ୟର୍ଥତା; ତଥାପି ଏହି ଶତ୍ରୁମାନଙ୍କୁ ଜିଣିବାର ଉତ୍ତମ ପଥ ହେଉଛି ଗୋଟିଏ, ଗୃହସ୍ଥାଶ୍ରମରେ ରହି ରିପୁ ଓ କାମ, କ୍ରୋଧାଦିର ସାଥି ଲଢ଼ିବାର ଶକ୍ତି । ଏହାକୁ ଛାଡ଼ି ଏକାନ୍ତରେ ସାଧନ କରି ଶତ୍ରୁମାନଙ୍କ ଉପରେ ବିଜୟ ପ୍ରାପ୍ତ କରି ଜୀବନମୁକ୍ତ ହୋଇ ସୁଖର ଆସ୍ୱାଦନ କରିହେଇପାରେ । ଏହି ଶତ୍ରୁମାନଙ୍କୁ ଘର ଭିତରେ ରହି ମଧ୍ୟ ବିଜୟଲାଭ କରିହେଇ ପାରେନାହିଁ । ଏମାନଙ୍କୁ ଜିତିବା ପାଇଁ ଘର ତ୍ୟାଗ କରିବା ମଧ୍ୟ ଅତ୍ୟାବଶ୍ୟକ ଅଟେ ।"

ବ୍ରହ୍ମା କହିଲେ—"ହଁ ଭାଇ ! ଏ କଥା ଠିକ୍ । ଗୃହସ୍ଥାଶ୍ରମକୁ ଛାଡ଼ିକରି ମଧ୍ୟ ଷଡ଼ ରିପୁ ଉପରେ ବିଜୟପ୍ରାପ୍ତ କରିଯାଇପାରେ । କିନ୍ତୁ ଭାଇ ! ଏ ହେଉଛି ଲଢ଼େଇ । ଏହା ଅତ୍ୟନ୍ତ ସାହସିକ କାର୍ଯ୍ୟ । ଲଢ଼େଇ ଦୁଇ ପ୍ରକାର :—ଗୋଟିଏ ରଣକ୍ଷେତ୍ରରେ ଲଢ଼େଇ, ଅନ୍ୟଟି ଦୁର୍ଗ ଭିତରେ । ଯଦି ଶତ୍ରୁ ଦୁର୍ବଳ ଏବଂ ନିଜେ ସବଳ, ତେବେ ଶତ୍ରୁ ସମ୍ମୁଖରେ ରଣକ୍ଷେତ୍ରରେ ଯୁଦ୍ଧ କରିହେଇପାରେ; ମାତ୍ର ସବଳ ହେଲେ ମଧ୍ୟ ରଣକ୍ଷେତ୍ରରେ ଲଢ଼େଇ କରିବାରେ ସନ୍ଦେହ ଥାଏ; ମାତ୍ର ଦୁର୍ଗ ଭିତରେ ଲଢ଼େଇରେ ସବୁବେଳେ ସୁରକ୍ଷା ଥାଏ । ଦୁର୍ଗ ଭିତରେ ଥିବା ସମୟରେ ଯୁଦ୍ଧ କଲାବେଳେ ଯଦି ଶତ୍ରୁ ସବଳ ହୋଇଥାଏ, ତଥାପି କୌଣସି ସନ୍ଦେହ ରହେ ନାହିଁ । ଶତ୍ରୁ ତଳେ ଥାଏ । ଘରଆଡ଼େ ଉନ୍ମୁକ୍ତ । ନିଜେ ଦୁର୍ଗ ଭିତରେ ସୁରକ୍ଷିତ ରହି ଉପରୁ ବାଣ ଛାଡ଼ିବା ଫଳରେ ଶତ୍ରୁ ସୈନ୍ୟମାନଙ୍କୁ ଖୁବ୍ ସହଜରେ ସଂହାର କରିଯାଇପାରେ । ସେମାନେ ପ୍ରଥମତଃ ନୀଚ ସ୍ଥାନରୁ ଏତେ ଉଚ୍ଚକୁ ବାଣ ଫିଙ୍ଗି ପାରିବେ ନାହିଁ, ଛାଡ଼ିଲେ ମଧ୍ୟ ଦୁର୍ଗ ଭିତରେ ଲୁଚି ରହିବା ଫଳରେ ଲୋକମାନଙ୍କ ଦେହରେ ଅସ୍ତ୍ର ବାଜେ ନାହିଁ । ଏଭଳି ଯୁଦ୍ଧରେ ପରାଜୟର ସମ୍ଭାବନା ଆଦୌ ରହେନାହିଁ—ଯଦି ଦୁର୍ଗର ଖାଇ ମଜବୁତ୍ ଏବଂ ଜୀବନ ଧାରଣର ସମସ୍ତ ଅତ୍ୟାବଶ୍ୟକ ସାମଗ୍ରୀ ଯଥେଷ୍ଟ ପରିମାଣରେ ସଂଗୃହୀତ ହୋଇଥାଏ । ସେହିପରି ଭାବରେ ଗୃହସ୍ଥାଶ୍ରମରେ ରହି ସାଧନ ମାର୍ଗରେ ଚାଲିବା ଦୁର୍ଗ ଭିତରେ ରହି

ଲଢ଼େଇ କରିବା ସହିତ ସମାନ । ଗୃହସ୍ଥାଶ୍ରମରେ ରହି କାର୍ଯ୍ୟ କରି ବିଜୟପ୍ରାପ୍ତ ହେବାର ନାମ ସାଧନ । କେବେ ଯଦି ଭୁଲରେ ବାଟବଣା ହୋଇଗଲ, ତେବେ ଧର୍ମପତ୍ନୀ ଠାରେ କାମବାସନା ଚରିତାର୍ଥ କରିବା ଏତେ ପାପ ନୁହେଁ । ଯଦି ତ୍ୟାଗୀ ନିଜକୁ ସଂଯତ କରି ନ ପାରେ, ବିଚଳିତ ହୋଇଯାଏ ତେବେ ତାର ସର୍ବନାଶ ହିଁ କେବଳ ହୋଇଥାଏ, ପତନ ସିଧା ହୁଏ । ମୁନି ତାଙ୍କୁ ସମ୍ଭାଳିବା ଅତ୍ୟନ୍ତ କଠିନ କାର୍ଯ୍ୟ । ତାଙ୍କୁ ରୌରବ ଆଦି ନରକର ଯାତନା ଭୋଗ କରିବାକୁ ପଡ଼ିଥାଏ । ଏହିପରି ସ୍ୱଭାବରେ କ୍ରୋଧ ଅଛେ, ଯଦି ନିଜର ପିଲାମାନଙ୍କ ଉପରେ କ୍ରୋଧ ପ୍ରକଟ କଲ । ଲୋଭ, ମଦ ଓ ମାତ୍ସର୍ଯ୍ୟ ଏ ସବୁ ଗୃହସ୍ଥରେ ରହି କରାଯାଇ ପାରେ । ଏହା ସରଳ ସୁଗମ ମାର୍ଗ । ମନର ବାସନା ଶାନ୍ତ ହୋଇଗଲେ, ଚିତ୍ତ ଚଞ୍ଚଳତାକୁ ତ୍ୟାଗ କରେ । ଯେତେବେଳେ ବୃଦ୍ଧିଥିବା ମନ ଚଞ୍ଚଳ ନ ହୁଏ, ତେବେ ଘରକୁ ପରିତ୍ୟାଗ କରି ଏକାନ୍ତରେ ଭଜନ କରାଯାଇପାରେ । ଏହା ଭାଇ ରାଜପଥ । ଆଖି ବନ୍ଦ କରି ଚାଲିଯାଅ, କୌଣସି ଭୟ ନାହିଁ, କୌଣସି ଚିନ୍ତା ନାହିଁ ।"

ପ୍ରିୟବ୍ରତ କୁମାର ଆତ୍ମଗ୍ଲାନି ସ୍ୱରରେ କହିଲେ, "ଭଗବନ ! ମୋର ଚିତ୍ତ ବଡ଼ ଚଞ୍ଚଳ । ଆପଣ ମୋତେ ଗୃହସ୍ଥାଶ୍ରମରେ ପ୍ରବେଶ କରିବାକୁ କହୁଛନ୍ତି । ଆପଣ ଗୁରୁଙ୍କର ଗୁରୁ ଓ ପୂଜନୀୟ ପିତାଙ୍କର ପୂଜ୍ୟ ଅଟନ୍ତି । ଆପଣଙ୍କର ଆଜ୍ଞାକୁ ଅମାନ୍ୟ ତ କରିପାରିବି ନାହିଁ, ମାତ୍ର ଗୃହସ୍ଥ ମଧ୍ୟରେ ରହି ନିଜର ବିବେକକୁ ନଷ୍ଟ କରିଦେବି । ଏହି ବିଷୟ ସୁଖ ମଧ୍ୟରେ ଲୀନ ହୋଇଯିବି ।

ବ୍ରହ୍ମା ଅତ୍ୟନ୍ତ ସ୍ନେହପୂର୍ଣ୍ଣ ସ୍ୱରରେ କହିଲେ—"ଆରେ ଭାଇ ! ତୁ କି ଭଳି କଥା କହୁଛୁ । ତୁମେ କାମାଦି ଶତ୍ରୁମାନଙ୍କର କିପରି ଅଧୀନ ହୋଇ ପାରିବ । ତୁମେ ପରମଆରାଧ୍ୟ ପ୍ରଭୁଙ୍କର ପାଦପଦ୍ମ ରୂପକର୍ଣ୍ଣିକାର କମନୀୟତାକୁ ଦୁର୍ଗ ରୂପେ ଭାବି ତାହାର ଆଶ୍ରୟ ନେଇ କାମକ୍ରୋଧ, ଇତ୍ୟାଦି ଶତ୍ରୁମାନଙ୍କ ଉପରେ ପ୍ରଥମରୁ ବିଜୟ ପାଇ ଯାଇଛନ୍ତି । ଏଥିପାଇଁ ତୁମେ କ'ଣ କର୍ମ ମୋକ୍ଷ ? ତୁମେ ଭଗବାନଙ୍କର କୃପାପାତ୍ର । ସୃଷ୍ଟି ବଢ଼ାଇବା ପାଇଁ ତୁମର ଏହି ପୃଥିବୀରେ ଜନ୍ମଲାଭ । ତୁମେ ନିଃସଙ୍ଗଭାବରେ ଅନାସକ୍ତ ହୋଇ ସଂସାରର ଭୋଗ ବାସନାକୁ ଭୋଗ କର, ବିବାହ କର, ସନ୍ତାନ ଜନ୍ମ କରି ସୃଷ୍ଟିକୁ ବଢ଼ାଅ । ଏ ନାରଦ ହୋଇଛି ବାବାଜୀ ।

ଏକ ବିଧବା ସ୍ତ୍ରୀର ପାଦକୁ କେହି ଜଣେ ସଧବା ସ୍ତ୍ରୀ ଜାବୋଡ଼ି ଧରିଲା । ବିଧବା ଆଶୀର୍ବାଦ ଦେଇ କହିଲା—"ଅଚ୍ଛା ଭଉଣୀ ! ତୁ ମୋ ପରି ହୋଇଯାଆ । ଏହି ଦଶା ହେଉଛି ଏହି ନାରଦଙ୍କର । ସମସ୍ତଙ୍କୁ ବୁଲି ବୁଲି ବାବାଜୀ କରିବାକୁ

ମେ ରହୁଁଛୁ । ଆରେ ଭାଇ ! ଏଭଳି ଶୁଷ୍କ ବାବାଜୀ ଜୀବନରେ କ'ଣ ଅଛି । ବାହା ହୋଇପଡ଼, ମିଳାମିଶି ରହିଅନ୍ତୁ, ପୁଣି ଯଦି ତୋର ଏପରି ଇଚ୍ଛା ହୁଏ, ତେବେ ଏକାନ୍ତରେ ଯାଇ ମାଳା ଗଡ଼ା, ବର୍ତ୍ତମାନରୁ ଏ କଥା ଠିକ୍ ନୁହେଁ । ପୁଣି ଆମେ ତୁମର ବାପର ବାପ । ଆମର ଆଜ୍ଞା ବି ମାନିବା ଉଚିତ୍ ।"

ଏହା ଶୁଣି ରାଜକୁମାର ପ୍ରିୟବ୍ରତ ମନକୁ ମନ ହସିବାକୁ ଲାଗିଲେ । ଏବେ ସେ କ'ଣ କହିବେ । ବ୍ରହ୍ମା ସମସ୍ତ ବ୍ରହ୍ମାଣ୍ଡର ସ୍ୱାମୀ, ପୂଜନୀୟ, ପିତାମହ । ତାଙ୍କର ଆଜ୍ଞାକୁ ଲଙ୍ଘନ କରାଯାଇ ନ ପାରେ । ତାଙ୍କୁ ଉତ୍ତର ଦେବା ହିଁ କେବଳ ଧୃଷ୍ଟତା । ଶେଷରେ ମହାଭାଗବତ ପ୍ରିୟବ୍ରତ ବହୁତ ଅତ୍ୟନ୍ତ ନମ୍ର ଭାବ ଏବଂ ଏହା ବିଚାର କରି, ସେ ବଡ଼ ବଡ଼ ଲୋକଙ୍କର ଆଜ୍ଞାକୁ ମାନିବାକୁ ହେବ ଏହା ଭାବି ନମସ୍କାରପୂର୍ବକ କଟିଦେଶକୁ ବଙ୍କାଇ, ଅତ୍ୟନ୍ତ ସଙ୍କୋଚର ସହିତ କହିଲେ— "ଅଚ୍ଛା ମହାରାଜ ! ଯାହା ଆପଣଙ୍କର ଆଜ୍ଞା ।" ଏହା ଶୁଣି ବ୍ରହ୍ମାଙ୍କର ପ୍ରେମ ବର୍ଷିବାକୁ ଲାଗିଲା । ସ୍ୱାୟମ୍ଭୁବ ମନୁଙ୍କର ପ୍ରସନ୍ନତା କଥାରେ ପ୍ରକାଶ କରି ହେବ ନାହିଁ । ସେ ଭାବିଲେ—"ଭଲ ଏ ଠିକ୍ କଥା । ସାପ ମଲା ନାହିଁ କି ବାଡ଼ି ଭାଙ୍ଗିଲା ନାହିଁ ।" କାମ ହୋଇଗଲା ! ମୋତେ କହିବାକୁ ପଡ଼ିଲା ନାହିଁ, ଟୋକା ବ୍ରହ୍ମାଙ୍କ କଥାନୁସାରେ ଠିକ୍ ଯାଗାରେ ଲାଗିଗଲା ।" ଏହାଭାବି ଖୁବ୍ ଶୀଘ୍ର ସେ ଲୋକପିତାମହ ବ୍ରହ୍ମାଙ୍କର ବିଧିବତ୍ ପୂଜାର୍ଚ୍ଚନା କଲେ । ମନୁଙ୍କର ପୂଜାକୁ ସ୍ୱୀକାର କରି ବ୍ରହ୍ମା ହସି ହସି ନାରଦଙ୍କୁ ପଚାରିଲେ, "କହ ଭକ୍ତରାଜ ! ଆପଣ ଅପ୍ରସନ୍ନତ ହୋଇନାହାନ୍ତି ତ, କାରଣ ବ୍ରହ୍ମା ଆପଣଙ୍କ ଚେଲାକୁ ଓଲଟା ପାଲଟା କଥା ବତାଇ ଭୁଲାଇଦେଲେ ।"

"ନାରଦ ହସି ହସି କହିଲେ—"ବର୍ତ୍ତମାନ ମହାରାଜ ! କ'ଣ କହିବି ଲୋକମାନଙ୍କ ବଡ଼ବଡ଼ିଆ କଥା ! କ୍ଷୁଦ୍ରଜୀବ ଏହା କଲେ ଅନ୍ୟମାନେ କହିବେ, ଦେଖ ଏ ଅନ୍ୟାୟ କଲା, ଅନ୍ୟର ଚେଲାକୁ ଭୁଲାଇ ଦେଲା, ମାତ୍ର ମହାରାଜ, ବଡ଼ଲୋକଙ୍କୁ କିଏ କହିବ । ଆଚ୍ଛା କଥା ହେଲା ସେ ଆମର ଚେଲା ନହେଲା ଭାଇ ହେଲା ।"

ଏହା ଶୁଣି ହସି ହସି ବ୍ରହ୍ମା କହିଲେ—"ଆରେ ଭାଇ-ନାଁ ! ଭଲ ତୁମର ହିଁ ହେଲା ଏବଂ ଆଗକୁ ତୁମର ହିଁ ହିଁ ରହିବ । ଏହାଦ୍ୱାରା ଆମେ ସୃଷ୍ଟିର ବହୁତ କାର୍ଯ୍ୟ କରିପାରିବା । ଏହାଦ୍ୱାରା ଦ୍ୱୀପ, ସମୁଦ୍ର, ଦେଶ ଇତ୍ୟାଦି ନାନାପ୍ରକାର ସୃଷ୍ଟି ରଚନା କରାଯାଇପାରିବ । ଏଭଳି ତ୍ୟାଗୀ ବୈରାଗୀ କେବଳ ମହାନ୍ କାର୍ଯ୍ୟ କରି ପାରିବେ । ଏବେ, ଏ କାର୍ଯ୍ୟ ସରୁ ହୋଇଗଲେ, ସେ ପରେ ତୁମର ପଥକୁ ହିଁ ଅନୁସରଣ କରିବେ ।"

ନାରଦ ହସି ହସି କହିଲେ—"ନାଁ । ଭଗବାନ ! ଏଭଳି କୌଣସି କଥା ନାହିଁ । ଆପଣଙ୍କୁତ ନିବୃତ୍ତି ଓ ପ୍ରବୃତ୍ତି ଉଭୟ ଧ୍ୟାନ ଦେବାକୁ ହେବ ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ ! ଏହିପରି ଭାବରେ କୁମାର ପ୍ରିୟବ୍ରତଙ୍କୁ ଉପଦେଶ ଦେଇ ବ୍ରହ୍ମା ମନ ଏବଂ ବାଣୀର ଯେଉଁ ବିଷୟ ନୁହେଁ, ସେହିଭଳି ଅବାଙ୍ଗ ମାନସ, ଗୋଚର, ବ୍ୟବହାର ଶୂନ୍ୟ ଆପଣାର ଆଶ୍ରୟ ନିର୍ଗୁଣ ନିରାକାର, ବିଶୁଦ୍ଧ ବ୍ରହ୍ମର ଚିନ୍ତା କରି ଆପଣାର ଶ୍ରେଷ୍ଠ ଧର୍ମ ବ୍ରହ୍ମଲୋକକୁ ପ୍ରସ୍ଥାନ କଲେ ।"

ବ୍ରହ୍ମା ଚାଲିଯିବା ପରେ ହସି ହସି ନାରଦ ସ୍ୱାୟଂଭୁବ ମନୁଙ୍କୁ କହିଲେ—"ରାଜନ ! ଏ ଥରକ ଖାଲି ଯିବା ଉଚିତ ନୁହେଁ, ପୁଣି ନହେଲେ ମଧ୍ୟ ପିତା, ବର୍ତ୍ତମାନ ଆପଣଙ୍କର ବୃଦ୍ଧାବସ୍ଥା । ପ୍ରିୟବ୍ରତ ସର୍ବସମର୍ଥ । ସେ ରାଜ୍ୟ ଇତ୍ୟାଦି ପାଳନ କରିବାର ସବୁ କିଛି ଯୋଗ୍ୟତା ହାସଲ କରିଛି । ଆପଣ ଆପଣଙ୍କର ସମସ୍ତ ଦାୟିତ୍ୱ ଏହାଙ୍କୁ ସମର୍ପଣ କରି ଏକାନ୍ତରେ ଯାଇ ଶ୍ରୀହରିଙ୍କ ଆରାଧନାରେ ନିମଗ୍ନ ହୋଇ ଯାଆନ୍ତୁ । ବର୍ତ୍ତମାନ ଏହି ସମ୍ପୂର୍ଣ୍ଣ ଭୂମଣ୍ଡଳର ରକ୍ଷାର ଦାୟିତ୍ୱ ତାଙ୍କୁ ସମର୍ପଣ କରନ୍ତୁ ।

ପ୍ରସନ୍ନତା ପ୍ରକଟ କରି ମନୁ କହିଲେ—"ନାରଦ ! ଲକ୍ଷେ ଟଙ୍କାର କଥା ଆପଣ କହିଲେ । ମୋର ବର୍ତ୍ତମାନ ତପୋବନ ଯିବା ସମୟ । ସେସବୁ ରାଜକାର୍ଯ୍ୟ ସମ୍ଭାଳିବ, ମୁଁ ବର୍ତ୍ତମାନ ଆପଣଙ୍କ ଠାରୁ ଦୀକ୍ଷା ନେଇ ବନକୁ ଯିବି ।" ଏହାକହି ମହାରାଜ ଅତି ଶୀଘ୍ର ମନ୍ତ୍ରୀ ପୁରୋହିତ ଓ ପ୍ରଜାମାନଙ୍କୁ ଡାକି ପ୍ରିୟବ୍ରତଙ୍କୁ ରାଜ ସିଂହାସନରେ ବସାଇ ବିଷୟ ଭୋଗକୁ ବିଷବତ୍ ମନେକରି ସେଥିରୁ ନିବୃତ୍ତି ହୋଇ ତପୋବନ ଚାଲିଗଲେ ।"

ମହାରାଜ ପ୍ରିୟବ୍ରତଙ୍କ ଆଗରୁ ମଧ୍ୟ ଏ ବିଷୟ ସୁଖ ଆନନ୍ଦଦାୟକ ନଥିଲା । କାରଣ ତାଙ୍କର ଅନ୍ତଃକରଣର ସମସ୍ତ ବିଷୟବାସନା ଆଦି ପୁରୁଷ ଶ୍ରୀମନ୍ନାରାୟଣଙ୍କର ପାଦପଦ୍ମର ଚରଣାମୃତ ଅନୁକ୍ଷଣ ପାନ କରିବା ଦ୍ୱାରା କ୍ଷୀଣ ହୋଇ ଯାଇଥିଲା । ସମ୍ପୂର୍ଣ୍ଣ ସଂସାରର ଜନ୍ମମରଣ ରୂପକ ବନ୍ଧନକୁ କାଟିବାର ଅତ୍ୟନ୍ତ ସମର୍ଥ ସେହି ଆଦି ପୁରୁଷ ଅଖିଳେଶଙ୍କ ପ୍ରତି ଧ୍ୟାନ ଓ ଧାରଣା ଫଳରେ ତାଙ୍କର ଅନ୍ତଃକରଣ ସମ୍ପୂର୍ଣ୍ଣ ବିଶୁଦ୍ଧ ହୋଇଥିଲା । ତଥାପି ଗୁରୁଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟ କରି ସମଗ୍ର ପୃଥିବୀକୁ ଧର୍ମ ପୂର୍ବକ ଶାସନ କରିବାକୁ ଲାଗିଲେ ।

କିଛି ଦିନ ପରେ ସେ ବିଶ୍ୱକର୍ମା ନାମକ ପ୍ରଜାପତିଙ୍କର ପରମ ସୁଶୀଳା ସୁନ୍ଦରୀ କନ୍ୟାଙ୍କ ସହିତ ବୈଦିକ ବିଧିପୂର୍ବକ ବିବାହ କଲେ। ଅନୁପ ସୁନ୍ଦରୀ, ସର୍ବଗୁଣସମ୍ପନ୍ନା ପତ୍ନୀଙ୍କୁ ପାଇ ମହାରାଜ ପ୍ରିୟବ୍ରତ ପୁରୁଣା କଥାକୁ ପାଶୋର ପକାଇଲେ। ତାଙ୍କର ପ୍ରେମରେ ଏତେଦୂର ମଗ୍ନ ହୋଇଗଲେ ଯେ, ତାଙ୍କୁ ଜଣା ପଡ଼ୁ ନଥିଲା କେତେବେଳେ ଦିନ ଓ କେତେବେଳେ ରାତି ହେଉଥିଲା। ସେ ଗୃହସ୍ଥାଶ୍ରମରେ ବନ୍ଦୀ ହୋଇଗଲେ।

## ଛପ୍ପୟ

"ଆୟସୁ ବିଧି କି ମାନି ପ୍ରିୟବ୍ରତ ସିରତେ ଧାରୀ।
ସୋଚେ ମନୁ ଅବ ସହଜ କାମନା ପୁର ହମାରୀ॥
ଯୋଁ ସବ୍ ବିଧି ସମୁଝାଇ ବ୍ରହ୍ମା ନିଜ ଲୋକ ସିଧାରେ।
ଇତ ପ୍ରିୟବ୍ରତ ନେ ରାଜକାଜ ସବ୍ ଆଇ ସହ୍ମାରେ॥
ବ୍ୟାହ କରୟୋ ରାନୀ ମିଲୀ, ପ୍ରତପ୍ରାଣା ବହିଷ୍ମତୀ।
ପରମ ସୁଶୀଲା ସୁନ୍ଦରୀ, ବିନୟବତୀ ଅତି ଗୁଣବତୀ॥"



# ମହାରାଜ ପ୍ରିୟବ୍ରତଙ୍କର ପ୍ରଭାବ

"ନୈବଂବିଧଃ ପୁରୁଷକାର ଉରୁକ୍ରମସ୍ୟ
ପୁଂସାଂ ତଦଙ୍ଘ୍ରିରଜସା ଜିତଷଡ୍‌ଗୁଣାନାମ୍ ।
ଚିତ୍ରଂ ବିଦୂର ବିଗତଃ ସକୃଦାଦଦୀତ
ଯନ୍ନାମଧେୟମଧୁନା ସ ଜହାତି ବନ୍ଧମ୍ ॥"

( ଭାଗବତ ୫-ସ୍କନ୍ଧ ୧-ଅଧ୍ୟାୟ ୩୫-ଶ୍ଳୋକ )

## ଛପ୍ପୟ

"ଭୟେ ପୁତ୍ର ଦଶ ବିଶ୍ୱ ବିଦିତ ଧାର୍ମିକ ଜ୍ଞାନୀ ଅତି ।
ତିନମେ ତ୍ୟାଗୀ ତୀନ ସତ ଦ୍ୱୀପନି କେ ଭୂପତି ॥
ଉତ୍ତମ ତାମସ ପୁତ୍ର ଦୁସରୀ ରାନୀ ଜାୟେ ।
ଅପର ରୈବତ ଭୟେ ସବନ ପ୍ରନ ମନୁପଦ ପାୟେ ॥
ତନୟା ଇକ ଉର୍ଜସ୍ୱତୀ, ଶୁକ୍ର ସଙ୍ଗ ବ୍ୟାହି ତାଇଂ ।
ତାସୁ ଗର୍ଭତେ ଗରଭିନୀ, ସୁତା ଦେବଯାନୀ ଭଇଂ ॥"

ବିଷୟରେ ଆସକ୍ତ ହୋଇଥିବା ଜ୍ଞାନୀ ଏବଂ ଅଜ୍ଞାନୀ ଉଭୟ ଏକପ୍ରକାର ହିଁ ଦେଖାଯାନ୍ତି । ମାତ୍ର ଜ୍ଞାନୀର ବିବେକ ଲୁପ୍ତ ହୁଏନାହିଁ, ଏହା ସାଂସାରିକ କାର୍ଯ୍ୟରେ ଲିପ୍ତ ରହିଲେ ମଧ୍ୟ, ସେଥିରୁ ନିର୍ଲିପ୍ତ ରହେ । ଅନ୍ୟ ଲୋକମାନେ ଭାବନ୍ତି, ସେ ନିଜର ବିବେକକୁ ଜଳାଞ୍ଜଳି ଦେଇ କେବଳ ବିଷୟବାସନାକୁ ହିଁ ସବୁ କିଛି ବୋଲି ଗ୍ରହଣ କରୁଛି । ସେ ମଧ୍ୟ ଅନ୍ୟ ବିଷୟୀ ଲୋକମାନଙ୍କ ପରି ସ୍ତ୍ରୀର କ୍ରୀଡ଼ନକ ହୋଇ ରହେ । ମାତ୍ର ତାର ବିବେକ ସମ୍ପର୍କରେ ସେ ସେତେବେଳେ ଜ୍ଞାନ ହୁଏ, ଯେତେବେଳେ ସେ ଅତ୍ୟନ୍ତ ପ୍ରିୟ ଅନୁଭବ ହେଉଥିବା ପଦାର୍ଥକୁ ତୃଣ ସମାନ ଭାବି ତ୍ୟାଗ କରି ଛାଡ଼ିଯାଏ ।

ଶ୍ରୀ ଶୁକଦେବ କହୁଛନ୍ତି,—"ରାଜନ ! ବ୍ରହ୍ମାଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟ କରି ମହାରାଜ ପ୍ରିୟବ୍ରତ ଗୃହସ୍ଥାଶ୍ରମରେ ପ୍ରବେଶ କଲେ । ତାଙ୍କର ପ୍ରାଣପ୍ରିୟା ମହାରାଣୀ ବର୍ହିଷ୍ମତୀ ବହୁ ସାବଧାନ ସହକାରେ ହୃଦୟ ଦେଇ ତାଙ୍କର ସେବା କରିବାକୁ ଲାଗିଲେ । ସେ ତାଙ୍କର ସେବା ଏବଂ ବିନୟ ଦ୍ୱାରା ମହାରାଜଙ୍କୁ ଏପରି ବଶ କରି ନେଲେ ଯେ, ମହାରାଜ ତାଙ୍କୁ ପ୍ରାଣଠାରୁ ଅଧିକ ସ୍ନେହ କରିବାକୁ ଲାଗିଗଲେ । ଯେତେବେଳେ ସେ ତାଙ୍କର ନାରୀ ସୁଲଭ ସଙ୍କୋଚ ସହିତ ମଧୁର ହସରେ ତାଙ୍କୁ ଦେଖୁଥିଲେ, ଯେତେବେଳେ ସେ ଲଜ୍ୟାରେ ଅବନତ ମୁଖମଣ୍ଡଳକୁ ଅନୁରାଗର ସହ ଓଢ଼ଣୀ ଭିତରୁ ଚାହାନ୍ତି, ସେତେବେଳେ ମହାରାଜ ତାଙ୍କ ନିକଟରେ ସର୍ବସ୍ୱ ଅର୍ପଣ କରି ଦିଅନ୍ତି । ଯେବେ ସେ ମିଠା ମିଠା କଥା କହି ମଝିରେ ମଝିରେ ହସି ଦିଅନ୍ତି, ଏପରି ଲାଗୁଥିଲା ଯେମିତି କ୍ଷୀର କୋଳରୁ ଚନ୍ଦ୍ରମାରୁ ମୋତି ଝରି ପଡ଼ୁଛି । ମହାରାଜ ନିଜର ଅନ୍ତଃପୁର ମଧ୍ୟରେ ନିଜକୁ ନିଜେ ଭୁଲିଯାନ୍ତି । ଏହିପରି ଭାବରେ ନିଜର ପ୍ରାଣପ୍ରିୟା ବର୍ହିଷ୍ମତୀଙ୍କ ସହିତ ନିତ୍ୟ ପ୍ରତି ବଢ଼ୁଥିବା ଆମୋଦପ୍ରମୋଦ ଏବଂ କ୍ରୀଡ଼ାହେତୁ ନିଜକୁ ସର୍ବଦା ଇନ୍ଦ୍ରଠାରୁ ଅଧିକ ଭାଗ୍ୟବାନ ଅନୁଭବ କରୁଥିଲେ । ନିଜର ଧର୍ମପତ୍ନୀର ତାଙ୍କ ପ୍ରତି ଏତେ ଅନୁରାଗ ଦେଖି ଅବିବେକୀ ଲୋକମାନେ ଭାବୁଥିଲେ ଯେ ତାଙ୍କଠାରୁ ନାରଦ ଦେଇଥିବା ଜ୍ଞାନ ଓ ଧ୍ୟାନ ପ୍ରସ୍ଥାନ କଲେଣି । ବର୍ତ୍ତମାନ ସେ ବିଷୟାସକ୍ତ ସ୍ତ୍ରୀ ଲମ୍ପଟ ଅଜ୍ଞାନୀ ପୁରୁଷ ପରି ହୋଇ ଗଲେଣି ମାତ୍ର ବାସ୍ତବିକ କଥା ଏପରି ନଥିଲା, ତାଙ୍କର ନିଷ୍ଠାରେ କୌଣସି ଭୁଲ ରହି ନଥିଲା ।

ମହାରାଣୀ ବର୍ହିଷ୍ମତୀଙ୍କ ଗର୍ଭରୁ ମହାରାଜଙ୍କର ଦଶପୁତ୍ର ଓ ଗୋଟିଏ କନ୍ୟା ଜନ୍ମଲାଭ କଲେ । ସେହି ଦଶପୁତ୍ର ଦଶଅଗ୍ନି ନାମରେ ସଂସାରରେ ବିଖ୍ୟାତ ହେଲେ । ଏହି ଦଶଜଣଙ୍କର ନାମ କ୍ରମଶଃ ଆଗ୍ନୀଧ୍ର, ଇଧ୍ମଜିହ୍ୱ, ଯଜ୍ଞବାହୁ, ମହାବୀର, ହିରଣ୍ୟରେତା, ଘୃତପୃଷ୍ଠ, ସବନ, ମେଧା, ତିଥି, ବୀତିହୋତ୍ର ଏବଂ କବି ଥିଲେ । କନ୍ୟାର ନାମ ଥିଲା ଊର୍ଜ୍ଜସ୍ୱତୀ ।

ଏହି ଦଶଜଣଙ୍କ ମଧ୍ୟରୁ ସାତଜଣ ପୃଥିବୀରେ ସପ୍ତଦ୍ୱୀପର ରାଜାହେଲେ । ଶେଷ ତିନିଜଣ କବି, ମହାବୀର, ସବନ ଗୃହସ୍ଥାଶ୍ରମକୁ ସ୍ୱୀକାର କଲେ ନାହିଁ । ସେମାନେ ଅବିବାହିତ ରହି ନିଷ୍ଠେଷ୍ଟ ବ୍ରହ୍ମଚର୍ଯ୍ୟ ପାଳନ୍ତି ଗଲେ । ଏହିମାନେ ପ୍ରବୃତ୍ତି ମାର୍ଗକୁ ଅନୁସରଣ କରି ମହର୍ଷିମାନଙ୍କ ଦ୍ୱାରା ପ୍ରଶଂସିତ ନିବୃତ୍ତି ମାର୍ଗକୁ ହିଁ ଗ୍ରହଣ କଲେ ସେହିଥିରେ ସଂସାରର ଭୟଭୀତ ପ୍ରାଣୀମାନଙ୍କର ଆଶ୍ରୟସ୍ୱରୂପ ସମ୍ପୂର୍ଣ୍ଣ ଜୀବର ପରମ ସୁହୃଦ ଭଗବାନ ବାସୁଦେବଙ୍କର ଚରଣାରବିନ୍ଦକୁ ସବୁବେଳେ ଚିନ୍ତା

କରାଯାଇ ପାରେ । ଯେଉଁ ଆଶ୍ରମରେ ଅଖଣ୍ଡ ଏବଂ ଉତ୍କୃଷ୍ଟ ଭକ୍ତିଯୋଗ ଦ୍ୱାରା ବିଶୁଦ୍ଧ ହୋଇଥିବା ଅନ୍ତଃକରଣରେ ପ୍ରତ୍ୟଗାତ୍ମା ସ୍ୱରୂପ ଅଖିଳେଶ୍ୱରଙ୍କର ଚିନ୍ତା କରି କରି ଅବଶେଷ ରୂପକୁ ପ୍ରାପ୍ତ କରାଯାଇ ପାରେ, ସେହି ପରମହଂସ ଆଶ୍ରମରେ ଦୀକ୍ଷିତ ହେଲେ । ସେମାନେ ସଂସାର ସାଗରକୁ ପାର କରିଗଲେ । ସେହି ଶରୀରରେ ସେମାନେ ପରମପଦ ପ୍ରାପ୍ତ ହେଲେ । ଅନ୍ୟ ସାତଜଣ କୁମାର ପିତାଙ୍କର ଆଜ୍ଞାରେ ରହି ପୃଥିବୀକୁ ପାଳନ କରିବାରେ ଯୋଗ ଦେଲେ । ନିଜର ପ୍ରିୟ କନ୍ୟା ଊର୍ଜ୍ଜସ୍ୱତୀଙ୍କର ବିବାହ ଅସୁରମାନଙ୍କର ପୁରୋହିତ ଭଗବାନ ଶୁକ୍ରାଚାର୍ଯ୍ୟଙ୍କ ସହିତ ସମ୍ପନ୍ନ କଲେ । ଯାହାଙ୍କର ଝିଅ ହେଲେ ଦେବଯାନୀ—ଯାହାଙ୍କର ପାଣିଗ୍ରହଣ କରିଥିଲେ ରାଜର୍ଷି ଯଯାତି ।

ମହାରାଜ ପ୍ରିୟବ୍ରତଙ୍କର ଅନ୍ୟ ଏକ ରାଣୀ ଥିଲେ, ଯାହାଙ୍କର ଗର୍ଭରୁ ଉତ୍ତମ, ତାମସ ଓ ରୈବତ ନାମକ ତିନିଜଣ ପ୍ରଭାବଶାଳୀ ପୁତ୍ର ଜନ୍ମ ଗ୍ରହଣ କରିଥିଲେ । ଏ ତିନିଜଣ ତିନି ମନ୍ୱନ୍ତରର ଅଧିପତି ପ୍ରଭୁ ହେଲେ । ତିନିଜଣଙ୍କ ନାମରେ ପୃଥକ ପୃଥକ ଭାବେ ମନ୍ୱନ୍ତର ପ୍ରସିଦ୍ଧି ଲାଭ କଲା, ସେମାନେ ନିଜନିଜର ମନ୍ୱନ୍ତରର ତିନି ଲୋକର ଶାସନ କଲେ । ମହାରାଜ ନିଜର ବାହୁବଳ ଦ୍ୱାରା ଏହି ସମସ୍ତ ବସୁନ୍ଧରାକୁ ନିଜର ପୁତ୍ର ପରି ପାଳନ କରିଥିଲେ ।"

ଶ୍ରୀ ଶୁକଦେବ କହିଲେ,—"ରାଜନ ! ମହାରାଜ ପ୍ରିୟବ୍ରତଙ୍କ ପରି ସମାନ ତେଜସ୍ୱୀ ପ୍ରତାପୀ ଆଜି ପର୍ଯ୍ୟନ୍ତ କେହି ରାଜା ହୋଇ ନାହାନ୍ତି ବା ହେବାର ସମ୍ଭାବନା ନାହିଁ । ସେ ଦ୍ୱିତୀୟ ପ୍ରଜାପତି ବ୍ରହ୍ମାଙ୍କ ପରି ଶକ୍ତିଶାଳୀ ଥିଲେ । ଯେଉଁମାନେ ପରାକ୍ରମୀ, ସେମାନେ କିଛି ବିଚିତ୍ର କାର୍ଯ୍ୟ କରିଥାନ୍ତି । ଥରେ ମହାରାଜ ଭାବିଲେ—"ଏହି ମରୀଚିମାଳୀ ଭଗବାନ ସୂର୍ଯ୍ୟ ସୁମେରୁକୁ ପ୍ରଦକ୍ଷିଣ କରୁଛନ୍ତି । ଯେଉଁଆଡେ ଯାଉଛନ୍ତି, ସେଆଡେ କେବଳ ପ୍ରକାଶ, ଏକ ପକ୍ଷରେ ଅନ୍ଧକାର ଓ ଅନ୍ୟ ପକ୍ଷରେ ଆଲୋକ । ଏହା ଫଳରେ ଅର୍ଦ୍ଧେକ ଭୂଭାଗରେ ଦିନ ଓ ଅନ୍ୟ ଅର୍ଦ୍ଧକରେ ରାତି । ମୁଁ ପୁରୁଷାର୍ଥ ବଳରେ ଏପରି କରିଦେବି, ଯେପରି କେଉଁଠି ହେଲେ ରାତି ହେବନାହିଁ । ସବୁବେଳେ ହିଁ ଦିନ । ଏହା ବିଚାର କରି ସେ ସୂର୍ଯ୍ୟଙ୍କପରି ଏକ ଜ୍ୟୋତିର୍ମୟ ଦିବ୍ୟ ରଥ ପ୍ରସ୍ତୁତ କଲେ ଏବଂ ସେହି ରଥରେ ଚଢି ଆକାଶ ମାର୍ଗରେ ସୂର୍ଯ୍ୟଙ୍କ ପଛୁଙ୍କରେ ସୁମେରୁକୁ ପ୍ରଦକ୍ଷିଣ କଲେ । ଏବେ କେଉଁଠାରେ ରାତି ହେଉନାହିଁ, ସମସ୍ତ ପ୍ରାଣୀମାନେ ଦୁଃଖରେ ସନ୍ତାପିତ ହେଲେ । ରାତିରେ ପ୍ରାଣୀମାନେ ଶୟନ ପୂର୍ବକ ଦିବସର ନାନାବିଧ କଷ୍ଟକୁ ଦେଖାଇ ଥାଆନ୍ତି । ବର୍ତ୍ତମାନ କେତେବେଳେ ହେଲେ ରାତି ହେଉନାହିଁ । ମହାରାଜଙ୍କର

ରଥ ଏପରି ଦିବ୍ୟଥିଲା, ଯାହାର ଚକ ପୃଥିବୀ ଉପରେ ଥିଲା ଏବଂ ଯାହା ଆକାଶରେ ସୂର୍ଯ୍ୟଙ୍କ ପରି ଚମକୁଥିଲା । ମହାରାଜ ଏହିପରି ଭାବରେ ନିଜର ରଥରେ ପୃଥିବୀକୁ ସାତଥର ପ୍ରଦକ୍ଷିଣ କଲେ । ସେତେବେଳେ ବ୍ରହ୍ମା ମଝିରେ ଆସି ତାଙ୍କୁ ଅଟକାଇ ଦେଲେ, ଜାହିଁକି ତୁ ଏପରି ହରବର କରୁଛୁ । ନିଜର ପ୍ରଭାବକୁ ଏପରି ଦେଖାଇବା ଉଚିତ ନୁହେଁ । ଦିନରାତି ଉଭୟ ହେବାକୁ ଦେ ।'' ବ୍ରହ୍ମାଙ୍କର କଥାକୁ ମହାରାଜ ମାନିନେଲେ । ମାତ୍ର ସାତଥର ପ୍ରଦକ୍ଷିଣ କରିବା ଫଳରେ ଯେଉଁ ରଥର ସାତ ଲୀକ ସୃଷ୍ଟି ହେଲା, ସେ ହିଁ ପୃଥିବୀ ଉପରେ ସାତ ସମୁଦ୍ର ହୋଇଗଲେ ।

ଏହା ଶୁଣି ଶୌନକ କହିଲେ—'ସୂତ ! ଏକଥା ଆମକୁ ବଡ ଆଶ୍ଚର୍ଯ୍ୟ ପରି ପ୍ରତୀତ ହେଉଛି । ରଥ ଚକର ଘର୍ଷଣରେ ସାତସମୁଦ୍ର ହୋଇଗଲେ । ଆମକୁ ସାତସମୁଦ୍ର ଦେଖା ଯାଇନି କମ୍ବା ଏହା ଆମ ବୁଦ୍ଧି ଭିତରେ ପଶୁନାହିଁ । ଏହା ଗୁଲି ଖଟିର ଗପ ପରି ମନେ ହେଉଛି । ଯେପରି ମଦଖାଇ ମଦମତ୍ତ ପୁରୁଷ ଗପ ପେଡି ଖୋଲି ଦିଅନ୍ତି, ଆମର ବାପ ଏପରି ଥିଲେ, ଯାହାଙ୍କର ହଜାର ମହଣ ଧାନ ପେଟରା ହେଉଥିଲା । ସେଥିରେ ଲକ୍ଷେ ମହଣ ଧାନ ଭୁହା ଯାଉଥିଲା, କୋଟିଏ ମହଣ ଅନ୍ନ ହେଉଥିଲା । ଅଯୁତେ ଲୋକ ଖାଉଥିଲେ । ତାଙ୍କର ନାକ ଭିତରୁ ଖଙ୍ଗ ହାତୀ ଜନ୍ମ ନେଇଥିଲେ । ଏ କଥା ଠିକ ସେହିପରି ମୁଣ୍ଡ ଗୋଡ ନଥିବା ଭଳି ପ୍ରତୀତ ହେଉଅଛି ।

ଏହା ଶୁଣି ହସି ହସି ସୂତ କହିଲେ—"ମହାରାଜ ! ଋଷି ହୋଇ ମଧ୍ୟ ଆପଣ ଏପରି କଥା ପଚାରୁ ଅଛନ୍ତି । ଏପରି ଶଙ୍କା କେବଳ ନାସ୍ତିକ ଲୋକମାନେ କରିଥାନ୍ତି । ଯାହାର ଭଗବାନଙ୍କ ଅପରିମେୟ ଶକ୍ତି ଉପରେ ବିଶ୍ୱାସ ନାହିଁ । ସେ ଏତେ ନଦ, ନଦୀ, ସାଗର, ପର୍ବତ ଆଦି ପ୍ରସ୍ତୁତ କରିଛନ୍ତି । କାହାଦ୍ୱାରା ତ ଉଆରି ହୋଇଥିବ । ଶୌନକ ଆଦି ମୁନିମାନେ କହିଲେ—"ତାହା ଆପେ ଆପେ ପ୍ରକୃତି ଦ୍ୱାରା ପ୍ରସ୍ତୁତ ହେଉଅଛି ।"

ସୂତ କହିଲେ—"ଭଗବନ୍ ! ଆପଣ ସ୍ୱୟଂ କୌଣସି ଜିନିଷ ତିଆରି କରନାହିଁ । ପ୍ରକୃତି ସ୍ୱୟଂ ଜଡ଼ । ଯେ ପର୍ଯ୍ୟନ୍ତ ଏହା ଭିତରେ ଚୈତନ୍ୟ ପ୍ରବେଶ ନ କରିଛି, ଅପେ ଆପେ କୌଣସି ବସ୍ତୁ ପ୍ରସ୍ତୁତ ହୋଇପାରେ ନାହିଁ । ଏଥିପାଇଁ କିଛି ନିମିତ୍ତ ଆବଶ୍ୟକ । ସମସ୍ତଙ୍କର ନିମିତ୍ତ ଏବଂ ଉପାଦାନ ହେଉଛି ଶ୍ରୀହରି । ସେ ନିଜେ ନିମିତ୍ତ ମାତ୍ର ହୋଇ ଯାହା ଇଚ୍ଛା କରିଥାନ୍ତି, ତାହା ଅନ୍ୟମାନଙ୍କ ଦ୍ୱାରା କରିଥାଆନ୍ତି । ଯାହାଙ୍କ ଦ୍ୱାରା ଏହି ସମୁଦ୍ରକୁ ରଚନା ହୋଇଅଛି, ସେ ହେଉଛନ୍ତି

ପ୍ରିୟବ୍ରତ । ଏହାର ଆଧ୍ୟାତ୍ମିକ ଅର୍ଥ ମଧ୍ୟ ରହିଛି । ଏଠାରେ କଥା ପ୍ରସଙ୍ଗରେ ତାହା ବସ୍ତୁଗତ ସ୍ତରରେ ଆଲୋଚନା କରୁନାହୁଁ ।

ଶୌନକ କହିଲେ—"ଠିକ୍ କଥା, ଏ ସବୁ କଥା ଉପରେ ସମୟ କ୍ରମେ ଏହାର ସମାଧାନ ହେବ, ବର୍ତ୍ତମାନ ଆପଣ ଏହି କଥା ପ୍ରସଙ୍ଗକୁ ପୂର୍ଣ୍ଣ କରନ୍ତୁ । ସମୁଦ୍ର ସପ୍ତଦ୍ୱୀପ କ'ଣ କ'ଣ ହେଲେ ଏବଂ ରାଜା ପ୍ରିୟବ୍ରତ କେଉଁ ଦ୍ୱୀପରେ କେଉଁ ପୁତ୍ରକୁ ରାଜା କରାଇଲେ, ଏ କଥା କହନ୍ତୁ ।"

ଏହା ଶୁଣି ସୂତ କହିଲେ—"ହଁ, ଭଗବନ୍ ! ଏ ସବୁ ବିଷୟରେ ବିଶଦ ବିବେଚନ ଭୂଗୋଳର ପ୍ରସଙ୍ଗରେ କରାଯିବ । ବର୍ତ୍ତମାନ ଆମେ ଆପଣଙ୍କୁ ଗୁରୁଦେବଙ୍କ ଦ୍ୱାରା କହିଥିବା ସମୁଦ୍ର ଓ ଦ୍ୱୀପର ନାମ କହୁଛୁ । ମହାରାଜ ପରୀକ୍ଷିତଙ୍କ ପଚାରିବା ହେତୁ ଭଗବାନ ଶୁକ କହିବାକୁ ଲାଗିଲେ—"ରାଜନ୍ ! ସାତ ସମୁଦ୍ର ମଧ୍ୟ ଭାଗରେ ଯେଉଁ ପୃଥିବୀ ରହିଗଲା, ଏହାକୁ ହିଁ ସପ୍ତଦ୍ୱୀପ କହନ୍ତି । ଏହାର ନାମ ଜମ୍ବୁଦ୍ୱୀପ, ପ୍ଲକ୍ଷଦ୍ୱୀପ, ଶାଲ୍ମଳ ଦ୍ୱୀପ, କୁଶଦ୍ୱୀପ, କ୍ରୌଞ୍ଚଦ୍ୱୀପ, ଶାକଦ୍ୱୀପ ଏବଂ ପୁଷ୍କର ଦ୍ୱୀପ ।"

ରାଜା ପରୀକ୍ଷିତ ପଚାରିଲେ—"ପ୍ରଭୋ ! କ'ଣ ଏ ସମସ୍ତ ଦ୍ୱୀପ ଲମ୍ବା ଚୌଡ଼ାରେ ସମାନ ଅଥବା କିଛି କମ୍ ବେଶୀ ?"

ଶୁକଦେବ କହିଲେ—"ନା, ମହାରାଜ ! ଏ ସବୁ ସମାନ ନୁହେଁ । ଗୋଟିଏ ଅନ୍ୟଠାରୁ ଦୁଇଗୁଣ ବା ତିନିଗୁଣ ବଡ଼ । ଯେପରି ଜମ୍ବୁଦ୍ୱୀପ ଠାରୁ ପ୍ଲକ୍ଷଦ୍ୱୀପ ଦୁଇଗୁଣ ଏବଂ ପ୍ଲକ୍ଷ ଠାରୁ ଶାଲ୍ମଳି ଦୁଇ ଗୁଣ । ଏହିପରି ଭାବରେ ଆପଣ ବୁଝନ୍ତୁ ? ଯେଉଁ ଦ୍ୱୀପରେ ଆମେ ବସିଅଛୁ, ଏହାର ନାମ ଜମ୍ବୁଦ୍ୱୀପ ।

ଏ ସବୁକୁ ଚାରି ପଟରୁ ଏକ ଏକ ସମୁଦ୍ର ଘେରି ରହିଛି, ଏଥିପାଇଁ ପ୍ରତ୍ୟେକ ପ୍ରତ୍ୟେକ ଠାରୁ ପୃଥକ । ଯୋଗୀମାନଙ୍କ ବ୍ୟତୀତ ମନୁଷ୍ୟ ଗୋଟିଏ ଦ୍ୱୀପରୁ ଅନ୍ୟ ଦ୍ୱୀପକୁ କୌଣସି ଉପାୟରେ ଯାଇ ପାରିବ ନାହିଁ । ସେଥିପାଇଁ ନାସ୍ତିକ ଲୋକମାନେ କହନ୍ତି ଏ ଦ୍ୱୀପ ନାହିଁ । ମନ ଗଢ଼ିତ ଗୁଲ୍‌ଗପ । କେହି ବସି ବସି ଉପନ୍ୟାସ ଲେଖିବା ପରି ଏ ସବୁକୁ ଗଢ଼ି ଦେଇଛନ୍ତି । ଏଥିପାଇଁ ଆମେ କଣ କହିବା ?"

ରାଜା ପଚାରିଲେ— "ଭଗବନ୍ ! ସାତ ସମୁଦ୍ରର କ'ଣ ନାମ ଏବଂ ଏହା କେଉଁ କେଉଁ ଦ୍ୱୀପର ଚାରିପାଖକୁ ଘେରି ରହିଛି ।"

ଶ୍ରୀ ଶୁକଦେବ କହିଲେ—"ରାଜନ ! ଏହି ସାତ ସମୁଦ୍ରର ନାମ (ଲବଣ) ସମୁଦ୍ର, ଇକ୍ଷୁରସ ସମୁଦ୍ର, ସୁରା ସମୁଦ୍ର, ଘୃତ ସମୁଦ୍ର, କ୍ଷୀର ସମୁଦ୍ର, ଦଧିମଣ୍ଡ ସମୁଦ୍ର ଏବଂ ଶୁଦ୍ଧ ଜଳ ସମୁଦ୍ର ଅଛେ । ଏହା କ୍ରମଶଃ ସାତଦ୍ୱୀପର ଚାରି କଡରେ ରହିଛି । ଯେପରି ଜମ୍ବୁଦ୍ୱୀପର ଚାରି ପାଖରେ ଲବଣ ସମୁଦ୍ର, ପ୍ଲକ୍ଷର ଚାରି ପାଖରେ ଇକ୍ଷୁରସ ସମୁଦ୍ର, ଶାଲ୍ମଳିର ଚାରିପାଖରେ ସୁରା ସମୁଦ୍ର ଏହିପରି ଭାବେ ସବୁକୁ ବୁଝିବାକୁ ହେବ ।"

ରାଜା ପଚାରିଲେ—"ମହାରାଜ ! ଏ କଥା ମନକୁ ମାନିଲା ନାହିଁ । ଦୁଧ, ଘିଅ, ଦହି ସୁରା ଓ ଇକ୍ଷୁରସର ସମୁଦ୍ର କ'ଣ ? ଏଥିରେ କ'ଣ କେବଳ ଘିଅ ଓ ଦୁଧ ପୂର୍ଣ୍ଣ ହୋଇ ରହିଛି ?"

ଏହା ଶୁଣି ଶୁକଦେବ କହିଲେ—"ନା ରାଜନ୍, ଏହା ଭିତରେ ରହିଛି କେବଳ ଜଳ, ମାତ୍ର ଏହି ଜଳରେ ଏହି ପଦାର୍ଥମାନଙ୍କର ତତ୍ତ୍ୱଗୁଣ ବହୁ ପରିମାଣରେ ନିହିତ । ଯେପରି ତୁମର ଜମ୍ବୁଦ୍ୱୀପର ଚାରିକଡ଼ରେ ଲବଣ ସମୁଦ୍ର ସେଥିରେ କ'ଣ କେବଳ ଲୁଣ ଭର୍ତ୍ତି ହୋଇ ରହିଛି ? ପାଣିରେ ଲୁଣ ଅଂଶ କେବଳ ଅଧିକ । ଆପଣ ପ୍ରତ୍ୟକ୍ଷ ଭାବରେ ଲୁଣ ନପାଇ ପାରନ୍ତି, ତଥାପି ଶାଗ, ଫଳ, ଅନ୍ନ ଇତ୍ୟାଦି ଏ ପ୍ରକାର ପଦାର୍ଥରେ ଅନ୍ୟ ଦ୍ୱୀପ ଅପେକ୍ଷା ଲବଣ ଅଂଶ ଅଧିକ ରହିଛି । ଏହିଭଳି ଭାବରେ ଯେଉଁ ଦ୍ୱୀପର ଚାରିପାଖରେ ଦୁଧ, ଦହି, ଘିଅ, ସୁରା ଇତ୍ୟାଦିର ସମୁଦ୍ର ରହିଛି, ସେଥିରେ ରହିଛି କେବଳ ପାଣି । ମାତ୍ର କ୍ଷୀର ସାଗର ଜଳରେ ଦୁଧର ସ୍ୱାଦ ହିଁ ମିଳୁଛି, ଜଳ ଦୁଧ ପରି । ଘୃତ ସାଗରରେ ଘିଅ ପରି ଚିକ୍କଣା ସ୍ୱାଦିଷ୍ଟ ଜଳ ରହିଛି । ଯେପରି ଲବଣ ସମୁଦ୍ରର ପାଣିକୁ ପିଇଲେ ମୁହଁ ଲୁଣିଆ ଲାଗେ, ସେହିପରି ଏ ଦ୍ୱୀପମାନଙ୍କର ପାଣି ମୁଖକୁ ସ୍ୱାଦ ଠିକ ସେହିପରି ଲାଗେ । ଏହି ସମୁଦ୍ର ନିଜ ନିଜର ଦ୍ୱୀପମାନଙ୍କ ପରି ସମାନ ନାମ ବହନ କରିଛି । ଯେପରି ରାଜାଙ୍କର ଦୁର୍ଗ ଚାରିପାଖରେ ବଡ଼ ବଡ଼ ଗଡ଼ଖାଇ ରହିଛି, ଯେଉଁଠାରେ ଜଳପୂର୍ଣ୍ଣ ହୋଇ ରହିଛି, କୌଣସି ଶତ୍ରୁ କୌଣସି ଉପାୟରେ ଦୁର୍ଗ ଭିତରେ ପ୍ରବେଶ କରି ପାରିବ ନାହିଁ, ଏହିପରି ଭାବରେ ଏହି ସମୁଦ୍ର ଦ୍ୱୀପରୂପୀ ଦୁର୍ଗମାନଙ୍କର ଗଡ଼ଖାଇ ଅଛେ । ମହାରାଜ ପ୍ରିୟବ୍ରତ ଆପଣାର ସାତ ପୁତ୍ରମାନଙ୍କୁ ଏହି ସାତ ଦ୍ୱୀପର ରାଜା କରିଦେଲେ ଯେପରି ଜମ୍ବୁଦ୍ୱୀପରେ ଅଗ୍ନିଧ୍ରକୁ, ପ୍ଲକ୍ଷଦ୍ୱୀପରେ ଇଧ୍ମଜିହ୍ୱଙ୍କୁ, ଶାଲ୍ମଳୀ ଦ୍ୱୀପରେ ଯଜ୍ଞବାହୁଙ୍କୁ, କୁଶ ଦ୍ୱୀପରେ ହିରଣ୍ୟରେତାକୁ, କ୍ରୌଞ୍ଚଦ୍ୱୀପରେ, ଧୃତପୃଷ୍ଠକୁ, ଶାକଦ୍ୱୀପରେ ମେଧାତିଥିଙ୍କୁ ଏବଂ ପୁଷ୍କର ଦ୍ୱୀପରେ ବୀତିହୋତ୍ରଙ୍କୁ ରାଜା କରିଦେଲେ ।

ମହାରାଜ ପରୀକ୍ଷିତ କହିଲେ—"ରାଜନ୍ ! ଏହି ପ୍ରକାର ଭାବରେ ମହାରାଜ ପ୍ରିୟବ୍ରତ ଯେତେବେଳେ ସାତଦ୍ୱୀପ, ସାତସମୁଦ୍ରର ରଚନା କରି, ନିଜର ସାତ ପୁତ୍ରମାନଙ୍କ ମଧ୍ୟରେ ବାଣ୍ଟିଦେଲେ, ସେମାନଙ୍କ ସ୍କନ୍ଧ ଉପରେ ରାଜ୍ୟଭାର ସମର୍ପଣ କରିଦେଇ, ତାଙ୍କର ବୈରାଗ୍ୟ ଜାତ ହେଲା ଏବଂ ବର୍ତ୍ତମାନ ନାରଦଙ୍କର ଉପଦେଶ ତାଙ୍କର ସ୍ମରଣକୁ ଆସିଲା ।"

## ଛପ୍‌ପୟ

"ନୃପ ଶୋଚେଂ ଶୁଚି ସୂର୍ଯ୍ୟ ପ୍ରଦକ୍ଷିଣ ମେରୁ କରେ ନିତ ।
ହୋଓ୍ୱେ ଉକୁଁ ନିଶାତ ଦିବସ ହୋଓ୍ୱେ ତବଇ ଇତ ॥
କରୁଁ ଦିବସକୁଁ ରାତ ନ ହୋଓ୍ୱେ ତମ ଜଗ ମାହୀ ।
ଜ୍ୟୋତିର୍ମୟ ରଥ ଚଢ଼େ ସୂର୍ଯ୍ୟ କେପାଛେ ଜାହୀ ॥
ସାତ ପ୍ରଦକ୍ଷିଣ ତେଂ ଭୟେ, ସାତଦ୍ୱୀପ ଅରୁ ଉଦଧି ସବ ।
ସମୁଝୟେ ବିଧି ଆଇ ଜବ, ଛୋଡ଼୍‌ୟୋ ନୃପ ସଂକଳ୍ପ ତବ ॥"



# ମହାରାଜ ପ୍ରିୟବ୍ରତଙ୍କ ଗୃହତ୍ୟାଗ

"ପ୍ରିୟବ୍ରତକୃତଂ କର୍ମ କୋ ନୁ କୁର୍ଯ୍ୟାଦ୍ ବିନେଶ୍ୱରମ୍ ।
ଯୋ ନେମିନିମ୍ନୈର କରୋଚ୍ଛାୟାଂ ଘ୍ନନ୍ ସପ୍ତ ବାରିଧୀନ୍ ।"
( ଭାଗବତ ୫-ସ୍କନ୍ଧ ୧-ଅଧ୍ୟାୟ ୩୯ ଶ୍ଳୋକ )

## ଛପ୍‌ପୟ

"କୌନ କର ସକେ କର୍ମ ପ୍ରିୟବ୍ରତ ସମ ନୃପ ଜଗମହଁ ।
କହେଁ ସାତ ସମୁଦ୍ର ଚଲତ ରଥ ନଭ କେ ମଗମହଁ ।।
ସୌପି ସୁତନକୁଁ ରାଜ ମୋହ ମମତା ସବ୍ ତ୍ୟାଗୀ ।
ସମୁଝେ ବିଷ ସମ ବିଷୟ ବନେ ନୃପତେ ବୈରାଗୀ ।।
ସପ୍ତଦ୍ୱୀପ କୀ ବସୁମତୀ ତୃନ ସମ ତ୍ୟାଗୀ ପଲକ ମହଁ ।
କୋ ଜନକେ ସମହୋଁ ସକେ, ତଜି ଈଶ୍ୱର ଯା ଜଗତ ମହଁ ।।"

ଯେତେ ବଳଶାଳୀ, ଶୌର୍ଯ୍ୟବାନ ଓ ପରାକ୍ରମୀ ହେଲେ ମଧ୍ୟ, ଯଶସ୍ୱୀ, ତପସ୍ୱୀ ଏବଂ ତେଜସ୍ୱୀ ହେଲେ ବି, ଏହି ପୃଥିବୀର ସଂସାର ଭୋଗ ତ୍ୟାଗ ସମସ୍ତଙ୍କୁ କରିବାକୁ ପଡ଼ିଥାଏ । କେହି ଚାହେଁନାହିଁ ଏହି ପୃଥିବୀକୁ ସଦାସର୍ବଦା ଭୋଗ କରୁଥିବ । ଏହି ମନୋରଥ ମଧ୍ୟ କେବେହେଲେ ସମ୍ଭବ ହୁଏନାହିଁ । ଯେତେବେଳେ ଧନେ ବିବଶ ହୋଇକରି ତ୍ୟାଗ କରିବାକୁ ପଡ଼େ, ବୁଦ୍ଧିମାନ ପୁରୁଷ ସ୍ୱୟଂ ଏହାକୁ ତତ୍‌କ୍ଷଣାତ ତ୍ୟାଗ କରେ । ଏହି କାରଣରୁ ବର୍ଣ୍ଣାଶ୍ରମ ଧର୍ମରେ ପ୍ରାଚୀନ ପ୍ରଥା ଥିଲା । ଯେତେବେଳେ ପୁଅର ପୁଅ ହୋଇଯାଏ, ସେତେବେଳେ ବଡ଼ ବଡ଼ ସମ୍ରାଟମାନେ ମଧ୍ୟ ସବୁକିଛି ତ୍ୟାଗକରି ବନବାସୀ ହୋଇଯାନ୍ତି, ବାନପ୍ରସ୍ଥ ଧର୍ମରେ ଦୀକ୍ଷିତ ହୋଇଯାନ୍ତି । ସେମାନେ ଗ୍ରାମ୍ୟ ଅନ୍ନର ଆସକ୍ତି ତ୍ୟାଗ

କରି ବଣର କନ୍ଦ, ଫଳମୂଳ ଉପରେ ହିଁ ନିର୍ଭର କରନ୍ତି । ବହୁ ଆଡ଼ମ୍ବର ଯୁକ୍ତ ବସ୍ତ୍ରଭୂଷଣକୁ ତ୍ୟାଗ କରି ବଲ୍‌କଳ ପରିଧାନ ପୂର୍ବକ ତପସ୍ୟାରେ ନିରନ୍ତର ରତ ହୁଅନ୍ତି ।

ଶ୍ରୀ ଶୁକଦେବ କହିଲେ—ରାଜନ ! ମହାରାଜ ପ୍ରିୟବ୍ରତ ଯେତେବେଳେ ନିଜର ବୃଦ୍ଧାବସ୍ଥାକୁ ଆଗରେଥିବା ଦେଖିଲେ, ସେତେବେଳେ ତାଙ୍କର ଚିତ୍ତ ସଂସାର ଭୋଗ ଲାଳସା ଦୂରକୁ ଚାଲିଗଲା । ପୁତ୍ରଙ୍କୁ ରାଜା କରିଦେଲେ ଏବଂ ବର୍ତ୍ତମାନ ନିଜ ହୃଦୟକୁ ଦୃଢ଼ ନିଶ୍ଚିତ କରିଦେଲେ । ତାଙ୍କର ସେହି ଅତୀତ ଦିନ ସ୍ମରଣ ହେବାକୁ ଲାଗିଲା, ଯେତେବେଳେ ଗୁରୁଦେବ ନାରଦଙ୍କର ଚରଣ ତଳେ ବସି ପରମାର୍ଥ ବିଷୟ ଚର୍ଚ୍ଚା କରି ବ୍ରହ୍ମାନନ୍ଦ ସୁଖକୁ ନିରନ୍ତର ପ୍ରାପ୍ତ ହେଉଥିଲେ । କେତେ ସୁଖର ଦିନ ସେ ଗୁଡ଼ିକ ଥିଲା । ଏହି ଦୃଶ୍ୟ ପ୍ରପଞ୍ଚ ଆଖି ସାମନାରେ ଥିଲେ ମଧ୍ୟ ଦେଖି ହେଉ ନଥିଲା । କିଛି ଚିନ୍ତା ବା ଶୋକ ନଥିଲା, କେବଳ ସର୍ବେଶ୍ୱରଙ୍କର ଧ୍ୟାନରେ ନିରନ୍ତର ନିମଗ୍ନ ରହି ସମାଧି ସୁଖକୁ ସେ ପ୍ରାପ୍ତ ହେଉଥିଲେ । ଯେଉଁଦିନଠାରୁ ସେହି ଅବସ୍ଥାକୁ ତ୍ୟାଗକରି ଗୃହସ୍ଥ ହେଲେ, ସେ ଦିନଠାରୁ ଏ ପର୍ଯ୍ୟନ୍ତ କୌଣସି ଦିନ ସେହି ସୁଖର ପ୍ରାପ୍ତି ହେଲା ନାହିଁ । ସେ ଦିନ ଗୁଡ଼ିକର ସ୍ମୃତି ତାଙ୍କ ମନକୁ ଆସି ହୃଦୟ ଅଭିଭୂତ କଲା । ସେ ପଶ୍ଚାତାପ କରି ମନକୁ ମନ ବିଚାର କରିବାକୁ ଲାଗିଲେ—"ଆରେ, ଏତ ବଡ଼ ଖରାପ ହେଲା । ମୁଁ ବିଷୟ ଦ୍ୱାରା ଠକି ଗଲି । ମୋର ସତ୍ୟ ଅସତ୍ୟ ଅବଲୋକନ କରିବାର ଶକ୍ତି ନଷ୍ଟ ହୋଇଗଲା । ଅନ୍ଧ ପୁରୁଷ ପରି ମୁଁ ଅବିଦ୍ୟା ରୂପକ ବିଷୟ, ବିଷୟରୂପ ଅନ୍ଧକୂପ ମଧ୍ୟରେ ନିଜକୁ ନିଜେ ନିକ୍ଷେପ କରିଦେଲି, ନିଜର ସ୍ୱତନ୍ତ୍ରତା ବୁଦ୍ଧିକୁ ତ୍ୟାଗକରି ପରାଧୀନ ହେଲି । ସର୍ବସମର୍ଥ ପୁରୁଷ ହୋଇ ମଧ୍ୟ ସ୍ତ୍ରୀର କ୍ରୀଡ଼ାମୃଗ ପାଲଟି ଗଲି, ଏହିଭଳି ମଦମତ ଗୂଢ଼ଜ୍ଞାନ ରହିତ ମୂର୍ଖକୁ ମୁଁ ଧିକ୍‌କାର କରୁଛି । ବର୍ତ୍ତମାନ ମୁଁ ଏହି ଗୃହସ୍ଥ ରୂପକ ଅନ୍ଧକୂପରେ ଅଧିକ ଦିନ ଅଚେତନ ରହି ପଡ଼ି ପାରିବି ନାହିଁ । ବର୍ତ୍ତମାନ ଶକ୍ତିହୀନ ହୋଇ ସଂସାର ସାଗରରେ ଗୋଇଠା ଖାଇବି ନାହିଁ ।" ଏହା ବିଚାର କରି ସେ ନିଜର ପୁତ୍ରଙ୍କୁ ଡାକିଲେ । ଏବଂ ନିଜର ମନର ସଂକଳ୍ପ ଶୁଣାଇ ଦେଲେ । ଏହା ଶୁଣି ସମସ୍ତେ ଅଧୀର ହୋଇ ଉଠିଲେ । ରାଜମହିଷୀ ବର୍ହିଷ୍ମତୀ ଯେତେବେଳେ ଏକଥା ଶୁଣିଲେ ଯେ ପତିଦେବ ରାଜପାଟ ଛାଡ଼ି ବନବାସୀ ବୈରାଗୀ ହେବାକୁ ଯାଉଛନ୍ତି, ସେ ମଧ୍ୟ ସ୍ୱାଭାବିକ ତାଙ୍କ ପଛେ ପଛେ ଗମନ କରିବାକୁ ଲାଗିଲେ । ମହାରାଜ ନିଜର ଶୋକାକୁଳ ପୁତ୍ର ଓ ପ୍ରଜାମାନଙ୍କୁ ତ୍ୟାଗକରି ନିଜର ସମସ୍ତ ଭୂମଣ୍ଡଳ ରାଜ୍ୟକୁ ଶବ ସଦୃଶ୍ୟ ମନେକରି ହୃଦୟରେ ତୀବ୍ର ବୈରାଗ୍ୟ ନେଇ ଭଗବାନଙ୍କର ମାଧୁର୍ଯ୍ୟ ଲୀଳାମାନଙ୍କୁ ମନ

ଭିତରେ ଚିନ୍ତନ କରି, ନିଜର ଗୁରୁଦେବ ଦେବର୍ଷି ନାରଦଙ୍କର ବତାଇଥିବା ମାର୍ଗକୁ ଅନୁସରଣ କଲେ । ସକାଳେ ଭୁଲିଯାଇ ସନ୍ଧ୍ୟାବେଳେ ଘରକୁ ମନେକରି ଫେରି ଆସିବାକୁ ଭୁଲିବା କୁହାଯାଏନି । ଏହିପରି ଗୃହସ୍ଥାଶ୍ରମର ଏତେ ଗୁଡ଼ିଏ ଅନ୍ତରାୟ ସୃଷ୍ଟି ହେଲେ ମଧ୍ୟ ତାହାର ତ୍ୟାଗ କରିବାରେ କୌଣସି ବିଶେଷ ପାର୍ଥକ୍ୟ ସୃଷ୍ଟି ହେଲନାହିଁ, ସେ ନିଜର ବିବେକ ବୈରାଗ୍ୟ ଦ୍ୱାରା ସେ ଏହି ଅତଳ ସଂସାର ସାଗରକୁ କଥା କଥାକେ ପାର କରି ଚାଲିଗଲେ ।

ଭଗବାନ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହିଲେ—"ରାଜନ ! ଏହି ସତ୍ୟବ୍ରତ ମହାରାଜ ପ୍ରିୟବ୍ରତଙ୍କର ଗୁଣକୁ କିଏ ବା ଗାନ କରି ପାରିବ ? ଯେ ନିଜର ପୁରୁଷାର୍ଥ ବଳରେ ପୃଥିବୀକୁ ପୂଣ୍ୟପଦ ଦ୍ୱୀପମାନଙ୍କରେ ବିଭକ୍ତ କରିଦେଲେ ରଥ ଚକରେ ସମୁଦ୍ର ସୃଷ୍ଟି କରିଦେଲେ, ସୂର୍ଯ୍ୟଙ୍କ ସଦୃଶ୍ୟ ଆକାଶରେ ଉଦୟ ହୋଇ ସୂର୍ଯ୍ୟଙ୍କ ଉପରେ ମଧ୍ୟ ନିଜର ପ୍ରଭାବ ବିସ୍ତାର କଲେ । ନଦୀ, ନଗ୍ରୀ, ଗିରି, ପର୍ବତ, ବନ, ଉପବନ ଇତ୍ୟାଦି ସମସ୍ତଙ୍କର ସୀମାନକୁ ନିୟନ୍ତ୍ରିତ କଲେ । ଏତେ ଧନ ସମ୍ପତ୍ତି ଥାଇ ମଧ୍ୟ ଶେଷରେ ସେ ପୃଥ୍ୱୀ, ସ୍ୱର୍ଗ, ଇତ୍ୟାଦି ସମସ୍ତ ସୁଖକୁ ଅନିତ୍ୟ, ଅସାର ଓ ଦୁଃଖପ୍ରଦ ବୋଲି ବୁଝିଲେ । ତାଙ୍କୁ ଈଶ୍ୱରଙ୍କ ବ୍ୟତୀତ ଅନ୍ୟ କୌଣସି ସାଂସାରିକ ପୁରୁଷ ସହିତ ତୁଳନା କରାଯାଇ ନପାରେ । ତାଙ୍କର ପ୍ରଭାବ ଏତେଦୂର ବିସ୍ତୃତ ଯେ ସେ ପ୍ରଜାପତିମାନଙ୍କର ପୂଜ୍ୟ ଏବଂ ମନୁମାନଙ୍କର ମଧ୍ୟ ମାନନୀୟ ଥିଲେ । ଦେବତାମାନେ ମଧ୍ୟ ତାଙ୍କୁ ଆଦର କରୁଥିଲେ ।

ଏହା ଶୁଣି ମହାରାଜ ପରୀକ୍ଷିତ କହିଲେ—"ଭଗବନ୍ ! ଆପଣ ମନୁଙ୍କର ପୁତ୍ର ମହାରାଜ ପ୍ରିୟବ୍ରତଙ୍କର ସଂକ୍ଷିପ୍ତ ଚରିତ ଶୁଣାଇଲେ । ବର୍ତ୍ତମାନ ମୁଁ ତାଙ୍କର ପୁତ୍ରମାନଙ୍କର ବଂଶ ପରମ୍ପରା ଶୁଣିବାକୁ ଇଚ୍ଛା କରୁଅଛି ।

ଏହା ଶୁଣି ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ପ୍ଲକ୍ଷ, ଶାଲ୍ମଳୀ, କୁଶ, କ୍ରୌଞ୍ଚ, ଶାକ ଏବଂ ପୁଷ୍କର ଦ୍ୱୀପରେ ମହାରାଜ ପ୍ରିୟବ୍ରତଙ୍କର ଯେଉଁ ପୁତ୍ରମାନେ ରାଜା ହେଲେ, ସେମାନେ ତ ଏକପ୍ରକାର ସ୍ୱର୍ଗର ଇନ୍ଦ୍ରଙ୍କ ପରି; କାରଣ ଜମ୍ବୁଦ୍ୱୀପକୁ ଛାଡ଼ି ଶେଷ ଛଅ ଦ୍ୱୀପକୁ ଭୌମ ସ୍ୱର୍ଗ କୁହାଯାଏ । ସେଠାରେ ମନୁଷ୍ୟ କେବଳ ପୃଥିବୀର ଦିବ୍ୟଭୋଗ ଭୋଗ କରିବାକୁ ଆସେ । କର୍ମ ଏବଂ ପରମାର୍ଥିକ ସାଧନ ନିମିତ୍ତ ଏହି ଜମ୍ବୁଦ୍ୱୀପ ନିର୍ଦ୍ଦିଷ୍ଟ । ଜମ୍ବୁଦ୍ୱୀପ ମଧ୍ୟ ପୁରା ନୁହେଁ । ଏହା ମଧ୍ୟ ନଅ ଖଣ୍ଡ । ତହିଁରୁ ୮ ଖଣ୍ଡ ସ୍ୱର୍ଗ ସମାନ, କେବଳ ଭାରତଖଣ୍ଡ ଯାହା କର୍ମଭୂମି ଅଟେ । ଏହି ଭାରତ ଖଣ୍ଡରେ ମନୁଷ୍ୟ ଶୁଭ ଅଶୁଭ କର୍ମ କରି ସ୍ୱର୍ଗ ବା ନରକକୁ ଯାଇପାରେ କିମ୍ବା ଜ୍ଞାନ ପ୍ରାପ୍ତି ହେଲେ ମୋକ୍ଷ ଲାଭ କରେ । ଅତଏବ ବିଶେଷ ବିବରଣୀ ଆମେ ମହାରାଜ

ପ୍ରିୟବ୍ରତଙ୍କର ଜ୍ୟେଷ୍ଠ ତଥା ଶ୍ରେଷ୍ଠ ପ୍ରିୟବ୍ରତ ଜମ୍ବୁଦ୍ୱୀପାଧିପ ମହାରାଜ ଆଗ୍ନୀଧ୍ରଙ୍କ ବିଷୟରେ ଓ ତାଙ୍କ ବଂଶ ସମ୍ପର୍କରେ ବର୍ଣ୍ଣନା କରିବା । ଅନ୍ୟ ଛଅ ଦ୍ୱୀପର ବିବରଣି ଅନ୍ୟ ରାଜାମାନଙ୍କର । ମହାରାଜ ପରୀକ୍ଷିତ ନମ୍ରତା ସହକାରେ କହିଲେ—"ହେ ଭଗବନ୍ ! ଆପଣ ସର୍ବପ୍ରଥମେ ମହାରାଜ ପ୍ରିୟବ୍ରତଙ୍କର ପ୍ରଥମପୁତ୍ର ପୁଣ୍ୟଶ୍ଳୋକ ମହାରାଜ ଅଗ୍ନିଧ୍ରଙ୍କ ଚରିତ୍ର ଶ୍ରବଣ କରାନ୍ତୁ । ସେ କିପରି ରାଜ୍ୟ ପାଳନ କଲେ ଏବଂ ତାଙ୍କର କେତେ ପୁତ୍ର ହେଲେ ।"

ଏହା ଶୁଣି ଭଗବାନ ଶୁକ କହିଲେ—"ରାଜନ୍ ! ଯେବେ ମହାରାଜ ପ୍ରିୟବ୍ରତ ବଣକୁ ଚାଲିଗଲେ, ସେତେବେଳେ ଅଗ୍ନୀଧ୍ର ଏହି ଲବଣ ସମୁଦ୍ରରେ ଘେରା ଜମ୍ବୁଦ୍ୱୀପର ରାଜା ହେଲେ । ସେ ଜମ୍ବୁଦ୍ୱୀପରେ ବାସ କରୁଥିବା ସମସ୍ତ ପ୍ରଜାମାନଙ୍କୁ ପୁତ୍ର ପରି ପାଳନ କରିବାକୁ ଲାଗିଲେ । ବର୍ତ୍ତମାନ ତାଙ୍କର ବଂଶପରମ୍ପରାକୁ ବଞ୍ଚାଇ ରଖିବା ପାଇଁ ପୁତ୍ର ପ୍ରାପ୍ତିର ଇଚ୍ଛା ହେଲା । ପୁତ୍ର ସେତେବେଳେ ହୋଇ-ପାରେ, ଯେତେବେଳେ ନିଜ ମନମୁତାବକ ପତ୍ନୀ ମିଳେ । ସେ ଅନେକ ପତ୍ନୀ ପାଇବା ପାଇଁ ପ୍ରଜାପତିମାନଙ୍କର ପ୍ରଭୁ ଭଗବାନ ବ୍ରହ୍ମାଙ୍କୁ ଆରାଧନା କରିବାକୁ ସ୍ଥିର କଲେ ।

ଏହା ଶୁଣି ମହାରାଜ ପରୀକ୍ଷିତ ପ୍ରଶ୍ନ କଲେ—"ଭଗବନ୍ ! ଆଜିକାଲି ରାଜାମାନେ ଚାହିଁଲେ ଯେତେ ଇଚ୍ଛା ସେତେ ବିବାହ କରି ପାରୁଛନ୍ତି । ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କର ୧୬୧୦୮ ରାଣୀ ଥିଲେ । ତାଙ୍କ କଥା ଛାଡ଼ନ୍ତୁ—ସେ ଜଗତର ପତି ଈଶ୍ୱର ଅଟନ୍ତି । ଅଧୁନା ମଧ୍ୟ ଯେତେ ରାଜା ଥିଲେ, ବିବାହ ନିମନ୍ତେ ତପସ୍ୟା କରିବା ଆମେ କାହାକୁ ଦେଖିନାହୁଁ । ଏହା ପରିବର୍ତ୍ତିରେ କନ୍ୟାପକ୍ଷର ଲୋକମାନେ ନିଜର କନ୍ୟା ପାଇଁ ଯୋଗ୍ୟବର ଖୋଜିବା ନିମିତ୍ତ ବ୍ୟଗ୍ରତା ପ୍ରକାଶ କରୁଥିବାର ଦେଖିଛୁ । ପ୍ରାଚୀନ କାଳରେ ଶୁଣାଯାଏ, ଅମୁକ ଋଷି ବିବାହ ନିମିତ୍ତ ତପସ୍ୟା କଲେ । ଅମୁକ ରାଜା ବୋହୂ ପାଇଁ ଏତେ ବର୍ଷ ତପସ୍ୟା କଲେ । କର୍ଦ୍ଦମ ଋଷି ମହାମୁନି ବିବାହ ନିମନ୍ତେ ହଜାରେ ବର୍ଷ ତପସ୍ୟା କଲେ । ପ୍ରଚେତା-ମାନଙ୍କର ତପସ୍ୟା କରିବାର ଉଦ୍ଦେଶ୍ୟ ମଧ୍ୟ ପ୍ରଜାବୃଦ୍ଧି ଓ ପତ୍ନୀ ପ୍ରାପ୍ତି ଥିଲା । ବର୍ତ୍ତମାନ ଆପଣ କହୁଛନ୍ତି, ପ୍ରିୟବ୍ରତଙ୍କର ପୁତ୍ର ଅଗ୍ନିନ୍ଧ୍ର ସପୁତ୍ର ପାଇବା ପାଇଁ ପିତୃଲୋକ କାମନା କରି ପ୍ରଜାପତିମାନଙ୍କର ପତି ଭଗବାନ କମଳଯୋନିଙ୍କର ଆରାଧନା କଲେ । ଏହା କିପରି କଥା ?"

ଏହା ଶୁଣି ଋଷି ଶୁକଦେବ ହସିଲେ ଏବଂ କହିଲେ—"ରାଜନ ! ପୁତ୍ର ତାହାକୁ କହନ୍ତି, ଯେ ଭଗବତ୍ ଭକ୍ତ ଅଟେ, ଧାର୍ମି ଓ ଯୋଦ୍ଧା ଅଟେ । କୁକୁର

ଓ ବିରାଡ଼ି ପରି ପ୍ରତ୍ୟେକ ନଅ ମାସରେ ମୂଷା ଛୁଆ ପରି ଦୁର୍ବଳ ଓ ପତଳା ମନୁଷ୍ୟ ଆକୃତିର ପିଲା ଜନ୍ମ ହେଲେ, ବାସ୍ତବରେ ତାକୁ ପୁତ୍ର କୁହାଯାଇ ପାରେନାହିଁ । ଯେଉଁଠାରୁ ମୂତ୍ର ନିଷ୍କାସନ ହୁଏ, ସେଠାରୁ ପୁତ୍ର ମଧ୍ୟ ଆସେ । ଯଦି ସେ ଧାର୍ମିକ ହୁଏ, ଧର୍ମାଚରଣ ପୂର୍ବକ ନିଜର ପିତୃବ୍ୟମାନଙ୍କୁ ପୁତ୍ରନାମକ ନର୍କରୁ ଉଦ୍ଧାର କରେ, ତେବେ ସେ ପୁତ୍ର ହୁଏ, ନଚେତ୍ ସେ ମଳମୂତ୍ରର କୀଡ଼ନକ ମାତ୍ର । ଯୋଗ୍ୟ ପତ୍ନୀ ଠାରୁ କେବଳ ଯୋଗ୍ୟ ପୁତ୍ର ଉତ୍ପନ୍ନ ହୋଇପାରେ । ଏଥିପାଇଁ ହିନ୍ଦୁ ଧର୍ମରେ ବିବାହ ପୂର୍ବରୁ କନ୍ୟାର କୁଳ, ଗୋତ୍ର, ଶୀଳ ଓ ସ୍ୱଭାବ ଇତ୍ୟାଦି ଉପରେ ବିଶେଷ ଭାବରେ ଧ୍ୟାନ ଦିଆଯାଏ । କୁଳୀନ କନ୍ୟା ସହିତ ବିବାହ କଲେ ସୁଯୋଗ୍ୟ ସନ୍ତାନ ପ୍ରାପ୍ତି ହୁଏ । ଏଥିପାଇଁ ପ୍ରାଚୀନ କାଳରେ ଯେ କେହି ନାରୀ ମିଳିଗଲେ ତାହା ସହ ବିବାହ କରାଯାଏନାହିଁ । ଦ୍ୱିତୀୟ କଥା ଏହି ଯେ, ସୃଷ୍ଟିର ଆଦିକାଳରୁ ସ୍ତ୍ରୀମାନଙ୍କର ସଂଖ୍ୟା କମ୍ ଥିଲା । ମର୍ତ୍ତ୍ୟଲୋକରେ ସ୍ତ୍ରୀ ଅପେକ୍ଷା ପୁରୁଷର ଉତ୍ପତ୍ତି ଅଧିକ ହେଉଥିଲା । ଦେବଲୋକରେ ନିଜକୁ ନିଜେ ଉତ୍ପନ୍ନ କରୁଥିବା ପରମସୁନ୍ଦରୀ ଅପ୍‌ସରାମାନେ ହେଉଥିଲେ । ସେମାନେ ଦେବତାମାନଙ୍କୁ ଛାଡ଼ି ମର୍ତ୍ତ୍ୟଲୋକରେ ପୁରୁଷମାନଙ୍କ ସହିତ ସମ୍ବନ୍ଧ ରଖିବାକୁ ଅପମାନ ଭାବୁଥିଲେ । ଏଥିପାଇଁ କୁଳୀନପୁରୁଷମାନେ ଏହି ପୃଥିବୀରେ ରହୁଥିବା ଉଚ୍ଚକୁଳରେ ଉତ୍ପନ୍ନ ଦୋଷଶୂନ୍ୟ ସୁନ୍ଦରୀକନ୍ୟା ଖୋଜୁଥିଲେ କିମ୍ବା ସ୍ୱର୍ଗ, ଇତ୍ୟାଦି ବିଭିନ୍ନ ଲୋକରେ ନିବାସ କରୁଥିବା ସ୍ୱର୍ଗର ରମଣୀମାନଙ୍କୁ ଇଚ୍ଛା କରୁଥିଲେ । ସ୍ୱର୍ଗୀୟ ରମଣୀ ପ୍ରାପ୍ତି ଘୋର ତପସ୍ୟା ବ୍ୟତୀତ ସମ୍ଭବ ହୋଇ ପାରୁ ନ ଥିଲା । ଏଥିପାଇଁ ସେମାନେ ତପସ୍ୟା କରୁଥିଲେ । ନିଜର ପ୍ରିୟବସ୍ତୁ ନିମିତ୍ତ ଯେତେ ପ୍ରତୀକ୍ଷା କରାଯାଇପାରେ, ତାର ପ୍ରାପ୍ତିରେ ସେତିକି ପ୍ରସନ୍ନତା ମିଳେ; ଅତଏବ ପ୍ରତୀକ୍ଷାର ବୃଦ୍ଧି ପ୍ରେମଭାବ ବଢ଼ାଇବା ନିମନ୍ତେ ହୋଇଥାଏ ।

ମହାରାଜ ପରୀକ୍ଷିତ ପଚାରିଲେ—"ତେବେ ଭଗବନ୍ ! ସେ ବ୍ରହ୍ମାଙ୍କରି କାହିଁକି ଆରାଧନା କଲେ ? ଦେବାଧିଦେବ ଭଗବାନ ବିଷ୍ଣୁଙ୍କର ଆରାଧନା କରି ଥାଆନ୍ତେ ।"

ଏହା ଶୁଣି ଶୁକଦେବ କହିଲେ—"ରାଜନ୍ ! ବ୍ରହ୍ମା, ବିଷ୍ଣୁ, ମହେଶ ସବୁ ସେହି ହରିଙ୍କର ରୂପ । ଦେବତାମାନେ ମଧ୍ୟ ତାଙ୍କର ରୂପ । ପାଣି ଯେଉଁଠାରେ ବର୍ଷା ହୋଇ ପଡ଼ିଲେ ମଧ୍ୟ ସମୁଦ୍ରକୁ ଯାଏ । ସେହି ପ୍ରକାର ଯେ କେହି ଦେବତାଙ୍କୁ ନମସ୍କାର କଲେ, ତାହା ପହଞ୍ଚିଯାଏ ଶ୍ରୀମନ୍ନାରାୟଣଙ୍କ ନିକଟରେ । ଯେପରି ଉଚ୍ଚଆକାଂକ୍ଷାସମ୍ପନ୍ନ ଲୋକମାନଙ୍କୁ ସୂର୍ଯ୍ୟଙ୍କର ଉପାସନା କରିବାକୁ ହୋଇଥାଏ, ଧନ ପ୍ରାପ୍ତି ନିମିତ୍ତ ବସୁମାନଙ୍କୁ, ସ୍ୱର୍ଗ କାମନା ପାଇଁ ଦେବତାମାନଙ୍କୁ, ରାଜ୍ୟ

ପ୍ରାପ୍ତି ପାଇଁ ବଶୁଦେବଙ୍କୁ, ପ୍ରତିଷ୍ଠା ପ୍ରାପ୍ତି ପାଇଁ ପୃଥ୍ୱୀଙ୍କୁ, ରୂପ ଇଚ୍ଛା କଲେ ଗନ୍ଧର୍ବମାନଙ୍କୁ ଉପାସନା କରିବା ଆବଶ୍ୟକ ହୋଇଥାଏ । ଏହି ପ୍ରକାର ପ୍ରଜା କାମନା କରୁଥିବା ଲୋକମାନଙ୍କୁ ପ୍ରଜାପତି ବ୍ରହ୍ମାଙ୍କର ଆରାଧନା କରିବାକୁ ହବ । ଏଥିପାଇଁ ମହାରାଜ ଅଗ୍ନୀଧ୍ର ସୁରସୁନ୍ଦରୀମାନଙ୍କର କ୍ରୀଡ଼ା ସ୍ଥାନ ମନ୍ଦରାଚଳ ପର୍ବତର କନ୍ଦରକୁ ଯାଇ ପୂଜାର ଶବଧ ସାମଗ୍ରୀକୁ ଏକାଠି କରି ଏକାଗ୍ରଚିତ୍ତ ଓ ତପୋନିଷ୍ଠ ହୋଇ ଲୋକପିତାମହ ବ୍ରହ୍ମାଙ୍କର ଆରାଧନା କରିବାକୁ ଲାଗିଗଲେ ।

ତାଙ୍କର ଘୋର ତପସ୍ୟାରେ ବ୍ରହ୍ମାଙ୍କର ସିଂହାସନ ହଲିଗଲା । ଅତଏବ ସେ ମହାରାଜ ଅଗ୍ନୀଧ୍ରଙ୍କର ମନୋକାମନାକୁ ପୂର୍ଣ୍ଣ କରିବାକୁ ଇଚ୍ଛା ପ୍ରକାଶ କଲେ । ତାଙ୍କର ସଭାରେ ଥିବା ସର୍ବଶ୍ରେଷ୍ଠ ସୁନ୍ଦରୀ ପୂର୍ବଚିତ୍ତି ନାମକ ଅପ୍ସରା ତାଳସ୍ୱର ସହିତ ଗୀତ ଗାଉଥିଲେ । ତାଙ୍କର ଅନନ୍ୟ ସୌନ୍ଦର୍ଯ୍ୟକୁ ଲକ୍ଷ୍ୟ କରି ଭଗବାନ କମଳାସନ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ତାଙ୍କୁ ମହାରାଜ ଅଗ୍ନୀଧ୍ରଙ୍କର ଯୋଗ୍ୟ ପତ୍ନୀ ରୂପେ ବରଣ କଲେ ।

### ଛପ୍‌ପୟ

ରାଜପାଟ କୁଁ ତ୍ୟାଗୀ ଚଲେ ରାଜା ବନ ମାହି ।
ରାନୀ ବହିଷ୍ମତୀ ଚଲି ଛାୟାକୀ ନାଇଁ ॥
ସୁତ ଅଗ୍ନୀଧ୍ର ମହାନ୍ ଭୟେ ଭୂପତି ଜମ୍ବୁପତି ।
ପାଲେ ପୁତ୍ର ସମାନ ପ୍ରଜାକୁଁ ନିତ ପ୍ରତି ନରପତି ॥
ସୁତ ହିତ ସୁର ସୁନ୍ଦରୀ ସଦନ, ମନ୍ଦରଗିରିକି ଗୁହା ମହିଁ ।
ତପ କରି ପୂଜୈ ପ୍ରଜାପତି, ରାଜତ୍ୟାଗୀ ନୃପ ରହହିଁ ତହଁ ।



# ପ୍ରିୟବ୍ରତଙ୍କ ପୁତ୍ର ଅଗ୍ନୀଧ୍ର ଏବଂ ପୂର୍ବଚିତ୍ତି ଅପ୍‌ସରା

( ୩୧୨ )

"କା ତ୍ୱଂ ଚିକୀର୍ଷସି ଚ କିଂ ମୁନିବର୍ଯ୍ୟ ଶୈଳେ
ମାୟାସି କାପି ଭଗବତ୍ପର ଦେବତାୟାଃ ।
ବିଜ୍ୟେ ବିଭର୍ଷି ଧନୁଷୀ ସୁହୃଦାତ୍ମନୋଽର୍ଥେ
କିଂ ବା ମୃଗାନ୍ ମୃଗୟସେ ବିପିନେ ପ୍ରମତ୍ତାନ୍ ॥"

(ଭାଗବତ ୫ମ ସ୍କନ୍ଧ ୨ୟ ଅଧ୍ୟାୟ ୭ମ ଶ୍ଲୋକ)

## ରୂପ୍‌ପାଶ

"ଲଖି ନୃପ ମନ କୀ ବାତ୍ ଜାନି ବର୍ ବଧୂ ପଠାଇ ।
ପୂର୍ବଚିତ୍ତି ଆଦେଶ ପାଇ ଭୂପତି ଢିଁଗ ଆଇ ॥
କ୍ରୀଡ଼ା ଖ୍ରୀଡ଼ା ସହିତ ମଧୁର ଷତବନ ମୁସକାବତ ।
ଯୌବନକେ ମଦଭରୀ ରୂପ ରସ ସୋ ବରଷାବତ୍ ॥
ଭୂପ ନିହାରୀ ଅପସରା, ଖୋୟୋ ମନ ମୋହିତ ଭୟୋ ।
ରୂପା ସବକୁଁ ପାନ କର, ମଦମାତେ ସେ ହ୍ୱୈ ଗୟୋ ॥"

ରୂପର ଆକର୍ଷଣ ମନୁଷ୍ୟର ସ୍ୱାଭାବିକ ଚେତନାକୁ ନଷ୍ଟ କରିଦିଏ । ଯେତେ ଜ୍ଞାନୀ, ଧ୍ୟାନୀ ଓ ବିବେକୀ ପୁରୁଷ ହେଲେ ମଧ୍ୟ, ଯେଉଁଠାରେ ରୂପର ଗନ୍ଧ ଆସିଯାଏ ଯେଉଁଠାରେ ସୌନ୍ଦର୍ଯ୍ୟର ମଧୁମୟ ସୁଧା ପାନ କରିବାକୁ ମିଳେ, ସେଠାରେ ମତଓ୍ୱାଲା ପାଲଟି ଯାଏ, ସମଗ୍ର ଚରାଚର ବିଶ୍ୱରେ ତାର ଧ୍ୟାନ କେବଳ ସେହି ପ୍ରିୟବସ୍ତୁ ଠାରେ ରହେ । ଭଗବାନ ନ କରନ୍ତୁ କାହା ଉପରେ କାହାର ଅତି ମାତ୍ରାରେ ଆସକ୍ତି ନରହୁ; ଯଦି ପ୍ରାରବ୍ଧ କର୍ମ ହେତୁ କାହା ଉପରେ ଆସକ୍ତି ହୋଇଯାଏ, ତେବେ ସେ ତାକୁ ପ୍ରାପ୍ତ ହେବା ଉଚିତ । ପ୍ରାପ୍ତ ନହେଲେ ପ୍ରାଣର ବାଜି ଲଗେଇବାକୁ ପଡ଼େ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମହାରାଜ ପ୍ରିୟବ୍ରତ ଅଚ୍ୟୁତଙ୍କର ଭକ୍ତ ଥିଲେ ଏବଂ ତାଙ୍କର ପୁତ୍ର ଅପ୍‌ସରାଙ୍କର ଭକ୍ତ ହୋଇଗଲେ । ଯେତେବେଳେ ସେ ମନ୍ଦରାଚଳ ଗୁମ୍ଫାରେ ସନ୍ତାନ କାମନା କରି କମଳାସନଙ୍କ ଧ୍ୟାନରେ ବସିଥିଲେ ସେତେବେଳେ ସେଠାରେ ତାଙ୍କୁ ବସନ୍ତର ଶୋଭା ପରିଦୃଶ୍ୟ ହେଲା । ସମଗ୍ର ପର୍ବତଟି ସଜେଇ ହୋଇ ହସୁଥିବା ପରି ତାଙ୍କୁ ବୋଧ ହେଲା । ତାଙ୍କ ଆଶ୍ରମ ନିକଟରେ ଘନବୃକ୍ଷ ସମୂହର ଅନିୟମିତ ଶାଖାରେ ଉଚ୍ଚା ଉଚ୍ଚା ବହୁ ଗୁଡ଼ିଏ ପକ୍ଷୀ ପରିଦୃଷ୍ଟ ହେଲା । ସେହି ଫୁଲ ଫଳରେ ସୁଶୋଭିତ ବୃକ୍ଷ ଗୁଡ଼ିକରେ ସୁବର୍ଣ୍ଣ ସଦୃଶ୍ୟ ରୂପଧରି ଲତାମାନେ ଛନ୍ଦି ହୋଇଥିଲେ, ଯେପରି ସ୍ନେହପୂର୍ଣ୍ଣ ହୃଦୟରେ ନିଜର ପ୍ରିୟତମଙ୍କୁ ଗାଢ଼ ଆଲିଙ୍ଗନରେ ବେଷ୍ଟିତ କରୁଛନ୍ତି । ସେହି ଲତାଗୁଡ଼ିକ ଉପରେ ଶୁଆ, ସାରି, ପାରି, ମୟୂର ଇତ୍ୟାଦି ହର୍ଷୋତଫୁଲ୍ଲ ଭାବରେ ଶବ୍ଦ କରି ଶୋଭା ପାଉଥିଲେ । ସେମାନେ ସେମାନଙ୍କର ପ୍ରିୟାମାନଙ୍କ ସହିତ ଆନନ୍ଦୋଲ୍ଲାସ କରୁଥିଲେ ଜଣେ ଅନ୍ୟଜଣଙ୍କର ଶରୀରରେ ଥଣ୍ଟମାରି ପ୍ରେମକଳହରେ ନିଜକୁ ନିଜେ ଭୁଲି ରହିଥିଲେ । ନିକଟରେଥିବା ପୁଷ୍କରିଣୀରେ ବିଭିନ୍ନ ରକମର ପଦ୍ମଫୁଲ ଢୋଳୁଥିଲେ, ତା ଉପରେ ବସିଥିବା ହଂସ, ସାରସ, ଜଳକୁକ୍କୁଡ଼ା, କାଣ୍ଡବ ଇତ୍ୟାଦି ଜଳଚର ପକ୍ଷୀ ମଧୁର ଭାଷାରେ କହୁଥିଲେ, ଏହି କାରଣରୁ ସରୋବର ଏପରି ଲାଗୁଥିଲା ଯେ ନିଜର ପଦ୍ମରୂପକ ମୁହଁକୁ ଉପରକୁ ଉଠାଇ ଶୁଭ୍ର ଦାନ୍ତ ଗୁଡ଼ିକୁ ଦେଖାଇ, ହସୁଅଛି । ବଣର ଶୋଭା ସଜୀବ ହୋଇ ସେହି ପର୍ବତ ପ୍ରାନ୍ତ ସହିତ ଯୋଡ଼ି ହୋଇ ଯାଇଥିଲା, ପ୍ରକୃତି ଥିଲା ସ୍ତବ୍ଧ ଏବଂ ଶାନ୍ତ । ଏହିଭଳି ଏକ ସୁଖଦ ସମୟରେ ଯୌବନରେ ମଉଆଳି, ନିଜର କଟୀ ଦେଶକୁ ଉପରକୁ ଉଠାଇ ପୂର୍ବଚିତ୍ତି ଅପ୍‌ସରା ଆଶ୍ରମର ନିକଟବର୍ତ୍ତୀ ଉପବନରେ ଏପାଖରୁ ସେପାଖ ବୁଲିବାକୁ ଲାଗିଲା । ସେ ନିଜର ସୁଲଳିତ ଗତିରେ, ବିଳାସରେ, କଙ୍କଣ, କିଙ୍କିଣୀ ଓ ନୂପୁରର ମଧୁର ଧ୍ୱନିରେ ଝୁମ ଝୁମ କରି ରାଜକୁମାର ଆଗ୍ନୀଧ୍ରଙ୍କ ହୃଦୟକୁ ନିଜ ଆଡ଼କୁ ଆକର୍ଷିତ କରିବାର ପ୍ରଯତ୍ନ କଲା ।

ନିଛାଟିଆ ବନ ପ୍ରାନ୍ତରରେ ମଧୁର ନୂପୁରଧ୍ୱନୀକୁ ଶ୍ରବଣ କରି ରାଜକୁମାରଙ୍କର ଏକାଗ୍ର ହୃଦୟ ଚଞ୍ଚଳ ହୋଇ ଉଠିଲା । ସମାଧି ଯୋଗ ଦ୍ୱାରା ମୁଦ୍ରିତ ହୋଇଥିବା ନିଜର ଚକ୍ଷୁଦ୍ୱୟକୁ ଆସ୍ତେ ଆସ୍ତେ ଅଳ୍ପ ଉନ୍ମୋଚିତ କରି ସେହି ଚଞ୍ଚଳା ହରିଣୀସଦୃଶ୍ୟ ଦେବବଧୂକୁ ସମ୍ମୁଖରେ ଦେଖିଲେ । ସେ ଭ୍ରମର ପରି ଉଡ଼ି ଉଡ଼ି ଗୋଟିଏ ଫୁଲରୁ ଆଉ ଗୋଟିଏ ଫୁଲ ପାଖକୁ ଯାଉଥିଲା ଏବଂ ତାହାର ରସ ଆସ୍ୱାଦନ କରି ଫିଙ୍ଗି ଦେଉଥିଲା । ଦେବଦାନବ, ଏବଂ ମନୁଷ୍ୟର ମନ ଏବଂ ନୟନକୁ ଆହ୍ଲାଦିତ କରି ଦେବାର ଥିଲା ତାର ଗତି । ସେ ବାଳସୁଲଭ

ଚଞ୍ଚଳତାରେ ଚଞ୍ଚଳ ହୋଇ କ୍ରୀଡା କରୁଥିଲା । ତାର ହୃଦୟରେ ଲଜ୍ଜା ଏବଂ ବିନୟ ସମ୍ମିଶ୍ରଣ ହୋଇ ରହିଥିଲା, ତାହାର ମୃଦୁ ମଧୁର ସ୍ୱର ଲହରୀ ବୀଣାର ସୁମଧୁର ଧ୍ୱନୀକୁ ମଧ୍ୟ ଅତିକ୍ରମ କରି ପାରୁଥିଲା ତାର ଅଙ୍ଗ ପ୍ରତ୍ୟଙ୍ଗର ସାଜସଜ୍ଜା ସୁଗଠିତ ଏବଂ ସୁନ୍ଦର ଥିଲା । ସମସ୍ତ କୋମଳ ଅଙ୍ଗ ଯେପରି ହେବା ଆବଶ୍ୟକ ସେପରି ହୋଇ ମନୋହର ଥିଲା । ସେ କାମକ୍ରୀଡାସ୍ଥଳୀ ପରି କାମନାପ୍ରିୟ ପୁରୁଷକୁ ନିଜଆଡକୁ ହଠାତ୍ ଆକର୍ଷିତ କରି ପାରୁଥିଲା ।

ସେ ମର୍ତ୍ତ୍ୟଲୋକର ମାନବୀ ନଥିଲା, ସେ ବ୍ରହ୍ମଲୋକର ଅମୃତପାନ କାରିଣୀ ଦେବଲଲନା ସୁବର୍ଣ୍ଣଖଣ୍ଡ ସଦୃଶ, ପବିତ୍ର ଓ ପୁଣ୍ୟାତ୍ମା ମାନଙ୍କର ଉପଭୋଗ୍ୟର ବସ୍ତୁଥିଲା । ସେ ନିଜକୁ ନିଜେ ହସି ଦେଉଥିଲା, ହସିବା ସମୟରେ ତାର ଅମୃତ ରୂପକ ମାଦକଗନ୍ଧ ଦଶଦିଗକୁ ବ୍ୟାପି ଯାଉଥିଲା, ସେ ମନ୍ଦ ମନ୍ଦ ସୁନ୍ଦର ସୁରଭିର ଆକର୍ଷିତ ହୋଇ ଭ୍ରମର ଗୁଡ଼ିକ ପଦ୍ମର ଭ୍ରମରେ ତାର ମୁଖ ପଦ୍ମକୁ ଘେରିଆଡ଼ୁ ଘେରି ଯାଉଥିଲେ । ସେହି ଭ୍ରମରମାନଙ୍କୁ ନିଜର ହାତ ଦ୍ୱାରା ବିତାଡ଼ିତ କରି, କ୍ରୀଡାର ଭାବନା ଦେଖାଇ, ପାଦପଦ୍ମକୁ ଶୀଘ୍ର ଶୀଘ୍ର ଉଠାଇ, ବକ୍ଷସ୍ଥଳର ଭାରକୁ ଦୋହଲାଇ, ସର୍ପିଣୀ ସଦୃଶ୍ୟ ଲମ୍ବା ଲଟକୁଥିବା ବେଣୀକୁ ହଲାଇ, କଟୀ ତଟରେ ବନ୍ଧା ହୋଇଥିବା କ୍ଷୁଦ୍ର ଘଣ୍ଟିସଦୃଶ୍ୟ କଟୀ ମେଖଳାକୁ ଝମକାଇ ଏ ପାଖରୁ ସେପାଖ ନର୍ତ୍ତକୀ ପରି ନାଚୁଥିଲା ।

ବର୍ତ୍ତମାନ କୁମାର ସବୁ ଧ୍ୟାନ ଓ ଧାରଣା ଭୁଲି ଯାଇଥିଲେ । ଯେଉଁ ଚିତ୍ତ ପ୍ରଜାପତିଙ୍କ ଧ୍ୟାନରେ ଏକନିଷ୍ଠ ହୋଇଥିଲା, ତାହା ଭାବୀ ପ୍ରଜାପତିପତ୍ନୀଙ୍କ ଧ୍ୟାନରେ ନିମଗ୍ନ ହୋଇଗଲା । ସେ ତାଙ୍କର ରୂପସୁଧାକୁ ପାନକରି ପାଗଳ ହୋଇ ସଜ୍ଞାଶୂନ୍ୟ ହୋଇଗଲେ । ଜଡପୁରୁଷ ପରି ନିଜର ଚେତନାକୁ ହଜାଇଦେଇ ହାତଗୋଡ଼-ନଥିବା ପରି କଥା କହିବାକୁ ଲାଗିଲେ । ସେହି ସୁର ସୁନ୍ଦରୀକୁ ଲକ୍ଷ୍ୟକରି ସେ କହିଲେ—"ହେ ତପସ୍ୱିନି ! ତୁମେ କିଏ ? ଏଠାକୁ ତୁମେ କେଉଁ ପ୍ରୟୋଜନ ହେତୁ ଆସିଅଛ ? ଓହୋ ! ଜଣା ପଡ଼ୁଛି, ତୁମେ ପରାତ୍ପର ପ୍ରଭୁଙ୍କର ମାୟା । ତୁମେ ଏହି ଚରାଚର ବିଶ୍ୱକୁ ନିଜର ବଶୀଭୂତକରି ମୋହିତ କରି ରହିଅଛ । ଏଇଥିପାଇଁ ମୁଁ ତୁମର ଦର୍ଶନମାତ୍ରକେ ମୋହିତ ହୋଇଗଲି । ତୁମକୁ ଦେଖି ନିଜକୁ ନିଜେ ଭୁଲିଗଲି । ଦେବି ! ତୁମେ ତପସ୍ୱୀ ବା ତପସ୍ୱୀନି, ମୁଁ ତ ବୁଝୁଁଛି, ତୁମେ କୌଣସି ମୃଗୟାପ୍ରେମୀ ପ୍ରବଳପରାକ୍ରମୀ ଶୂରବୀର ଅଟ ।"

ସେ କହିଲା—"ମହାଶୟ ! ଆପଣ ମୋତେ କାହିଁକି ଜୀବବଧ କରୁଥିବା ବ୍ୟାଧ କରି ଦେଉଛନ୍ତି ?" ବ୍ୟଗ୍ରତାର ସହିତ ଅଗ୍ନୀଧ୍ର କହିଲେ—"ହେ ଶୂରବୀର !

ଆପଣ କ୍ଷମା କରନ୍ତୁ, ମୁଁ ଆପଣଙ୍କର ଅପମାନ କରିବା ପାଇଁ ଏ ଶବ୍ଦ କହୁନାହିଁ । ଆପଣଙ୍କର ଏ ଯେଉଁ କୁଟୀଳ ଭ୍ରୂକୁଟି, ସେ ମୋତେ ଫୁଲର ଧନୁ ସଦୃଶ ପ୍ରତୀୟମାନ ହେଉଅଛି । ପଦ୍ମଦଳ ସଦୃଶ କଳା ଢ଼ଳ ଢ଼ଳ ଯେଉଁଥିରେ ପକ୍ଷଅଛି, ସେହି ତୀକ୍ଷ୍ଣ ଦୃଷ୍ଟିଯୁକ୍ତ ବିଶାଳନେତ୍ର ମୋତେ ଦୁଇଟି ବାଣପରି ବୋଧହେଉଛି । ମୋତେ ଏପରି ଲାଗିଲା ଏହି ଭବାର୍ଣ୍ଣବରେ ମୃଗରୂପକ ବିଷୟାସକ୍ତ ଯେଉଁ ପୁରୁଷ ଅଛି, ତାହାକୁ ମାରିବା ପାଇଁ ତୁମେ ଆସିଅଛ ? ଓଃହୋ ! ମୁଁ ଭୁଲିଗଲି । ଏହାତ ତପୋବନ । ଏଠାରେ ମୃଗୟାମୀ ବ୍ୟାଧର କ'ଣ ଆବଶ୍ୟକ ? ବୋଧ ହେଉଛି ତୁମେ ତପସ୍ୱୀ ।

ଏହାଶୁଣି ରାଜା ପରୀକ୍ଷିତ କହିଲେ—"ଭଗବାନ୍ ! ପୂର୍ବଚିତ୍ତି ଥିଲା ସ୍ତ୍ରୀଲୋକ । ମହାରାଜ ଅଗ୍ନୀଧ ତାଙ୍କୁ ପୁରୁଷ ରୂପରେ କାହିଁକି ସମ୍ବୋଧିତ କରୁଥିଲେ !

ଏହାଶୁଣି ଶୁକଦେବ ହସି ହସି କହିଲେ—"ରାଜନ୍ ! ଯେତେବେଳେ ମନୁଷ୍ୟ ପାଗଳ ହୋଇଯାଏ, ବିବେକଜ୍ଞାନ ପାଲଟିଯାଏ, ତାକୁ ଜଣାପଡ଼େ ନାହିଁ ସେ ସ୍ତ୍ରୀ କି ପୁରୁଷ । ପାଗଳପଣିଆର ରହିଛି ଏକ ଭ୍ରମ । କେବେ ଯଦି ଆପଣ ଭାଙ୍ଗ ପିଉଥିବେ, ତେବେ ଆପଣଙ୍କର ଅନୁଭବ ହୋଇଥିବ । କାହାର ଭାଙ୍ଗ ପିଇବାର ଅଭ୍ୟାସ ନାହିଁ, ସେ ଯଦି ମୋଟା ଢେଲା ଭାଙ୍ଗ ପିଇଦିଏ, ତାକୁ ଏହି ପୃଥିବୀ ବୁଲବାପରି ଦେଖାହେବ । ହସିବ ଯଦି ହସୁଥିବ । କାନ୍ଦିବ ଯଦି କାନ୍ଦୁଥିବ । ଯାହାକୁ ଦେଖିବ ଦେଖୁଥିବ । ସ୍ତ୍ରୀକୁ କହିବ ପୁରୁଷ, ପୁରୁଷକୁ କହିବ ସ୍ତ୍ରୀ, ବର୍ତ୍ତମାନ ଗୋଟେ କଥା କହୁଛି, ମନ ଯାଇଁ ଆଉଗୋଟେ ଜାଗାରେ ସେ କଥା ବକିବାକୁ ଲାଗିଯିବ । ଏହିପ୍ରକାର ମହାରାଜ ଏ ପର୍ଯ୍ୟନ୍ତ ମୃଗୟା ପ୍ରେମ ଜନିତ କଥା କହୁଥିଲେ ଏବଂ ବର୍ତ୍ତମାନ କହିବାକୁ ଲାଗିଲେ—ବୋଧ ହେଉଛି, ଆପଣ ଜଣେ କୁଳପତି ବେଦଜ୍ଞ ଋଷି—ଦେଖନ୍ତୁ ଆପଣଙ୍କ ଚତୁଃପାର୍ଶ୍ୱରେ ଏ ଯେଉଁ କଳା କଳା ଜୀବମାନେ ବୁଲୁଛନ୍ତି, ଏମାନେ ସମସ୍ତେ ଆପଣଙ୍କର ଶିଷ୍ୟ, ବେଦପାଠ କରୁଛନ୍ତି । ଯଦିଓ ମୁଁ ଏମାନେ ଗାଉଥିବା ଗୀତର ଅର୍ଥ ବୁଝିପାରୁନାହିଁ, ତଥାପି ଭଗବାନ୍ ! ଏପରି ଅନୁଭବ ହେଉଛି ଅବ୍ୟକ୍ତ ରହସ୍ୟମୟ ସାମବେଦକୁ ସ୍ୱର ସହିତ ବୋଲୁଛନ୍ତି ଏହି ଗୀତ ଦ୍ୱାରା ଋଷିମାନଙ୍କ ଦ୍ୱାରା ପ୍ରଦର୍ଶିତ ନିଜନିଜର ଶାଖାର ମାଧ୍ୟମରେ ଈଶ୍ୱରଙ୍କର ଉପାସନା କରୁଛନ୍ତି ।"

କିଛି ସମୟ ଚିନ୍ତାକରି କହିଲେ—"ଅନୁଭବ ହେଉଛି ଆପଣଙ୍କ ପଦ-ପ୍ରାନ୍ତରରେ ଶିଷ୍ୟମାନେ ଭୂମିଗତ ହୋଇ ବେଦପାଠ କରୁଛନ୍ତି । ଭଅଁରଙ୍କପରି ଗୁମ୍ ଗୁମ୍ ଧ୍ୱନି ସେମାନଙ୍କର ଶୁଣିବାକୁ ମିଳୁଛି, ମାତ୍ର ସେମାନଙ୍କର ରୂପ

ଦେଖାଯାଉ ନାହିଁ । ନିଶ୍ଚିତ ଭାବରେ ଆପଣ ତପସ୍ୱୀ ତେଜସ୍ୱୀ ଋଷି ମାତ୍ର ମୋତେ ଲାଗୁଛି, ଆପଣଙ୍କ ନିତମ୍ବ ନିକଟରେ କଦମ୍ବ ପରି ହଳଦୀ ବର୍ଣ୍ଣ ଅତ୍ୟନ୍ତ କାନ୍ତିମୟ ଶୋଭା ପ୍ରକଟିତ କରୁଛି, ସେଥିରୁ ଆପଣଙ୍କର ତପସ୍ୟା ଦ୍ୱାରା ତେଜର ପ୍ରଭାବ ବେଶ ପ୍ରକାଶିତ ହେଉଛି ମାତ୍ର ବଲ୍‌କଲ୍ ଓ ବସ୍ତ୍ର ନ ରହିବା ଫଳରେ ଆପଣ ନଗ୍ନ ଦେଖାଯାଉଛନ୍ତି । ଆପଣଙ୍କ କଟୀଦେଶରେ ଏହି ଘୁଣ୍ଟୁଘୁଣ୍ଟୁ ଶବ୍ଦ ଆଉ କାହାର ହୋଇପାରେ ।"

ଏହା ଶୁଣି ପୂର୍ବଚିତ୍ତି କହିଲା—"ରାଜନ୍ ! ମୁଁ ଋଷି ନୁହେଁ କିମ୍ବା ନୁହେଁ ତପସ୍ୱୀ, ମୁଁ ଜଣେ ସାଧାରଣ ଜୀବ ।"

ଚକିତ ହୋଇ ମହାରାଜ ଅଗ୍ନୀଧ୍ର କହିଲେ – "ଆରେ ଆପଣ କେଉଁ ପ୍ରକାରର ଜନ୍ତୁ ! ପଶୁମାନଙ୍କର ତ ମୁଣ୍ଡରେ ଶିଙ୍ଗ ରହିଛି, ଆପଣଙ୍କ ବକ୍ଷସ୍ଥଳରେ ଶିଙ୍ଗ । ସେଥିରେ ନାଲି ନାଲି କାକୁଅ ଲାଗିରହିଛି । ସେହି କାକୁଅ ଦ୍ୱାରା ମୋର ସମ୍ପୂର୍ଣ୍ଣ ଆଶ୍ରମ ସୁଗନ୍ଧିତ ହୋଇଉଠୁଛି । ଏହି ଗନ୍ଧରେ ମୋର ଚିତ୍ତ ଚଞ୍ଚଳ ହୋଇ ଯାଉଛି । ଆପଣଙ୍କର ଅତ୍ୟନ୍ତ ମନୋହର ମଧୁର ପଦ୍ମମୁଖର ଅଦ୍ଭୁତ ହାବଭାବ ଏବଂ କଟାକ୍ଷ ହେତୁ ମୁଁ ବିହ୍ୱଳ ଏବଂ ଅତ୍ୟନ୍ତ ଆତୁର ହୋଇ ଉଠୁଛି । ଏହିପରି ଅନୁପମ ଶରୀରକୁ ଅବଲୋକନକରି ମୁଁ ନିଜର ସବୁ ହରାଇବସିଛି । ଆପଣଙ୍କ ଅଧରର ସୁଧାରସ ପାନ କରିବା ପାଇଁ ଅଧୈର୍ଯ୍ୟ ହୋଇଯାଉଛି ।

ଏହା ଶୁଣି ସେହି ଅପସରା କହିଲା—"ରାଜନ୍ ! ମୋତେ ଆପଣ ଦେବଲୋକର ଗୋଟିଏ ନର୍ତ୍ତକୀ ବୋଲି ଭାବନ୍ତୁ । ମୁଁ ପୁରୁଷ ନୁହେଁ, ଋଷିମୁନି କିମ୍ବା ଲାଙ୍ଗୁଡ଼ ଶିଙ୍ଗଥିବା ପଶୁ ମଧ୍ୟ ନୁହେଁ ।"

ରାଜା ଚକିତ ହୋଇ କହିଲେ—"ହଁ, ଏତେବେଳେ ବୁଝିଲି । ତୁମେ ମାନବୀ ନୁହଁ, ଦେବୀ ଅଟ । ତୁମେ ଭୌତିକ ପଦାର୍ଥକୁ ଆସ୍ୱାଦନ ନକରି ଦିବ୍ୟ ଅମୃତକୁ ପାନ କରୁଥିବା ବାରଙ୍ଗନା ଅଟ । ତୁମେ ଭଗବାନ ବିଷ୍ଣୁଙ୍କର କମନୀୟକଳା ଅଟ । ତୁମ କାନପାଖରେ ମନମୋହକ ମର୍କତଯୁକ୍ତ କୁଣ୍ଡଳ ଝୁଲିରହି ଏହାର ପ୍ରମାଣ ଦେଉଅଛି ଯେ ତୁମେ ପାର୍ଥିବ ଜନ୍ତୁ ନୁହେଁ ଅମର ଲୋକର, ନିବାସୀଅଟ, କାରଣ ତୁମର କେବେହେଲେ ପଲକ ପଡ଼ୁନାହିଁ । ଏହାଶୁଣି ସେହି ପୂର୍ବଚିତ୍ତି ଅପ୍‌ସରା ହସିଉଠିଲା ଏବଂ ହସି ହସି କହିଲା— "ମହାରାଜ ! ଆପଣ କ'ଣ କ'ଣ କାବ୍ୟ କହି ଯାଉଛନ୍ତି ? କଭଲି ଅଖାଡ଼ୁଆ ଉପମା ଖଞ୍ଜି ଦେଉଛନ୍ତି ?"

ଶୁଭ୍ର ଦନ୍ତପନ୍ତି ଏବଂ ଚମକୁଥିବା ଆଖିକୁ ଦେଖି ରାଜା ଅଗ୍ନୀଧ୍ର କହିବାକୁ ଲାଗିଲେ, "ଆହା ! ତୁମର ମୁଖମଣ୍ଡଳ ସୁନ୍ଦର ସ୍ୱଚ୍ଛ ପାଣିଯୁକ୍ତ ସକଳ ଶୋଭାର

ଆଧାର ସରୋବର ଅଟେ, ଏବଂ ତନ୍ମଧ୍ୟରେ ଭୟଗ୍ରାସ୍ତ ହୋଇ କଟାକ୍ଷଯୁକ୍ତ ରସଯୁକ୍ତ ଏହି ନେତ୍ରଦ୍ୱୟ ବୀଡ଼ା କରୁଥିବା ମାଛ ସଦୃଶ୍ୟ ଅଟନ୍ତି । ଯେଉଁଭଳି ଶାନ୍ତରେ ସ୍ଥିରଆଚ୍ଛେ ବସିଥିବା ହଂସମାନେ ସରୋବରର ଶୋଭାକୁ ବର୍ଦ୍ଧନ କରନ୍ତି, ସେହି ପ୍ରକାର ଭାବରେ ତୁମର ଦାନ୍ତଗୁଡ଼ିକ ତୁମର ମୁଖର ଶୋଭାକୁ ଶତଗୁଣିତ କରୁଅଛନ୍ତି । ଏହି ଯେଉଁ କଳା କଳା ଓଢ଼ଣୀ ସଦୃଶ ଭ୍ରୂଲତା, ପଦ୍ମ ଉପରେ ବସିଥିବା ଭ୍ରମର ପରି ଶୋଭାବନ୍ତ ଅଟେ । ପବନ ତୁମଉପରେ ଏତେମାତ୍ରାରେ ଦୁଷ୍ଟାମୀ ବ୍ୟବହାର କଲେ ମଧ୍ୟ ତୁମେ ଆଦୌ ରାଗୁନାହଁ, ତାକୁ ଦଣ୍ଡ ଦେଉନାହଁ । ଏହି ଧୂର୍ତ୍ତର ସାହାସକୁ ତ ଦେଖ, ସେ ତୁମର କେଶକୁ ଖୋଲିକରି ସ୍ଥିରଆଚ୍ଛେ ବସ୍ତ୍ରଗୁଡ଼ି ଦେଉଛି ରେଶମ ସଦୃଶ କଳା ଓ କୋମଳ ବେଣୀକୁ ଏହା ଦୋହଲାଇ ଦେଉଛି । ବାରମ୍ବାର ତୁମର ସରୁକାଖରୁ ବସ୍ତ୍ର ବାହାର ଯାଉଛି; ତୁମେ ଦେଖି ମଧ୍ୟ ତାକୁ ଉପେକ୍ଷା କରୁଛ ।”

ସେହି ଅପ୍‌ସରା ହସି ହସି କହିଲା—“ରାଜନ୍ ! ମୋତେ ବ୍ରହ୍ମାଜୀ ପଠାଇଛନ୍ତି । ମୁଁ ତାଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟକରି ଏହି ତପୋବନରେ ତୁମ ସହିତ ରହିବାପାଇଁ ଆସିଅଛି ।”

ରାଜା ଏହାଶୁଣି ପୁଣି ନଜର ସମ୍ଭାଳି ବସିଲେ । ପୁଣି ଅଶାଳୀନ କଥା କହିବାକୁ ଲାଗିଲେ—“ଆଚ୍ଛା; ତୁମେ ତପସ୍ୟା କରିବାକୁ ଆସିଛ ? ତେବେ ? ତୁମେତ ନିଶ୍ଚିତ ରୂପେ ଖୁବ୍ ବଡ଼ ତପସ୍ୱୀ । ପ୍ରଥମରୁ ତମେ ନିଶ୍ଚିତଭାବେ ଘୋର ତପ ଆଚରଣ କରିଥିବେ, ତେବେ ଯାଇଁ ଏଭଳି ତ୍ରୈଲୋକ୍ୟମୋହିନୀ ଭୁବନରୂପକୁ ପ୍ରାପ୍ତ ହୋଇ ଯେଉଁ ତପ ଫଳରେ ତୁମକୁ ଏହିପରି ଅନୁପମ ସୌନ୍ଦର୍ଯ୍ୟ ପ୍ରାପ୍ତ ହୋଇଅଛି, ସେହି ତପସ୍ୟାର ଦୀକ୍ଷା ମୋତେ ଦିଅ । ମୁଁ ସେହିପରି ତପସ୍ୟା କରି ତୁମପରି ରୂପ ପ୍ରାପ୍ତ ହେବି । ବନ୍ଧୁ ଶ୍ରେଷ୍ଠ, ମୋ ପରି ଏକାକୀ ଦୀନହୀନ ସାଧକ ସହିତ ସହିତ ରହିକରି ମୋର ସାହାସକୁ ବୃଦ୍ଧିକର, ମୋତେ ତୁମର ମନ୍ତ୍ର ଦାନକରି ଶିଷ୍ୟତ୍ୱରେ ଦୀକ୍ଷାଦିଅ । ଆମେ ଦୁହେଁ ମିଳିମିଶି ତପସ୍ୟା କରିବା ଏବଂ ଆନନ୍ଦର ବଂଶୀ ବଜାଇବା । ଯେତେବେଳେ ତୁମେ ଓ ମୁଁ ଏକମନ ପ୍ରାଣହୋଇ ସେହି ପ୍ରଜାପତିମାନଙ୍କର ପତି ଲୋକନାଥ କମଳାସନଙ୍କର ଆରାଧନା କରିବା, ସେ ନିଶ୍ଚିତରୂପେ ଆମକୁ ଇପ୍‌ସିତ ବସ୍ତୁର ପ୍ରାପ୍ତି କରାଇବେ, ଆମର ମନୋବାଞ୍ଛିତ ଫଳଦେବେ ।”

ଏହାଶୁଣି ଅପ୍‌ସରା କହିଲା—“ରାଜନ୍ ! ଆପଣ ପ୍ରକୃତସ୍ଥ ହୁଅନ୍ତୁ । ମୋହ ପରିତ୍ୟାଗ କରନ୍ତୁ । ଆପଣଙ୍କର ଆରାଧନା ସଫଳ ହୋଇ ଯାଇଛି । ଲୋକ ପିତାମହ ଭଗବାନ ବ୍ରହ୍ମା ଆପଣଙ୍କ ଉପରେ ସନ୍ତୁଷ୍ଟ ହୋଇଛନ୍ତି । ସେ

ହିଁ ଆପଣଙ୍କର ଦାସୀ ଭାବରେ ଏଠାରେ ରହିବାକୁ ମୋତେ ପଠାଇଛନ୍ତି ।”
ରାଜା ଏହାଶୁଣି ଅତ୍ୟନ୍ତ ଜୋର୍‌ରେ ହସି ଉଠିଲେ ଏବଂ କହିଲେ—ସ୍ୱାଗତମ୍ !
ସ୍ୱାଗତମ୍ ! ଆଚ୍ଛା, ଭଗବାନ ଚତୁରାନନ ମୋ ଉପରେ ଏତେବଡ଼ କୃପାକଲେ ।
ତୁମକୁ ମୋ ସହିତ ରହିବା ପାଇଁ ପଠାଇଲେ । ତେବେ ହେ ମୋର ଜୀବନ
ଦେବୀ ମୁଁ ତୁମକୁ କୌଣସି ଅବସ୍ଥାରେ ବର୍ତ୍ତମାନ ଛାଡ଼ି ପାରିବି ନାହିଁ । ତୁମେ
ମୋ ସହିତ ସମସ୍ତ ଅତିବାହିତ କର, ବିରହ ବ୍ୟଥାରେ ବ୍ୟଥିତ ଏହି ବିରକ୍ତର
ମନର ଉତ୍ତାପକୁ ପରିସମାପ୍ତି କର, ମୋର ପାଣିଗ୍ରହଣ କରି ମୋତେ ନିଜର
କରିନିଅ, ମୋତେ ବେଶୀ ସମସ୍ତ ବ୍ୟଥିତ କରନାହିଁ । ମୋତେ ତୁମ ଚରଣର
କିଙ୍କର କରିରଖ । ମୋର ଏହି ଚଞ୍ଚଳ ମନ ତୁମର ଅନୁପମ ରୂପ ସୌନ୍ଦର୍ଯ୍ୟକୁ
ଦର୍ଶନ କରି ତୃପ୍ତ ହେଉନାହିଁ; ତୁମ ଶରୀର ଉପରେ ଲାଗି ରହିଥିବା ଦୃଷ୍ଟି ଅନ୍ୟ
କେଉଁ ଦିଗକୁ ଅପସାରିତ ହେବାକୁ ସ୍ପଷ୍ଟ ମନା କରି ଦେଉଛି । ସେ ତୁମର ସୁନ୍ଦର
ବଳିଷ୍ଠ ଶରୀର ଭିତରେ ନିଜକୁ ମିଶାଇ ଦେଇଛି । ମନ ବର୍ତ୍ତମାନ ଆଉ କୌଣସି
କଥା ଚିନ୍ତା କରୁନାହିଁ । ସେ କେବଳ ତୁମରି ଶରୀର ସହିତ ଯୁକ୍ତ ହୋଇ-
ଗଲାଣି । ହେ ସୁନ୍ଦରି ! ତୁମର ଏହି ଶୃଙ୍ଗରୂପକ କୁଚଯୁଗଳ ମୋତେ ସବୁଠାରୁ
ସୁନ୍ଦର ଲାଗୁଛି । ଏହା ସହିତ ଲାଗିଥିବା ଅଗୁରୁ ଚନ୍ଦନ ରୂପକ ଗନ୍ଧ ମୋର ଦୁର୍ବଳ
ମନକୁ ଆହୁରି ଦୁର୍ବଳ କରି ଦେଉଛି । ହେ ଶୃଙ୍ଗୀ, ମୁଁ ମୋ ନିଜକୁ ତୁମ ପାଦ-
ତଳେ ସମର୍ପଣ କରି ଦେଉଛି । ତୁମେ ମୋତେ ନିଜରକର ବା ଘଉଡ଼ାଇ ଦିଅ ।
ଏଠାରେ ରଖ ବା ଅନ୍ୟତ୍ର କେଉଁଠାକୁ ନେଇକରି ଚାଲ । ମୁଁ ତ ସବୁବେଳେ
ତୁମର ଅଧିନ ତୁମର ପଦଧୂଳି ପାଇବାକୁ ଇଚ୍ଛୁକ,, ମୁଁ ତୁମର ଦାସୀମାନଙ୍କର
ଦାସ, ତୁମେ ତୁମର ଦାସୀମାନଙ୍କ ମଧ୍ୟ ସଙ୍ଗରେ ନେଇକରି ଚାଲ ।”

ଶ୍ରୀ ଶୁକଦେବ କହୁଛନ୍ତି—“ରାଜନ୍ ! ଏହି ପ୍ରକାର ଭାବେ ଅନେକ ପ୍ରକାର ଅନୁନୟ ବିନୟ କରି ରାଜା ସେହି ପୂର୍ବଚିତ୍ତି ଅପସରାକୁ ନିଜର ପ୍ରେମ ପାଶରେ ମଜବୁତ୍ କରି ବାନ୍ଧିଦେଲେ । ସେ କାମଲାଳସା ବ୍ୟଗ୍ରପରି ତାଙ୍କୁ ପ୍ରସନ୍ନ କରିବା ପାଇଁ ଅତ୍ୟଧିକ ଦୈନ୍ୟ ପ୍ରକାଶ କରି ଆକାଶ ପାତାଳ ପ୍ରଭେଦକୁ ଏକ କରିବାକୁ ଲାଗିଲେ ।

ପରୀକ୍ଷିତ ମହାରାଜ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ—“ଭଗବାନ୍ ! ଏହା କି ପ୍ରକାର ମୋହ ? ରାଜା ଏକ ପାଗଳ ପରି ନିଜକୁ ସମ୍ପୂର୍ଣ୍ଣଭାବେ ଭୁଲିଗଲେ । ଏହିଭଳି ଅବାନ୍ତୁଆ କଥାମାନ କହିବାକୁ ଲାଗି ଗଲେ । ଏହା ମୋତେ ଅତ୍ୟନ୍ତ ଅଯୁକ୍ତିକର ମନେ ହେଉଛି ।

ଏହାଶୁଣି ହସି ହସି ଭଗବାନ ଶୁକ କହିଲେ—"ରାଜନ୍ ! ଯାହାର ପାଦରେ ବିବାଇ ଯୁଟେନାହିଁ, ସେ ଅନ୍ୟର ଅନୁଭବ କରି ପାରେନାହିଁ । ଯାହାର ହୃଦୟରେ କାମିନୀର କଟାକ୍ଷ ରୂପକ ବାଣରେ ଭୃକୁଟୀ ରୂପକ ଧନୁକୁ ଚଢ଼ାଇ ତାକୁ ଲକ୍ଷ୍ୟକରି ଛାଡ଼େ, ଏବଂ ସେହି ବାଣରେ ବ୍ୟଥିତ ହୋଇ ସେ ଲଜ୍ଜା ଶୂନ୍ୟ ହୋଇଯାଏ, ସେହିପରି ଆତୁର ଅବସ୍ଥାରେ ଯେଉଁ ବ୍ୟକ୍ତି ବ୍ୟାକୁଳ ହୋଇ ପ୍ରଳାପ କରେ, ତାର ମର୍ମ ସମସ୍ତେ ବୁଝି ପାରିବେ ନାହିଁ । ଏହା ଅନୁଭବ-ଠାରୁ ବହୁ ଦୂରରେ, ଭଗବାନ ନକରନ୍ତୁ କାହାରି ଉପରେ ଏପରି ବିପତ୍ତିପଡ଼ୁ । ଅନୁମାନ ହୁଏ, ଆପଣ କେବେହେଲେ ଏହିଭଳି ଚକ୍କରରେ ପଡ଼ିନାହାନ୍ତି । ତେଣୁ ଅଜଣାପରି ଏହିପରି ସାଦାସିଧା କହୁଛନ୍ତି ।"

ଲଜ୍ଜାର ଭାବ ପ୍ରଦର୍ଶନ କରି ଉତ୍ତରାତନୟ କହିଲେ—"ନାଁ, ଭଗବାନ ! ଏହା ମୋର ଅଭିପ୍ରାୟ ନୁହେଁ; ମନୁଷ୍ୟ ମୋହାଚ୍ଛନ୍ନ ହେଲେ ସ୍ଥାନଚ୍ୟୁତ ଘଟେ । ତଥାପି ଏତେବଡ଼ ତେଜସ୍ୱୀ ତପସ୍ୱୀ ରାଜାଙ୍କ ଏହିଭଳି କଥାବାର୍ତ୍ତା ହେତୁ ଲଜ୍ଜା ଶୂନ୍ୟତା ଅନୁପଯୁକ୍ତ ଅନୁଭବ ହେଉଅଛି ।"

ଏହାଶୁଣି ହସି ହସି ଶୁକଦେବ କହିଲେ, "ମହାରାଜ ! ସତକଥା ଏହି ଯେ ରାଜା କୌଣସି ଗୋଟିଏ କଥା କେବଳ କହିଥିବେ । କବିମାନେ ସେଥିରେ ଲୁଣ ଲଙ୍କା ଲଗାଇ ତାକୁ ଚଟଣି କରିଦେଲେ । ଏହି କବି ମାନଙ୍କର ଧନ୍ଦା ଏହିପରି । ଏମାନଙ୍କର ଦୃଷ୍ଟି ପୃଥକ । ସଂସାର କୌଣସି କୌଣସି ବସ୍ତୁକୁ ଭିନ୍ନ ଦୃଷ୍ଟିରେ ଦେଖେ । କଥାକୁ ନୂତନ ରୂପଦେବା ଦବ ତହିଁରେ ସୌନ୍ଦର୍ଯ୍ୟକୁ ଦେଖେ । ରସ ଅନ୍ୱେଷଣ କରେ ଉପମା ଖୋଜିବାକୁ ଲାଗେ । କାବ୍ୟର ଅର୍ଥ ହିଁ ଏଇଆ, ଯାହା ରସାତ୍ମକ ଅଟେ, ତାହାର ସମସ୍ତ ବର୍ଣ୍ଣ ସରସ । ନୂତନ ରସର ସନ୍ଧାନ ହୁଏ । କବିମାନଙ୍କ ନିକଟରେ ସମସ୍ତେ ପରାସ୍ତ ସ୍ୱୀକାର କରିଛନ୍ତି । ଯେଉଁଠାରେ ସୂର୍ଯ୍ୟ ପହଞ୍ଚିପାରେ ନାହିଁ, ସେଠାରେ ପହଞ୍ଚିଯାଏ କବି । ଏହା କବିମାନଙ୍କର ସୁଖପ୍ରଦ କଳ୍ପନା, ଭବଜଗତ ମଧ୍ୟ ଅନୁପମ । ରାଜନ୍ ! ସାରାଂଶ ଏତିକି ହେଲା ଯେ ମହାରାଜ ଅଗ୍ନୀଧ୍ର ସେହି ପୂର୍ବଚିତ୍ତି ଅପ୍ସରା ପ୍ରତି ମୁଗ୍ଧ ହୋଇଗଲେ ।" ମହାରାଜ ପଚାରିଲେ—"ହଁ; ମହାରାଜ ତାପରେ କ'ଣ ହେଲା ?" ଏହା ଶୁଣି ଶୁକଦେବ କହିଲେ, "ଏ କଥାକୁ ଆଗ ଅଧ୍ୟାୟରେ ବର୍ଣ୍ଣନା କରିବି । ଇତି ଶ୍ରୀ ଭାଗବତ କଥା ମଧ୍ୟରେ ଅଗ୍ନୀଧ୍ର ବିବାହ ପ୍ରସ୍ତାବ ନାମକ ଅଧ୍ୟାୟ ସମାପ୍ତ: ଶ୍ରୀ ହରୟେ ନମଃ, ଶ୍ରୀ ରାଧେ—ଶ୍ରୀ ରାଧେ ବ୍ୟତୀତ ବନ୍ଧନର କେବଳ ଅଧା ?"

## ଛପ୍‌ପୟ

ରାଜା ବୋଲେ—ସଖେ ! ପରସ୍ପର ମହ ଅପନାବେ ।
ଦୋନୋ ହୃଦୟ କୋ ଧାର ହାର ପହନେ ପହନାବେ ।।
ମିଲ୍ ଜୁଲ୍ ଖେଲେ ଖେଲ ପ୍ରାନ୍ କୋ ଦାବ ଲଗାବେ ।
ଦୋ ମନ ଏକ ମିଲାୟ ଅନ୍ତତେ ଅଙ୍ଗ ସଟାବେ ।।
ଅବ ଅପନାଓ ଅଧମକୁ ଅନୁଚର ଅପନୋ ମାନ କେ ।
ପ୍ରେମ ସୁଧା ରସ ପ୍ୟାୟ କେ, କ୍ୟାହୋ ଜଡ଼ମତ ଜାନ କେ ।।



# ଅଗ୍ନୀଧ୍ର ଓ ପୂର୍ବଚିତ୍ତିଙ୍କର ବିବାହ ଏବଂ ପୁତ୍ର ପ୍ରାପ୍ତି

( ୩୧୦ )

"ନ ତ୍ୱାଂ ତ୍ୟଜାମି ଦୟିତଂ ଦ୍ୱିଜ ଦେବଦତ୍ତମ
ଯସ୍ମିନ୍ମନୋ ଦୃଗପି ନୋ ନ ବିୟାତି ଲଗ୍ନମ୍ ।
ମାଂ ଚାରୁଶୃଙ୍ଗ୍ୟର୍ହସି ନେତୁ ମନୁବ୍ରତଂତେ
ଚିତ୍ତଂ ଯତଃ ପ୍ରତିସରନ୍ତୁ ଶିବ୍ୟଃ ।।"

( ଭାଗବତ ୫-ସ୍କନ୍ଧ ୨-ଅଧ୍ୟାୟ ୧୩ଶ୍ଳୋକ )

## ଛପ୍ପୟ

"କହି କହି ମିଠେ ବୈନ୍ ବଢ଼ାଇ ପ୍ରେମ ସଗାଇ
ବଧୂ କୀ ଭେଜୀ ବଧୂ ଭୂପ ବିଧିବତ୍ ଅପନାଇ ।
ନୃପତି କାମିନୀ ସଙ୍ଗ ବିଷୟ ସୁଖ ଭୋଗେ ନିଶିଦିନ
ରହି ନ ସକେ ପଲଏକ ଅପ୍‌ସରା ପୂର୍ବଚିତ୍ତି ବିନ ।
ଭୟେ ଯଶସ୍ୱୀ ପୁତ୍ର ନୌ, ଭୂପ ପରମ ପ୍ରମୁଦିତ ଭୟେ
ତା ପ୍ରମଦାକେ ସଙ୍ଗ ମହଁ, ସହସ ବରଷ ଦିନ ସମ ଗୟେ ।"

ଯେଉଁମାନେ ଅନ୍ତରରୁ ତା'ହିନ ଭଗବାନ ଅଖିଳେଶଙ୍କୁ ପ୍ରାର୍ଥନା କରନ୍ତି, ନିଜର ଇଚ୍ଛା ପୂରଣ ନିମିତ୍ତ ଯେଉଁମାନେ କ୍ଷୁଦ୍ର ମରଣଶୀଳ ମନୁଷ୍ୟର ଆଶ୍ରୟ ଗ୍ରହଣ ନକରି ଅମରେଶ୍ୱରଙ୍କର ଆଶ୍ରୟ ନିଅନ୍ତି, ସେମାନଙ୍କ ସକଳ ଇଚ୍ଛା ପୂରଣ ହୋଇଥାଏ । ସମସ୍ତ ବୈଭବର ସ୍ୱାମୀଙ୍କୁ ପ୍ରସନ୍ନ କରିବା ପରେ ପୁଣି କ'ଣ ଦୁର୍ଲ୍ଲଭ ବସ୍ତୁ ରହିପାରେ ! ଏପରି କ'ଣ ମନୋରଥ ଅଛି ଯାହା ମନୋରଥର

ଉଦଗମ୍ ସ୍ଥାନରେ ପହଞ୍ଚି ପୁରା ହୁଏନାହିଁ ? ଜୀବର ଭରସା ନାହିଁ, ବିଶ୍ୱାସ ନାହିଁ, ସେ ନିଜର କ୍ଷୁଦ୍ର ହୃଦୟରେ କ୍ଷୁଦ୍ର ଜୀବ ସମ୍ପର୍କରେ କ୍ଷୁଦ୍ର କ୍ଷୁଦ୍ର ମନୋରଥକୁ ରଖେ ଏବଂ ନିଷ୍ଫଳ ହୁଏ । ନିଷ୍କାମ ହେଉ ବା ସକାମ, ଏକ କାମନା ହେଉ ବା ଅନେକ, ସମସ୍ତଙ୍କର ପୂର୍ଣ୍ଣ ହେବାର ଏକମାତ୍ର ଆଶ୍ରୟ ହେଉଛି, ପ୍ରଭୁଙ୍କର ପବିତ୍ର ପାଦପଦ୍ମ; ଯେ ସେ ପାଦପଦ୍ମକୁ ଅବଲମ୍ବନ କରିଛି, ତାର ସମସ୍ତ ଇଚ୍ଛା ଏକା ସାଙ୍ଗରେ ପୂର୍ଣ୍ଣ ହୋଇଯାଏ । କେବଳ ଇଚ୍ଛା ତ ପୂର୍ଣ୍ଣ ହୁଏ ନାହିଁ, ଯେଉଁଠାରୁ ଇଚ୍ଛାମାନ ଜାଗ୍ରତ ହୁଏ, ତାହା ମଧ୍ୟ ପୂର୍ଣ୍ଣତା ପ୍ରାପ୍ତ ହୋଇଥାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଯେତେବେଳେ ମହାରାଜ ଆଗ୍ନୀଧ୍ର ଏହି ପ୍ରକାର ସ୍ତବରେ ସେହି ପୂର୍ବଚିତ୍ତିଙ୍କ ପ୍ରତି ନିଜର ପ୍ରେମ ପ୍ରଦର୍ଶନ କଲେ, ସେତେବେଳେ ସେହି ଲଳନା ମୁକୁଟମଣି ଦେବାଙ୍ଗନା ସେହି ରାଜର୍ଷିଙ୍କର ସ୍ୱଭାବ ଦକ୍ଷତା, ବିଦ୍ୟା, ବୁଦ୍ଧି ଶରୀର, ଶ୍ରୀକାନ୍ତି, ଉଦାରତା, ରସିକତା, ଇତ୍ୟାଦି ଗୁଣରେ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତାଙ୍କର ପ୍ରିୟତମା ପତ୍ନୀ ହୋଇଗଲେ । ତାଙ୍କ ସହଧର୍ମିଣୀ ହୋଇ ବ୍ରହ୍ମଲୋକର ସୁଖକୁ ସେ ପାଶୋରି ପକାଇଲେ ଏବଂ ସେହି ଜମ୍ବୁଦ୍ୱୀପର ଦ୍ୱିପାଧିପତିଙ୍କ ସହିତ ସହସ୍ର ବର୍ଷ ପର୍ଯ୍ୟନ୍ତ ସ୍ୱର୍ଗ ସୁଖ ଭୋଗ କରିବାକୁ ଲାଗିଲେ ।"

ଏହାଶୁଣି ରାଜା ପଚାରିଲେ—"ପ୍ରଭୁ ! ଏତେବଡ଼ କୁଳୀନଧର୍ମୀଷ୍ଠା ମହାରାଜ ଆଗ୍ନୀଧ୍ର ଏହି ଅପସରା ସହିତ କାହିଁକି ବିବାହ କଲେ ?"

ସେ କାହିଁକି କୌଣସି କୁମାରୀ କନ୍ୟାର ପାଣିଗ୍ରହଣ କଲେ ନାହିଁ ? ସ୍ୱର୍ଗୀୟ ପୁରୁଷମାନଙ୍କ ଉପଭୋଗ୍ୟାକୁ ସେ ତାଙ୍କର ଧର୍ମପତ୍ନୀ ଭାବରେ କାହିଁକି ଗ୍ରହଣ କଲେ ?"

ଏହା ଶୁଣି ଶ୍ରୀ ଶୁକଦେବ କହିଲେ—"ରାଜନ ! କେଉଁ ବସ୍ତୁ ପବିତ୍ର, ଓ କେଉଁ ବସ୍ତୁ ଅପବିତ୍ର, ଏ ବିଷୟରେ ଶାସ୍ତ୍ରରେ ପ୍ରମାଣ ରହିଛି । ପରଦ୍ୱାରା ଉପଭୋଗ୍ୟା ଲଳନା ଧର୍ମପତ୍ନୀ ହୋଇ ପାରେନାହିଁ ବୋଲି କୁହା ଯାଇଛି । ଏହି ନିୟମ ପୃଥିବୀର ସ୍ତ୍ରୀଲୋକମାନଙ୍କ ପ୍ରତି କେବଳ ପ୍ରଯୁଜ୍ୟ । ସୁର ସୁନ୍ଦରୀମାନେ ସଦାସର୍ବଦା ପବିତ୍ର । ଦେଖନ୍ତୁ, ଗୋଟିଏ ମୁହଁ ଦ୍ୱାରା ସ୍ପର୍ଶ କରାଯାଇଥିବା ବସ୍ତୁ ଅନ୍ୟ ପାଇଁ ତ୍ୟାଜ୍ୟ ଅଟେ, ମାତ୍ର ଶଙ୍ଖକୁ ସମସ୍ତେ ବଜାନ୍ତି । ଏହା ପୁଣି ହାତରେ ନିର୍ମିତ । ତାକୁ ପବିତ୍ର ବୋଲି କୁହାଯାଇଛି । ସୁବର୍ଣ୍ଣ ମୁଦ୍ରା ଚଣ୍ଡାଳ ବା ବ୍ରାହ୍ମଣ ନିକଟରେ ଥିଲେ ମଧ୍ୟ ତାକୁ ପବିତ୍ର ବୋଲି ଗ୍ରହଣ କରାଯାଏ । ବାଲୁକା ଦ୍ୱାରା

ଅର୍ଦ୍ଧିତା ହୋଇଥିବା ବୃକ୍ଷକୁ ସମସ୍ତେ ପିଅନ୍ତି । ମନୁଷ୍ୟାଙ୍କ ମୁହଁରୁ ନିର୍ଗତ ରସକୁ ଅମୃତରୂପେ ସମସ୍ତେ ସେବନ କରନ୍ତି, ତାହା ଦେବତାମାନଙ୍କର ପୂଜାକାମରେ ମଧ୍ୟ ଲାଗେ । ଭ୍ରମରମାନଙ୍କ ଉଚ୍ଛିଷ୍ଟ ଫଳ ଦେବତାମାନଙ୍କର ମସ୍ତକରେ ଚଢ଼ାଯାଏ । ମହାରାଜା ପୁରୁରବା ଉର୍ବଶୀଙ୍କ ସହିତ ବିବାହ କରିଥିଲେ ଯେଉଁ ଥିରୁ ଚନ୍ଦ୍ରବଂଶର ବୃଦ୍ଧି ଘଟିଥିଲା । ସ୍ୱର୍ଗୀୟ ଦେବଲୋକର ଅପ୍ସରାମାନେ ସ୍ୱର୍ଣ୍ଣ ଓ ସୁବର୍ଣ୍ଣ ପରି ପବିତ୍ର । ପୁଣି ପୂର୍ବଚିତ୍ତି ସବୁଠାରୁ ଶ୍ରେଷ୍ଠ ବ୍ରହ୍ମଲୋକର ରମଣୀ ଥିଲା । ପିତାମହ ବ୍ରହ୍ମାଙ୍କର ଆଜ୍ଞା ଫଳରେ ସେ ମର୍ତ୍ତ୍ୟକୁ ଆସିଥିଲେ । ଅତଏବ ତାଙ୍କ ସହିତ ପାଣିଗ୍ରହଣ କରିବା ଶାସ୍ତ୍ରୀୟ ବିଧି ଅନୁସାରେ ବିହିତ ଥିଲା । ଯଦି ମର୍ତ୍ତ୍ୟଲୋକର ପର ଭୋଗ୍ୟା ଲଳନା ସହିତ କେହି ବିବାହ କରେ, ତେବେ ତାର ସନ୍ତାନ ଦ୍ୱାରା ଦିଆ ଯାଉଥିବା ପିଣ୍ଡ ଏବଂ ଜଳ ପିତୃପୁରୁଷଙ୍କୁ ପ୍ରାପ୍ତ ହୁଏ ନାହିଁ । ଧାର୍ମିକ ସନ୍ତାନ ନ ହୋଇ କେବଳ ବୈଷୟିକ ସନ୍ତାନ ଭାବରେ ନିଆଯାଏ ।"

ଏହା ଶୁଣି ରାଜା ପଚାରିଲେ – "ହଁ, ତେବେ ଭଗବନ୍ ! ମହାରାଜ ଆଗ୍ନୀଧ୍ରଙ୍କର ପୂର୍ବଚିତ୍ତିଙ୍କ ଦ୍ୱାରା କେତୋଟି ସନ୍ତାନ ହେଲେ ?"

ଏହା ଶୁଣି ଶୁକଦେବ କହିବାକୁ ଲାଗିଲେ – "ମହାରାଜ ! ଯେତେବେଳେ ପୂର୍ବଚିତ୍ତି ସହିତ ଆନନ୍ଦରେ ବିବାହ କରି କେତେବର୍ଷ ବିତିଗଲା, ତାଙ୍କର ଗର୍ଭରୁ କ୍ରମଶଃ ବଡ ପରାକ୍ରମୀ ସୁରବୀର ଦୃଢ଼ ପ୍ରତିଜ୍ଞ, ଏବଂ ପରମ ଯଶସ୍ୱୀ ନଅପୁତ୍ର ଉତ୍ପନ୍ନ ହେଲେ, ସେମାନଙ୍କର ନାମ – ନାଭି, କିଂପୁରୁଷ, ହରିବର୍ଷ, ଇଳାବୃତ, ରମ୍ୟକ, ହିରଣ୍ୟମୟ, କୁରୁ, ଭଦ୍ରାଶ୍ୱ ଏବଂ କେତୁମାଳ ଥିଲେ ।

ଜଣାଯାଏ ଯେ ଯେତେବେଳେ ଜ୍ୟେଷ୍ଠ ସନ୍ତାନକୁ ସମ୍ପୂର୍ଣ୍ଣ ରାଜ୍ୟ ଦେବାର ପ୍ରଥା ପ୍ରଚଳନ ନଥିଲା । ଏହି ହେତୁ ରାଜା ଅଗ୍ନୀଧ୍ର ଏହି ଜମ୍ବୁଦ୍ୱୀପକୁ ନଅଭାଗ କରିଦେଲେ ଏବଂ ଏହି ନଅ ଖଣ୍ଡରେ ଆପଣାର ନଅ ପୁତ୍ରକୁ ରାଜସିଂହାସନରେ ଅଭିଷିକ୍ତ କଲେ । ଏହିହେତୁ ଜମ୍ବୁଦ୍ୱୀପ ହୋଇଗଲା ନଅଖଣ୍ଡ । ଏହି ନଅଖଣ୍ଡ ଆଗ୍ନୀଧ୍ରଙ୍କ ନଅପୁତ୍ରଙ୍କ ନାମରେ ବିଖ୍ୟାତ ହେଲା । ଯେପରି ନାଭିଖଣ୍ଡ, କିଂପୁରୁଷ ଖଣ୍ଡ, ହରିବର୍ଷ ଖଣ୍ଡ, ଇଳାବୃତ ଖଣ୍ଡ, ରମ୍ୟକ ଖଣ୍ଡ, ହିରଣ୍ୟମୟ ଖଣ୍ଡ, କୁରୁଖଣ୍ଡ, ଭଦ୍ରାଶ୍ୱ ଖଣ୍ଡ, ଏବଂ କେତୁମାଳ ଖଣ୍ଡ । ଯେଉଁ ଖଣ୍ଡରେ ଆମ୍ଭେମାନେ ବସିଛେ ତାହା ହେଉଛି ଅଜନାଭ ଖଣ୍ଡ ବା ବର୍ଷ । ଯେତେବେଳେ ନାଭିଙ୍କର ପୁତ୍ର ଭରତ ହେଲେ ସେହିଠାରୁ ତାହା ଭରତ ଖଣ୍ଡ ବା ଭାରତବର୍ଷ ନାମରେ ପ୍ରସିଦ୍ଧ ହେଲା ।

ଏହି ପ୍ରକାର ସର୍ବରେ ସେହି ଅପ୍ସରା କ୍ରମଶଃ ନଅପୁତ୍ରଙ୍କୁ ଜନ୍ମ ଦେଇ ଘରେ ହିଠାରୁ ବ୍ରହ୍ମଲୋକକୁ ଅନ୍ତର୍ଦ୍ଧାନ ହୋଇଗଲେ । ସେ ବ୍ରହ୍ମାଙ୍କ ଆଜ୍ଞାରେ

ଆଗ୍ନୀଧଙ୍କ ବଂଶ ପରମ୍ପରାକୁ ବୃଦ୍ଧି କରିବା ପାଇଁ ଆସିଥିଲେ । ତାଙ୍କର ଶରୀରରୁ ପୃଥିବୀର ନାରୀମାନଙ୍କ ପରି ସ୍ୱେଦ ନିର୍ଗତ ହେଉ ନଥିଲା, ବା କୌଣସି ପ୍ରକାର ଦୁର୍ଗନ୍ଧ ବାହାରୁ ନଥିଲା, ପୃଥିବୀରେ ରହି ମଧ୍ୟ ସେ ଅନ୍ନବ୍ୟଞ୍ଜନ ସେବନ କରୁ ନଥିଲେ । କେବଳ ଘୃତପାନ କରୁଥିଲେ । ତାଙ୍କର ଯେଉଁ ପୁତ୍ର ହେଲେ ସେମାନେ ତାଙ୍କର ଅମୃତ ପାନକରି ମାତୃସମ୍ବନ୍ଧ ହେତୁ ଅତ୍ୟନ୍ତ ବଳଶାଳୀ ଏବଂ ସୁଦୃଢ଼ ଶରୀର ହୋଇଥିଲେ । ସେମାନେ ପିତାଙ୍କ ଦ୍ୱାରା ଦିଆ ଯାଇଥିବା ଭୂଖଣ୍ଡମାନଙ୍କରେ ସୁଖରେ ରାଜ୍ୟ ଭୋଗ କରିବାକୁ ଲାଗିଲେ ।

ଯେତେବେଳେ ପୂର୍ବଚିତ୍ତି ରାଜାଙ୍କୁ ଛାଡ଼ି ବ୍ରହ୍ମଲୋକକୁ ଚାଲିଗଲେ, ରାଜା ତାଙ୍କର ବିରହରେ ଅତ୍ୟନ୍ତ ଅଧୀର ହୋଇ ଉଠିଲେ, କାରଣ ଏପର୍ଯ୍ୟନ୍ତ ସେ ଭୋଗ ବିଳାସରେ ତୃପ୍ତ ହୋଇ ନଥିଲେ । ପୂର୍ବଚିତ୍ତିଙ୍କର ସୌନ୍ଦର୍ଯ୍ୟରେ ତାଙ୍କର ହୃଦୟ ଏତେ ମାତ୍ରାରେ ବିଚଳିତ ହୋଇଥିଲା ଯେ ତାଙ୍କୁ ସମ୍ପୂର୍ଣ୍ଣ ସଂସାର ଶୂନ୍ୟ ଅନୁଭୂତ ହେଉଥିଲା । ତାଙ୍କର ପ୍ରତ୍ୟେକ ବୈଦିକ କାର୍ଯ୍ୟ ନିୟମିତ ଭାବରେ ଚାଲିଥିଲା । ସେ ରାତିଦିନ କେବଳ ସେହି ଅପ୍ସରା ଚିନ୍ତାରେ ହିଁ ନିମଗ୍ନ ରହୁଥିଲେ । ତାଙ୍କରି କଥା ଚିନ୍ତା କରି କରି ସେ ତାଙ୍କର ଏହି ପଞ୍ଚଭୌତିକ ଶରୀରକୁ ତ୍ୟାଗ କଲେ । ଶେଷ ସମୟରେ ମଧ୍ୟ ସେ ଅପସରାଙ୍କ କଥା ଚିନ୍ତା କରି କରି ମୃତ୍ୟୁମୁଖରେ ପଡ଼ିଲେ, ସେହି ଅପ୍ସରାଙ୍କୁ ଚିନ୍ତା କରିଥିବା ହେତୁ ତାଙ୍କର ଦିବ୍ୟଲୋକ ପ୍ରାପ୍ତ ହେଲା । ସେ ସକାମ କାର୍ଯ୍ୟ କରୁଥିବା ଲୋକମାନଙ୍କ ମଧ୍ୟକୁ ଚାଲିଗଲେ ।

ପିତାଙ୍କର ପରଲୋକ ଗମନପରେ ସବୁ ଭାଇ ଜମ୍ବୁଦ୍ୱୀପର ପ୍ରଜାମାନଙ୍କୁ ଅତ୍ୟନ୍ତ ସ୍ନେହଶୀଳ ଭାବେ ପାଳନ କରିବାକୁ ଲାଗିଲେ ।

ଏହା ଶୁଣି ମହାରାଜ ପରୀକ୍ଷିତ କହିଲେ—ପ୍ରଭୋ ! ମୁଁ ମହାରାଜ ଆଗ୍ନୀଧ୍ରଙ୍କ ପୁତ୍ରମାନଙ୍କର ବୃତ୍ତାନ୍ତ ଜାଣିବାକୁ ଇଚ୍ଛା କରେ । ଦୟାକରି ସେହି ରାଜର୍ଷି ବଂଶର ବର୍ଣ୍ଣନା ମୋ ଆଗରେ କରନ୍ତୁ ।"

ରାଜାଙ୍କର ଜିଜ୍ଞାସାକୁ ଦେଖି ଶ୍ରୀ ଶୁକଦେବ କହିବାକୁ ଲାଗିଲେ—'ରାଜନ ! ମହାରାଜ ଆଗ୍ନୀଧ୍ରଙ୍କର ସବୁ ପୁତ୍ରମାନେ ଥିଲେ ବଡ ତେଜସ୍ୱୀ । ସେମାନଙ୍କର ଚରିତ୍ର ମଧ୍ୟ ଅତ୍ୟନ୍ତ ସୁନ୍ଦର ଥିଲା । ସେମାନଙ୍କଠାରେ ଭଗବାନ ନରରୂପ ଧାରଣ କରି ଜନ୍ମଲାଭ କରିଥିଲେ । ଯାହାଙ୍କର ଯଶଗୌରବ ଏପର୍ଯ୍ୟନ୍ତ ସମଗ୍ର ପୃଥିବୀକୁ ବ୍ୟାପୀ ରହିଛି, ମୁଁ ପ୍ରଥମେ ମହାରାଜା ନାଭିଙ୍କର ବୃତ୍ତାନ୍ତ ବର୍ଣ୍ଣନା କରିବି । ଆପଣ ଏହାକୁ ଅତ୍ୟନ୍ତ ଧୀରସ୍ଥିର ଚିତ୍ତରେ ଶ୍ରବଣ କରନ୍ତୁ ।"

## ଛପ୍ପୟ

"ନାଭି ଅର କିଂପୁରୁଷ ଇଲ୍‌ବୃତ ରମ୍ୟକ କୁରୁ-ସୁତ ।
କେତୁମାଲ ଭଦ୍ରାଶ୍ୱ ହିରଣ୍ୟମୟ ଭୟେ ଧର୍ମୟୁତ ।।
ବର୍ଷାଧିପ ହରିବର୍ଷ ଭୟେ ନୌ ପରମ ଯଶସ୍ୱୀ ।
ନୌ ଖଣ୍ଡନ କେ ଭୂପ ମନସ୍ୱୀ ଅତି ତେଜସ୍ୱୀ ।।
ପୂର୍ବଚିତ୍ତି ତବ ଛାଡ଼ି ସୁତ, ତୁରତ ଗଇଁ ନିଜ ଲୋକମହଁ ।
ରାଜା ଅତି ଆକୁଲ ଭୟେ, ଗା ପ୍ରମଦା କେ ଶୋକମହଁ ।।"



# ମହାରାଜ ନାଭିଙ୍କର ଚରିତ

ବ୍ରହ୍ମଣ୍ୟୋଽନ୍ୟ କୁତୋ ନାଭେ ର୍ବିପ୍ରା ମଙ୍ଗଳପୂଜିତାଃ ।
ଯସ୍ୟ ବର୍ହିଷି ଯଜ୍ଞେଶଂ ଦର୍ଶୟାମା ସୁରୋଜସା ।

(ଭାଗବତ ୫ମ ସ୍କନ୍ଧ ୪ର୍ଥ ଅଧ୍ୟାୟ ୭ମ ଶ୍ଳୋକ)

## ଛପ୍ପୟ

କାମ୍ୟ କର୍ମ କରି ନୃପତ ପୁଣ୍ୟ ପରଲୋକ ପଧାରିଲ ।
ନାଭି ବର୍ଷାଧିଶ ଭୟେ ଅତ ପ୍ରଜହିଁ ପଯ୍ୟାତର ।।
ମେରୁ ସୁତା ନୌ ହୃତୀ ଶବାହୀ ତନକେ ସଁଗ ମହିଁ ।
ମେରୁ ଦେବୀ ପଣ ନାଭିପାଇ ପ୍ରଭୃଦତ ଅତ ମନ ମହିଁ ।।
ପୁତ୍ର ହେତୁ ମଖ ନାଭିନେ, ରଚେଥ୍ୟା ବସ୍ତୁ ଦରଶନ ଦୟେ ।
ସହସା ପ୍ରଭୁ ଦରଶନ ଭୟେ, ସବ ସଭ୍ରମ ମହିଁ ଘର ଗୟେ ।।

ଶାସ୍ତ୍ରକାରମାନେ କାମର ବଡ ନିନ୍ଦା କରି ଅଛନ୍ତି । ମାତ୍ର ଶାସ୍ତ୍ର ବିହିତ କାମ, ଧର୍ମକୁ ଅବଧାରଣା କରୁଥିବା କାମ ଶାସ୍ତ୍ର ସମ୍ମତ ଅଟେ । ବ୍ୟାସ ବାରମ୍ବାର ହାତ ଉଠାଇ ପାଟିକରି କହିଛନ୍ତି, "ଆରେ ଭାଇ ! ତୁମେ ମୋର କଥା କାହିଁକି ନ ଶୁଣୁଛ । ମୁଁ ତୁମକୁ କାମବାସନା ଚରିତାର୍ଥ ନ କରିବା ପାଇଁ କହୁନାହିଁ ମୁଁ ଏହା ମଧ୍ୟ କହୁନାହିଁ ଯେ ତୁମେ ପଇସା ପାଖରେ ନଥିବା ବାବାଜୀ ହୋଇଯାଅ । ତୁମେ କାମ ଅର୍ଥ ଉପାର୍ଜନ କର ମାତ୍ର ଧର୍ମଦ୍ୱାରା ପ୍ରାପ୍ତ ହୋଇଥିବା ଅର୍ଥ ଏବଂ କାମ ସ୍ୱର୍ଗପ୍ରଦ ଅଟେ । ଧର୍ମ ସହିତ କାମ ନରକକୁ ନେଇଯାଏ । ସ୍ତ୍ରୀ କାମନା ହେଲା, ତେବେ ବିବାହ କର, ଧର୍ମପୂର୍ବକ ତାକୁ ନିଜର

ପତ୍ନୀ ବା ସହଧର୍ମିଣୀଙ୍କର । ପୁତ୍ର କାମନା କରୁଛ ଯଦି ବେଦବିଧାନ ଅନୁସାରେ ଭଗବାନଙ୍କର ଉପାସନା କର ? ତାଙ୍କୁ ପୁତ୍ର ପାଇଁବା ପାଇଁ ପ୍ରାର୍ଥନା କର । ତୁମର ଅର୍ଥର ଅଭାବ ଅଛି, ତା ବ୍ୟତୀତ ଗୃହସ୍ଥ ଲୋକର ସଂସାର ଚଳିପାରିବ ନାହିଁ, ତେବେ ସମ୍ପୂର୍ଣ୍ଣ ଧନର ଅଧୀଶ୍ୱର ଶ୍ରୀ ହରିଙ୍କୁ ମାଗ । ତାଙ୍କ ଶରଣରେ ଯାଉଥିବା ଲୋକର କୌଣସି ପଦାର୍ଥ ଦୁର୍ଲ୍ଲଭ ରହିବ ନାହିଁ । ତାଙ୍କ ପାଇଁ ସବୁ ସହଜ ହୋଇଯିବ ।

ମହାମୁନି ଶୁକଦେବ କହିଲେ—"ରାଜନ ! ପରଲୋକରେ ମହାରାଜ ଆଗ୍ନୀଧ୍ର ପୁଣି ନିଜର ପ୍ରିୟ ପତ୍ନୀ ପୂର୍ବଚିତ୍ତିକୁ ହିଁ ପ୍ରାପ୍ତହେଲେ । ଯେଉଁ ଲୋକରେ ପିତୃଗଣ ନିଜର ପୁଣ୍ୟବଳରୁ ଉପଭୋଗ ପ୍ରାପ୍ତ ହୋଇ ନିବାସ କରନ୍ତି, ତାହାକୁ ମହାରାଜ ଆଗ୍ନୀଧ୍ର ଚାଲି ଯାଇଥିଲେ । ପିତାଙ୍କର ପରଲୋକ ଗମନ ପରେ ନାଭି ରାଜା ଆସନ ଅଳଂକୃତ କଲେ; ମାତ୍ର ରାଣୀଙ୍କ ବ୍ୟତୀତ ସିଂହାସନ ଅଧାଶୂନ୍ୟ ଥିଲା । ପୁରୁଷ ଏକା ଏକା ପୁରୁଷ ହୁଏ ନାହିଁ । ସ୍ତ୍ରୀକୁ ମିଶାଇ ତାହାକୁ ସମ୍ପୂର୍ଣ୍ଣ ପୁରୁଷ କୁହାଯାଏ । ଏଇଥିପାଇଁ ପୁରୁଷ ଶବ୍ଦ ସମସ୍ତଙ୍କ ନିମିତ୍ତ ବ୍ୟବହୃତ ହୁଏ । ପତ୍ନୀକୁ ଏଇଥିପାଇଁ ଶାସ୍ତ୍ରକାରମାନେ ଅର୍ଦ୍ଧାଙ୍ଗିନୀ କହିଅଛନ୍ତି । ବ୍ରହ୍ମା ମଧ୍ୟ ସୃଷ୍ଟିର ଆଦ ସମୟରୁ ନିଜର ଶରୀରକୁ ଦୁଇଭାଗ କରି ଦେଇଥିଲେ । ବାମଭାଗରୁ ସ୍ତ୍ରୀ ଓ ଦକ୍ଷିଣ ଭାଗରୁ ପୁରୁଷ ଜନ୍ମନେଲେ । ଏଇଥିପାଇଁ ସ୍ତ୍ରୀଙ୍କୁ ଦେବତା ଓ ରାଜାମାନେ ସବୁବେଳେ ବାମପାର୍ଶ୍ୱରେ ରଖିଥାଆନ୍ତି ।

ମହାରାଜା ଆଗ୍ନୀଧ୍ରଙ୍କର ନଅଜଣ ରାଜକୁମାର ବିଚାର କଲେ ଯେପରି ଆମେ ଗୋଟିଏ ବାପର ପୁଅ, ସେହିପରି ତାହାର ନଅଜଣ କନ୍ୟାଙ୍କୁ ଆମେ ଜ୍ୟେଷ୍ଠତ୍ୱ ଅନୁସାରେ କ୍ରମାନୁଯାୟୀ ବାଣ୍ଟିନେଇ ପାରିବା । ଅନୁସନ୍ଧାନ କରିବାରୁ ସେମାନେ ଜାଣିଲେ ଯେ ମେରୁ ପ୍ରଜାପତିଙ୍କର ନଅଜଣ କନ୍ୟା ଅଛନ୍ତି ଏବଂ ସମସ୍ତେ ବିବାହଯୋଗ୍ୟା । ତାପରେ ଆଉ କିଛି ଭାବିବାର ନଥିଲା; କଥା ଠିକ୍ ହୋଇଗଲା । ସବୁ ଭାଇମାନେ ଯଥାବିଧି କନ୍ୟାମାନଙ୍କ ସହିତ ବିବାହ କଲେ । ସମସ୍ତଙ୍କଠାରୁ ବଡ ନାଭି ମେରୁଦେବୀଙ୍କ ସହିତ ବିବାହ କଲେ ।

ଦ୍ୱିତୀୟ କୁମାର କିଂପୁରୁଷ ପ୍ରତିରୂପାଙ୍କର ପାଣିଗ୍ରହଣ କଲେ । ତୃତୀୟ ପୁତ୍ର ହରିବର୍ଷ ଉଗ୍ରଦଂଷ୍ଟ୍ରୀଙ୍କୁ ଗ୍ରହଣକଲେ । ଚତୁର୍ଥ ପୁତ୍ର ଇଳାବୃତ ଲତାକୁ ବରଣ କଲେ । ପଞ୍ଚମ ରମ୍ୟକଙ୍କର ରାଣୀ ହେଲେ ରମ୍ୟା । ଷଷ୍ଠ ହିରଣ୍ମୟଙ୍କ ଶ୍ୟାମାଙ୍କୁ ସହଧର୍ମିଣୀ-ରୂପେ ଗ୍ରହଣ କଲେ । ସପ୍ତମ କୁରୁ ନାରୀଙ୍କୁ ଅଗ୍ନି ସାକ୍ଷୀରଖି ବିବାହ କଲେ । ଅଷ୍ଟମ ଭଦ୍ରାଶ୍ୱ ଭଦ୍ରାଙ୍କ ସହିତ ପରିଣୟ କଲେ, ଏବଂ ନବମ କେତୁମାଳ ଦେବବୀତ ସହିତ, ସମସ୍ତଙ୍କର ବିଧି ପୂର୍ବକ ବିବାହ ସମ୍ପନ୍ନ ହେଲା ।"

ରାଜା ପରୀକ୍ଷିତ ପଚାରିଲେ,—"ଭଗବନ୍ ! ନଅଜଣ ଯଶସ୍ୱୀ ରାଜାମାନଙ୍କର କଥା ମୋତେ ଶୁଣାନ୍ତୁ ।

ଏହା ଶୁଣି ଭଗବାନ ଶୁକ କହିଲେ—"ହେ ଭରତର୍ଷଭ ! ଯଦି ମୁଁ ସମସ୍ତଙ୍କର କଥା ବିଶଦ ଭାବେ ବର୍ଣ୍ଣନ କରିବି ତେବେ ସେଥିରେ ହିଁ ସମସ୍ତ ସରିଯିବ । ସମସ୍ତ ମାତ୍ର ସାତଦିନ । ଅତଏବ ଅତ୍ୟନ୍ତ ସଂକ୍ଷେପରେ ମୁଁ ସେମାନଙ୍କ କଥା ଶୁଣାଇବି । ପ୍ରଥମେ ମହାରାଜ ନାଭିଙ୍କର ଚରିତ ଶୁଣନ୍ତୁ ।

ପିତାଙ୍କର ପରଲୋକ ଗମନ ପରଠାରୁ ମହାରାଜ ନାଭି ଜମ୍ବୁଦ୍ୱୀପର ନାଭିବର୍ଷ ଭାରତବର୍ଷକୁ ଧର୍ମ ଅନୁସାରେ ଶାସନ କରିବାକୁ ଲାଗିଲେ । ସେ ନିଜର ପ୍ରଜାମାନଙ୍କୁ ପୁତ୍ର ପରି ପାଳନ କରୁଥିଲେ । ପ୍ରଜାମାନଙ୍କର ତାଙ୍କପ୍ରତି ଅତ୍ୟନ୍ତ ଅନୁରାଗ ଥିଲା, ତାଙ୍କୁ ସଂସାରର ସମସ୍ତ ଭୋଗ ପ୍ରାପ୍ତ ହୋଇଥିଲା । ମାତ୍ର ତାଙ୍କର ଥିଲା ଗୋଟିଏ ଦୁଃଖ ଯେଉଁଥିପାଇଁ ସେ ସଦାସର୍ବଦା ଚିନ୍ତିତ ରହୁଥିଲେ । ତାଙ୍କର ଗୋଟିଏହେଲେ ପୁତ୍ର ନଥିଲେ, ଯେ ତାଙ୍କପରେ ପ୍ରଜାମାନଙ୍କୁ ପାଳନକରି, ପିତୃ ପୁରୁଷ ମାନଙ୍କୁ ପିଣ୍ଡ ଦାନକରି ପାରିବେ । ଶ୍ରୀ ହରିଙ୍କର ଆରାଧନାରେ ମଣିଷର, ପ୍ରତ୍ୟେକ ଇଚ୍ଛା ପୂର୍ଣ୍ଣ ହୋଇପାରେ, ଭାବି ସେ ଯଜ୍ଞପତି ଭଗବାନ ବିଷ୍ଣୁଙ୍କୁ ବୈଦିକ ଯଜ୍ଞ ମାଧ୍ୟମରେ ଆରାଧନା କରିବାକୁ ଲାଗିଲେ । କେହି କେହି ଭାବନ୍ତି ଯେ ଭଗବାନ ଯଜ୍ଞ କର୍ମର ଅଧୀନ, ଅର୍ଥାତ୍ ଯଜ୍ଞ ଦ୍ୱାରା ତାଙ୍କୁ ବଶକରି ଯିଏ ଯାହା ଚାହିଁବ ତାହା କରି ପାରିବ; କିନ୍ତୁ ଏହା ଠିକ୍ ନୁହେଁ । ସଂସାରରେ ସବୁଠାରୁ ବଡ଼ ହେଉଛି ଧନ । ଏହି ଧନକୁ ଶ୍ରଦ୍ଧାର ସହ ଯିଏ ସତ୍କାର୍ଯ୍ୟରେ ଲଗାଏ, ତାହାର ବିଶୁଦ୍ଧ ଭକ୍ତିରେ ପ୍ରଭାବିତ ହୋଇ ଭଗବାନ ତା ଉପରେ ଅନୁଗ୍ରହ କରିଥାନ୍ତି । ସେ ଯଜ୍ଞର ବଶ ନୁହନ୍ତି, ଭକ୍ତର ବଶତା ସ୍ୱୀକାର କରନ୍ତି । ସେ ଦ୍ରବ୍ୟ, ଦେଶ, କାଳ, ମନ୍ତ୍ର, ଋତ୍ୱିକ, ଦକ୍ଷିଣା ଏବଂ ବିଧିପୂର୍ବକ ସପ୍ତଅଙ୍ଗ ସମ୍ପନ୍ନ ଶ୍ରଦ୍ଧାହୀନ ବଡ଼ ବଡ଼ ଯଜ୍ଞରେ ପ୍ରାପ୍ତ ହୁଅନ୍ତି ନାହିଁ । ଯଦି ଭକ୍ତିଭାବରେ ଶ୍ରଦ୍ଧାପୂର୍ବକ କେହି, ଚଳୁଏ ମାତ୍ର ଜଳ ଅର୍ପଣ କରେ, ତେବେ ତା ସମ୍ମୁଖରେ ପ୍ରକଟ ହୋଇଯାନ୍ତି । ଏଇଥିପାଇଁ ଭଗବାନଙ୍କୁ ଭକ୍ତବତ୍ସଳ କୁହାଯାଏ । ମହାରାଜ ନାଭି ଅତ୍ୟନ୍ତ ଭକ୍ତିଭାବରେ ଯଜ୍ଞ କରୁଥିଲେ । ଯଜ୍ଞ କାର୍ଯ୍ୟରେ ଲାଗି ମଧ୍ୟ ସେ ସଦାସର୍ବଦା ଯଜ୍ଞପତିଙ୍କୁ ଚିନ୍ତନ କରୁଥିଲେ । ଏହି ମହାଯଜ୍ଞ ସମୟରେ 'ପ୍ରବର୍ଗ୍ୟ' ନାମକ କର୍ମ ଅନୁଷ୍ଠାନ ସମୟରେ ଭକ୍ତବତ୍ସଳ ଭଗବାନ ସାକାରରୂପରେ ତାଙ୍କ ସମ୍ମୁଖରେ ପ୍ରକଟହେଲେ । ସେ ସମୟରେ ତାଙ୍କର ଅତ୍ୟନ୍ତ ସୁନ୍ଦର ମନୋହର ମୂର୍ତ୍ତି ମନ ଏବଂ ନୟନକୁ ଅତ୍ୟନ୍ତ ଆନନ୍ଦିତ କରୁଥିଲା । ତାଙ୍କର ସମସ୍ତ ଅଙ୍ଗ ସୁନ୍ଦର ସୁକୋମଳ, ଏବଂ ସୌନ୍ଦର୍ଯ୍ୟମୟ ଥିଲା । ଚାରି ହାତରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ପ୍ରିୟତମ ଆୟୁଧମାନ ଶୋଭା-

ପାଉଥିଲେ । ବକ୍ଷସ୍ଥଳରେ ମନମୋହକ ଶ୍ରୀବତ୍ସ ଲାଞ୍ଛନ ଶୋଭା ପାଉଥିଲା । ଗଳାରେ ବନମାଳା, ହାର ଏବଂ କୌସ୍ତୁଭମଣି ଚମକୁଥିଲା । ମୁଣ୍ଡ ମୁକୁଟ, କାନରେ କୁଣ୍ଡଳ କଟୀରେ କର୍ଦ୍ଧନୀ ଏବଂ କଟୀସୂତ୍ର, ହସ୍ତରେ ଭୁଜବନ୍ଧ ଏବଂ ଚରଣରେ ନୂପୁର ରୁଣ୍ଟୁଣୁ ବାଜୁଥିଲେ ।

ଯଜ୍ଞରେ ହଠାତ୍ ଯଜ୍ଞପତିଙ୍କର ଆବିର୍ଭାବ ଦେଖି ସମସ୍ତ ଋତ୍ୱିକ୍, ହୋତା ଉଦ୍‌ଗାତା, ସଭ୍ୟ, ସଦସ୍ୟ, ମନ୍ତ୍ରମାନେ ଏବଂ ଯଜମାନ ଇତ୍ୟାଦି ଶୋଷାର୍ତ୍ତ ପାଣିକୁ ଦେଖି, ବୁଭୁକ୍ଷିତ ଭୋଜନକୁ ଦେଖି, ଶୀତାର୍ତ୍ତ ଅଗ୍ନିକୁ ଦେଖି, କାମୀ କାମିନୀକୁ ଦେଖି, କୃପଣ ଧନକୁ ଦେଖି, ଯାତ୍ରୀ ଯାନରେ ସ୍ଥାନକୁ ଦେଖି, ସମ୍ବାଦ ଦାତା ଅତ୍ୟନ୍ତ ଚମତ୍କାର ଘଟଣାକୁ ଦେଖି, ବନ୍ଦୀ ନିଜ ଲୋକମାନଙ୍କର ପତ୍ରକୁ ଦେଖି, ପରୀକ୍ଷା ଦେଇଥିବା ଛାତ୍ର ଉତ୍ତୀର୍ଣ୍ଣ ଶ୍ରେଣୀରେ ନିଜର ନାମ ଦେଖି, ଅପୁତ୍ରିକ କୌଣସି ପ୍ରକାରେ ନିଜ ଘରେ ପୁତ୍ର ହେବାର ଦେଖି ଏବଂ ନିର୍ଦ୍ଧନ ବ୍ୟକ୍ତି ଧନରାଶିକୁ ଦେଖି ପ୍ରସନ୍ନ ହେବାପରି ଅତ୍ୟନ୍ତ ପ୍ରସନ୍ନ ହେଲେ । ଯଜମାନ ଶ୍ରଦ୍ଧାର ସହ ମୁଣ୍ଡ ନୁଆଁଇ ଯଜ୍ଞେଶ୍ୱରଙ୍କର ସମସ୍ତ ସାମଗ୍ରୀକୁ ନେଇ ବିଧିବତ୍ ପୂଜା କରିବାକୁ ଲାଗିଲେ ।

ପୂଜା ପରେ ସମସ୍ତ ଋତ୍ୱିକଗଣ ନାନା ଶାସ୍ତ୍ର ଦ୍ୱାରା ପରମପୁରୁଷ ପ୍ରଭୁଙ୍କର ସ୍ତୁତି କରିବାକୁ ଲାଗିଗଲେ—"ଋତ୍ୱିକ୍ମାନେ କହିଲେ—"ପ୍ରଭୋ ! ଆପଣ ପରମ ପୂଜନୀୟ । ଆମ୍ଭେ ଆପଣଙ୍କର ଅନୁଗତ ଭକ୍ତ ଆମର ଆପଣଙ୍କୁ ଯଥାଯୋଗ୍ୟ ଭକ୍ତି ସହିତ ପୂଜା କରିବା ଆବଶ୍ୟକ । କିନ୍ତୁ ଆପଣ ଯେତେ ଶ୍ରେଷ୍ଠ, ସେତିକି ଶ୍ରେଷ୍ଠ ସାମଗ୍ରୀ ଆମେ କେଉଁଠୁ ଆଣିବୁ ? ପୂଜାର ଏତେ ବିଧିବିଧାନ ଆମେ କେମିତି ପ୍ରସ୍ତୁତ କରିବୁ ? ତେଣୁ କେବଳ ଶ୍ରଦ୍ଧା ସହିତ ଆପଣଙ୍କର ଏହି ପୁଣ୍ୟ ପାଦପଦ୍ମରେ ବାରମ୍ବାର ପ୍ରଣାମ କରୁଛୁ ।"

ଭଗବାନ ଏହା ଶୁଣି ହସି ଦେଇ କହିଲେ—"ଠାକୁର ବ୍ରାହ୍ମଣମାନେ ଦୂରରୁ ଦଣ୍ଡବତ ପକାଇ ପଳାଇବାକୁ ବସିଛ, କିଛି ଧୂପ, ଦୀପ, ନୈବେଦ୍ୟ, ତାମ୍ବୁଳ, ପୁଷ୍ପଫଳ ଦକ୍ଷିଣା ଇତ୍ୟାଦି ଦେବା ଉଚିତ ।"

ଋତ୍ୱିକମାନେ କହିଲେ,--"ହେ ପୂଜ୍ୟତମ ! ଆପଣଙ୍କୁ ଏହି ପ୍ରାକୃତିକ ପଦାର୍ଥରେ ପୂଜା କଲେ ଏହା ମଧ୍ୟ ହାସ୍ୟାସ୍ପଦ ହେବ; କାରଣ ଆପଣ ପ୍ରକୃତିର ଊର୍ଦ୍ଧ୍ୱରେ । ଉତ୍ତମ ପୂଜା ନକରି ଆପଣଙ୍କର ମଙ୍ଗଳମୟ ଦିବ୍ୟଗୁଣର କେବଳ ଗାନକଲେ ମଧ୍ୟ ଶୋଭାମୟ ହୋଇ ପାରିବ ନାହିଁ ।"

ଭଗବାନ କହିଲେ—'ତାହା ନାହିଁକି, କିଭ ତୁମ ଘରର ଗୁଣଗାନ କରିବାରେ ନାହିଁକି ଲାଗି ଯାଉଛ ?"

ଋତ୍ୱିଜମାନେ କହିଲେ—"ମହାରାଜ ! କିଛି ତ ଲାଗୁନାହିଁ ମାତ୍ର କଣ ବା ଲାଗିବ ! କାରଣ ଆପଣ ପ୍ରାକୃତ ବୁଦ୍ଧିର । ପ୍ରକୃତି ପୁରୁଷର ଊର୍ଦ୍ଧ୍ୱରେ ପରମେଶ୍ୱର ଅଟନ୍ତି । ଆମର ବୁଦ୍ଧି ମାୟା ଭିତରେ ହଜିଯାଇଛି । ମିଥ୍ୟାଠାରୁ ସର୍ବସ୍ୱତନ୍ତ୍ର ମାୟାରୁ ଭିନ୍ନ ମାୟାପତିଙ୍କୁ ଆମର ପ୍ରାକୃତିକ ଲୌକିକ ବୁଦ୍ଧି କିପରି ଭାବରେ ବର୍ଣ୍ଣନା କରି ପାରିବ ? ପ୍ରାକୃତ ରୂପରୁ ପୃଥକ ପରମେଶ୍ୱରଙ୍କର ସତ୍ସ୍ୱରୂପ ଏବଂ ଦିବ୍ୟ ନାମରୂପ କିପରି ନିରୂପଣ କରି ପାରିବ ?

ଭଗବାନ କହିଲେ,—"ମୋର ଭକ୍ତବତ୍ସଳତା ଜଗତରେ ବିଖ୍ୟାତ, ତାର ବର୍ଣ୍ଣନା କରି ପାରିବେ ।"

ଋଷିମାନେ କହିଲେ—"ଭଗବନ୍ ! ଏହା ଠିକ କଥା, ଆପଣଙ୍କର କିଛି କାର୍ଯ୍ୟ ଆମେ ଜାଣିଛୁ, ଆପଣଙ୍କର ସେତିକି ମାତ୍ର ଗୁଣ ଅଛି କିନ୍ତୁ ସେକଥା ନୁହେଁ, ସମୁଦ୍ରର ଏକ ବିନ୍ଦୁ ମଧ୍ୟ ସମୁଦ୍ରପରି ଗୁଣଯୁକ୍ତ ଅଟେ ମାତ୍ର ଏହି ବିନ୍ଦୁ ସମୁଦ୍ରର ଅଳ୍ପ ସ୍ଥାନରେ ରହିଛି, ଏହି ହେତୁ ଆମେ ଆପଣଙ୍କର ଯେ କୌଣସି ଗୁଣକୁ ବର୍ଣ୍ଣନା କଲେ ମଧ୍ୟ ଏହା ସିନ୍ଧୁର ବିନ୍ଦୁ ପରି ଏକଦେଶୀୟ ହେବ । ଏଣେ ଅସମର୍ଥ ହେଲେ ବି ଆପଣ ଭକ୍ତ ଉପରେ କୃପାକରି ତାହାର ଖଣ୍ଡି ଆଖାବରି ସ୍ତୁତିରେ ସନ୍ତୋଷ ପ୍ରକାଶ କରନ୍ତି । ସମୁଦ୍ର ସମାନ ସମସ୍ତ ରତ୍ନରାଶିର ସ୍ୱାମୀ ହେଲେ ହେଁ ଆପଣ ଶ୍ରଦ୍ଧାର ସହ ଦିଆ ଯାଇଥିବା ଚଳୁଏ ପାଣିରେ, ତୁଳସୀ ପତ୍ରଟିଏ ପକାଇ ଦେଲେ ସନ୍ତୁଷ୍ଟ ହୋଇଯାନ୍ତି ?"

ଭଗବାନ କହିଲେ—"ବ୍ରାହ୍ମଣମାନେ ! ଆପଣ ସମସ୍ତେ ବେଦଜ୍ଞ, ବୈଦିକ ବିଧିବିଧାନ ସମ୍ପର୍କରେ ଅଭିଜ୍ଞ । ନାନାପ୍ରକାର ସାମଗ୍ରୀ ନେଇ ଶାସ୍ତ୍ରୀୟ ପଦ୍ଧତିରେ ମୋର ପୂଜାର୍ଚ୍ଚନା କରୁଛନ୍ତି ? ଆପଣ ସମସ୍ତଙ୍କର ପୂଜା ମହାନ ଅଟେ ।"

ଋତ୍ୱିଜମାନେ କହିଲେ—"ଭଗବାନ ଆପଣଙ୍କ ପାଇଁ କଣ ବା ମହାନ ଅଟେ । ଆପଣ ସ୍ୱୟଂ ପରମାନନ୍ଦ ସ୍ୱରୂପ । ସମସ୍ତ ପୁରୁଷାର୍ଥମାନଙ୍କର ଦାତା ଆପଣ ଅଟନ୍ତି । ଆପଣଙ୍କର କୌଣସି ପଦାର୍ଥ ପ୍ରତି ସ୍ପୃହା ନାହିଁ । ମାତ୍ର ଆମ୍ଭ ପ୍ରାକୃତ ପୁରୁଷମାନଙ୍କର ହୃଦୟରେ ନାନାପ୍ରକାର ବାସନା ପୁରି ରହିଛି । ଏହି ହେତୁ ଆମେ ସକାମ ଭାବରେ ଆପଣଙ୍କର ପୂଜା କରୁଛୁ, ଇଚ୍ଛା ପୂରଣ ପାଇଁ ଆରାଧନା କରୁଛୁ । ଆପଣ ମଧ୍ୟ ଏତେ ଦୟାର ସାଗର ଯେ, ଆମର କ୍ଷୁଦ୍ରତା, କାମନା, ଇତ୍ୟାଦି ଦୋଷକୁ ଦୃଷ୍ଟି ନଦେଇ ଦୟାବୃଷ୍ଟି କରି ଚାଲି ଯାଉଛନ୍ତି । ମୋକ୍ଷଦାତା ହୋଇ ମଧ୍ୟ ସାମାନ୍ୟ ସାଂସାରିକ ପଦାର୍ଥକୁ ଦେବାପାଇଁ ଆମ ନିକଟରେ ପ୍ରତିଜ୍ଞାତ ହୋଇଛନ୍ତି । ଆଉ ଆମେ ଅଧିକ କଣ କହିବୁ ।"

ଭଗବାନ୍ କହିଲେ—"ଭଲ କଥା, ମୋତେ ତୁମ୍ଭର ଇଚ୍ଛାନୁଯାୟୀ ବରମାଗ ।"

ଋତ୍ୱିକମାନେ କହିଲେ—"ହେ ପ୍ରଭୁ, ଯେତେବେଳେ ଆପଣ ସମସ୍ତ ପୁରୁଷାର୍ଥର ସ୍ୱାମୀ ଆମ ନିକଟରେ ଉପସ୍ଥିତ ଆପଣଙ୍କର ଦର୍ଶନ ପ୍ରାପ୍ତ ହୋଇଅଛୁ, ଆଉ କିଛୁ ମାଗିବା ପାଇଁ ବାକି କ'ଣ ରହିଲା, ତଥାପି··············"

ଭଗବାନ କହିଲେ—"ପୁଣି କ'ଣ ? ସ୍ପଷ୍ଟ ଭାବରେ କୁହ ।"

ଋତ୍ୱିକମାନେ କହିଲେ—"କ'ଣ କହିବୁ ଭଗବନ୍ ! ଆମ୍ଭମାନଙ୍କର ଆନ୍ତରିକ ଇଚ୍ଛାତ ଏହି ଯେ କେଉଁଠାରେ ଝୁଣ୍ଟିପଡ଼ି ପଡ଼ିଯାଉ, ବର୍ଷାର କାଦୁଅ ଭିତରେ ପଶିଯାଉ, ଭୋକରେ ବ୍ୟାକୁଳ ହୋଇଯାଉ, ଶୋଷରେ ଆଉଟି ପାଉଟି ହେଉ, ଆଳସ୍ୟର ବଶବର୍ତ୍ତୀ ହୋଇ ହାଇ ମାରୁ ଅଥବା ଭିନ୍ନ ଭିନ୍ନ ସଂକଟରେ ପଶିଯାଇ ଦୁଃଖୀ ହେଉ, ତଥାପି ମଧ୍ୟ ସକଳ ଦୁଃଖବିନାଶକ ଭକ୍ତବତ୍ସଳ ଅଶରଣର ଶରଣ ଦୀନବନ୍ଧୁ ଆପଣଙ୍କର ସୁମଧୁର ନାମକୁ ଉଚ୍ଚାରଣ କରୁଥାଉ । ଆମ୍ଭମାନଙ୍କ ଜିହ୍ୱାରୁ ଆପଣଙ୍କର ମଙ୍ଗଳମୟ ନାମ ଉଚ୍ଚାରଣ ସର୍ବଦା ନିର୍ଗତ ହେଉଥାଉ । ଆମଭଳି ପ୍ରାକୃତ ପୁରୁଷ କ'ଣ ରାଗ ଦ୍ୱେଷ ଇତ୍ୟାଦି ମଇଳା ନଥିବା ଗୁଣବାନ ଆତ୍ମାରାମ ମୁନିମାନେ ମଧ୍ୟ ଆପଣଙ୍କ ଗୁଣଗାନ କରନ୍ତି । ସେମାନେ ଆପଣଙ୍କ ରୂପର ନିରନ୍ତର ଚିନ୍ତା କରିଥାନ୍ତି ଏବଂ ଆପଣଙ୍କ ନାମ ଉଚ୍ଚାରଣ କରନ୍ତି । ଏହି ଇଚ୍ଛା ପୂର୍ଣ୍ଣ ହେଲେ ଯିନା ଅନ୍ୟ କୌଣସି ଇଚ୍ଛା ରହିବ ନାହିଁ ।"

ଭଗବାନ ହସିଲେ ଏବଂ କହିଲେ—"ଆପଣମାନେ ଆଦୌ ସଂକୋଚ କରନ୍ତୁ ନାହିଁ, ନିଜ ନିଜର ଯଥାର୍ଥ ଅଭିପ୍ରାୟ କୁହନ୍ତୁ । ନିଜର ମନ କଥା ଖୋଲି କୁହନ୍ତୁ ।"

ଋତ୍ୱିକଗଣ କହିଲେ—"କଣ କହିବୁ ଭଗବାନ ! ଆମକୁ ବଡ଼ ଲାଜ ଲାଗୁଛି । ଏତେବଡ଼ ମହାନ ବ୍ୟକ୍ତିଙ୍କୁ ଏ ସାମାନ୍ୟ କ୍ଷୁଦ୍ରକଥା କେମିତି କହିବୁ, ସମ୍ରାଟଙ୍କୁ ପ୍ରସନ୍ନ କଲୁ, ସେ କୃପାକରି ବର ମାଗିବାକୁ କହିଲେ ଏବଂ ସେଥିପାଇଁ ଆମେ ମାଗିଲୁ ଯେ ଆମ୍ଭଙ୍କୁ ଭୋକ ହେଉଅଛୁ, ଆପଣଙ୍କ ପ୍ରତ୍ୟେକ ଦିନ ଖାଇବା ଅଣ୍ଟାରୁ ଯେତେକ ଚୋକଡ଼ ନିର୍ଗତ ହେଉଛି, ସେତକ ହିଁ ଆମକୁ ପ୍ରଦାନ କରନ୍ତୁ । ଏଭଳି ମାଗିବା ଲୋକଙ୍କୁ କିଏ ବୁଦ୍ଧିମାନ ବୋଲି କହିବ ? ତଥାପି ଅର୍ଥ ଦୋଷ ଦେଖେ ନାହିଁ । ଏହି ରାଜର୍ଷି ନାଭି ପୁତ୍ରସ୍ନେହ ଅଟେ । ଯଦିଓ ଆପଣ ସ୍ୱର୍ଗ, ଅପବର୍ଗ, ଇତ୍ୟାଦି ସମସ୍ତ କାମନାକୁ ଦେବାପାଇଁ ସମର୍ଥ ତଥାପି ମଧ୍ୟ ଏହି

ମହାରାଜ ଆପଣଙ୍କର ସମାନ ଗୋଟିଏ ପୁତ୍ର ଚାହୁଁଛନ୍ତି । ପୁତ୍ରର ଇଚ୍ଛା ରଖି ସେ ଆପଣଙ୍କର ସକାମ ପୂଜା କରୁଛନ୍ତି । ସେ ପୁତ୍ର ମଧ୍ୟ ସାଧାରଣ ଚାହୁଁନାହାନ୍ତି, ଆପଣଙ୍କ ପରି କେବଳ ।"

ଭଗବାନ ହସି ହସି କହିଲେ—"କେବଳ ତୁମେ ଏତେ ବୁଲେଇ ବଙ୍କେଇ କାହିଁକି କଥା କହୁଛ । ଏଥିରେ ସଙ୍କୋଚ କରିବାର କ'ଣ ଅଛି । ମୁଁ ତ ସବୁ କିଛି ଦେବା ପାଇଁ ସମର୍ଥ ଅଛି ।"

ଋତ୍ୱିକଗଣ କହିଲେ—"ହଁ ଭଗବନ୍ ! ଆପଣ ସର୍ବସମର୍ଥ; ତଥାପି ଏହା ଲଜ୍ଜାର ବିଷୟ । ବିଷୟରୂପକ ବିଷୟବାସନାରେ ଯାହାଙ୍କର ସ୍ୱଭାବ ଦୂଷିତ ହୋଇଯାଏ, ଏହିଭଳି ସକାମ ମନ୍ଦ ବୁଦ୍ଧି ପୁରୁଷ ତୁଚ୍ଛ ସାଂସାରିକ ବାସନାର ବଶୀଭୂତ ହୋଇ ଆପଣଙ୍କର ପୂଜା କରେ ଏବଂ ଆପଣଙ୍କୁ ତାହାର ଇଚ୍ଛା ପୂରଣ ହେବା ନିମିତ୍ତ ଆସିବାକୁ ହୁଏ । ଏହିଭଳି କ୍ଷୁଦ୍ର କାମନା ନିମିତ୍ତ ଆପଣଙ୍କର ଆବାହନ କରିବା ଆପଣଙ୍କ ପ୍ରତି ଘୋର ଅପମାନ । ଏହାକୁ ଆପଣ କୃପାବଶ ହୋଇ କ୍ଷମା କରିବେ ଏବଂ ଏହି ରାଜର୍ଷିଙ୍କର ଇଚ୍ଛାକୁ ପୂରଣ କରିବେ ।"

ଭଗବାନ କହିଲେ—"ବ୍ରାହ୍ମଣମାନେ ! ତୁମ୍ଭେମାନେ ବଡ଼ ଚତୁର । ଏଠାରେ ସେହିଭଳି ମିଠା ମିଠା କଥା କହି ମୋଠାରୁ ଏମିତି ଗୋଟିଏ ବରଦାନ ମାଗି-ନେଲ, ମୋତେ ଉଭୟ ଭିତରେ ପଶିଯିବା ପରି ଲାଗୁଛି । ମୋପରି ଦଶ କୋଡ଼ିଏ ଥିଲେ, ମୁଁ ତା ଭିତରୁ କାହାକୁ ଗୋଟିଏ ରାଜର୍ଷି ନାଭିଙ୍କର ପୁତ୍ର ରୂପରେ ପଠାଇ ଦିଅନ୍ତି; ମାତ୍ର ମୁଁ ନିଜ ଅନୁରୂପ ଏକା ଅଟେ, ମୋପରି ଦ୍ୱିତୀୟ କେହି ନାହାନ୍ତି । ମୁଁ ନିଜେ ଆସି ଏହି ରାଜର୍ଷିଙ୍କର ପୁତ୍ର ହେବି । ବର୍ତ୍ତମାନ ଆପଣ ବ୍ରାହ୍ମଣମାନେ ଯାହା କହିଲେ ତାହା ପଥରର ଗାର ପରି ନିଶ୍ଚିତ ଅଟେ । ଏହା କେବେ ମିଥ୍ୟା ହୋଇପାରିବ ନାହିଁ ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଭଗବାନଙ୍କ ଶ୍ରୀମୁଖରୁ ଏହିଭଳି କଥା ଶୁଣି ଋତ୍ୱିକ, ସଦସ୍ୟ, ଯଜମାନ ଓ ଯଜମାନୀ ସମସ୍ତଙ୍କ ମୁଖପଦ୍ମରେ ଆନନ୍ଦ ଆସିଗଲା । ମହାରାଣୀ ମେରୁଦେବୀଙ୍କର ପ୍ରସନ୍ନତାର କୌଣସି ଠିକ୍ ଠିକଣା ରହିଲା ନାହିଁ । ତାଙ୍କ ଗର୍ଭରୁ ସ୍ୱୟଂ ସାକ୍ଷାତ ନାରାୟଣ ଜନ୍ମ ନେବେ, ଏହାଠାରୁ ବଳି ଆନନ୍ଦର କଥା ଆଉ କ'ଣ ଅଛି । ସମସ୍ତେ ବଡ଼ ଉତ୍ସୁକ ଭାବରେ ଏକାଗ୍ରତା ସହ ଭଗବାନଙ୍କୁ ଲକ୍ଷ୍ୟ କରୁଥିଲେ, ହଠାତ୍ ସମସ୍ତଙ୍କର ଦେଖୁଥିବା ଅବସ୍ଥାରେ ସେ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ସମସ୍ତେ ଭୂମିରେ ମସ୍ତକ ଲଗାଇ ସେହି ସ୍ଥାନକୁ ବାରମ୍ବାର ନମସ୍କାର କଲେ ।"

ତାହାପରେ ବହୁ ଆଡ଼ମ୍ବର ସହକାରେ ଯଜ୍ଞର ପୂର୍ଣ୍ଣାହୁତି ପ୍ରଦାନ କରାଗଲା । ବ୍ରାହ୍ମଣମାନଙ୍କୁ ଭୋଜନ ଦିଆଗଲା । ସେମାନଙ୍କୁ ଯଥେଷ୍ଟ ଦକ୍ଷିଣା ପ୍ରଦାନ କରାଗଲା । ବ୍ରାହ୍ମଣମାନେ ରାଜାଙ୍କର ପରିଚର୍ଯ୍ୟାରେ ସନ୍ତୁଷ୍ଟ ହୋଇ ତାଙ୍କୁ ଭିନ୍ନ ଭିନ୍ନ ଆଶୀର୍ବାଦ କରି ନିଜ ନିଜର ଘରକୁ ପ୍ରତ୍ୟାଗମନ କଲେ । ମହାରାଣୀ ମେରୁଦେବୀ ଶୁଭମୁହୂର୍ତ୍ତରେ ନିଜର ପତି ରାଜର୍ଷି ନାଭିଙ୍କ ଦ୍ୱାରା ଗର୍ଭ ଧାରଣ କଲେ । ମହାରାଣୀଙ୍କର ଏହି ଗର୍ଭ ଶୁକ୍ଳପକ୍ଷ ଚନ୍ଦ୍ରମା ପରି ଦିନକୁ ଦିନ ବଢ଼ିବାକୁ ଲାଗିଗଲା ।

## ଛପ୍‌ପୟ

"ବିନତୀ କରକେ ବିପ୍ର ଯଜ୍ଞ ଉଦ୍ଦେଶ ବତାୟୋ ।
ପ୍ରଭୁ ସମାନ ସୁତ ହୋୟ ଭୂପକୋ ଭାବ ଜତାୟୋ ॥
ହରି ହଁସି ବୋଲେ—ଅରେ ବିପ୍ର ରୌଁ କାଲ୍ ଫଁସାଓ ।
ସ୍ୱାମୀ ସେବକ କରୋ ପିତା କୁଁ ପୁତ୍ର ବନାଓ ।
ଅଚ୍ଛା, ହୋ ସୁତ ବନୁଁଗୋ, ନିଜ ସମ କହଁ ଖୋଜତ ଫିରୁଁ ।
ମୋକୁଁ ବାନ୍ଧି ଭକ୍ତ ଙ୍ଗେ, ମୁକ୍ତ ସବନ କୁଁ ହୌଁ କରୁଁ ॥"



# ଭଗବାନ ଋଷଭଦେବଙ୍କ ଚରିତ୍ର

କୋ ନୁ ତତ୍କର୍ମ ରାଜର୍ଷେର୍ନାଭେରନ୍ୱାଚରେତ୍‌ପୁମାନ୍ ।
ଅପତ୍ୟତାମଗାଦ୍ୟସ୍ୟ ହରିଃ ଶୁଦ୍ଧେନ କର୍ମଣା ॥
( ଭାଗବତ ୫-ସ୍କନ୍ଧ ୪-ଅଧ୍ୟାୟ ୬ ଶ୍ଳୋକ )

## ଛପ୍‌ପୟ

ଅନ୍ତର୍ହିତ ହରି ଭୟେ ରଜରାନୀ ହୁଲସାନୀ
ଗର୍ଭବତୀ ପୁନି ଭଈଁ ମେରୁଦେବୀ ପାଟରାନୀ ॥
ଭୟେ ଅବତରିତ ଋଷଭ ତ୍ୟାଗ କେ ମଗ ଦରସାବନ ।
ସନ୍ୟାସୀ ମୁନି ବିମଲ ଦିଗମ୍ବର ଅତିଶୟ ପାବନ ।
ନାଭି ନିରଖି ନିଜ ତନୟ ସୁତ, ସୁତ ଜଗପତି ଜାନତ ଭୟେ,
ପ୍ରଜା ସହିତ ସମ୍ମତ ସମୁଝି, ରାଜ ତିଲକ ଦେ ବନ ଗୟେ ॥

ପୁତ୍ର ପ୍ରାପ୍ତି ପୂର୍ବରୁ ହିଁ ପୁଣ୍ୟର ମହାନ୍ ଫଳ ଉଦୟ ହେବା ହେତୁ ହୋଇଥାଏ । ଯଦି ପୁତ୍ର ରୂପରେ ପରମେଶ୍ୱର ପତ୍ନୀଙ୍କ ଉଦରରୁ ଉତ୍ପନ୍ନ ହୋଇ ପ୍ରେମ ପ୍ରଦର୍ଶନ କରନ୍ତି, ସେହି ପିତାର ସୌଭାଗ୍ୟକୁ କାହା ସହିତ ତୁଳନା କରାଯାଇପାରେ । କୋଟି କୋଟି ଜନ୍ମର ସୁକୃତ ଫଳରେ, ଶ୍ରୀହରିଙ୍କର ଦର୍ଶନ ପ୍ରାପ୍ତ ହୁଏ । ଦର୍ଶନ ପାଇବାପରେ ପୁତ୍ରହୋଇ ନିଜର ଭକ୍ତକୁ ଅଭୟ ବାଣୀରେ ବାପା ବାପା ଡାକିବା ବେଳେ ସେହି ସୁଖର ସଂସାର ପରି କେହି ସମାନ ହେବକି ? ଏହିଭଳି ପୁରୁଷ ସଂସାରରେ ମାନନୀୟ, ପୂଜନୀୟ, ଅଭିନନ୍ଦନୀୟ ଏବଂ ପ୍ରାତଃ ସ୍ମରଣୀୟ ବୋଲି ବୁଝାଯାଏ । ଏହି ସୌଭାଗ୍ୟ ମହାରାଜ ନାଭିପ୍ରାପ୍ତ ହେଲେ ।

ମହାରାଜ ଋଷଭ ଦେବଙ୍କର ପିତା ହୋଇଥିବା ହେତୁ ସମସ୍ତ ଜଗତର ସେ ବନ୍ଦନୀୟ ହେଲେ ।

ଶ୍ରୀ ଶୁକଦେବ କହୁଛନ୍ତି "ରାଜନ୍ ! ଭଗବାନ ଅନ୍ତର୍ହିତ ହୋଇଯିବା ପରେ ମହାରାଜ ନାଭି ଯଜ୍ଞରୁ ନିବୃତ୍ତ ହୋଇ ନିଜର ରାଣୀ ମେରୁଦେବୀଙ୍କ ସହିତ ସର୍ବସୁଖକୁ ଭୋଗକରି ଆନନ୍ଦପୂର୍ବକ ରାଜନିବାସରେ ବାସ କରିବାକୁ ଲାଗିଲେ । ସମୟକ୍ରମେ ମହାରାଣୀ ଗୋଟିଏ ପୁତ୍ରରତ୍ନକୁ ଜନ୍ମଦେଲେ । ପିତା ଅତ୍ୟନ୍ତ ଉତ୍ସାହର ସହିତ ପୁତ୍ରର ଜନ୍ମସଂସ୍କାର କାର୍ଯ୍ୟ ପାଳନ କଲେ । ଲକ୍ଷଣଦ୍ୱାରା ଚିହ୍ନି ପାରୁଥିବା ପୁରୁଷମାନେ ଶ୍ରୀଅଙ୍ଗରେ ବଜ୍ର ଅଙ୍କୁଶ, ଇତ୍ୟାଦି ବାହ୍ୟ ଚିହ୍ନକୁ ଦେଖି ଏବଂ ସମତା, ଉପଶମ, ବିବେକ, ବୈରାଗ୍ୟ ଏବଂ ଐଶ୍ୱର୍ଯ୍ୟ, ଇତ୍ୟାଦି ମହା ବିଭୂତି ମାନଙ୍କୁ ଦେଖିକରି ତାଙ୍କୁ ସାକ୍ଷାତ ଭଗବାନଙ୍କ ଅବତାର ବୋଲି ଜାଣିଲେ । ତାଙ୍କର ସୁନ୍ଦର, ସୁଗଠିତ ଶରୀରକୁ ଦେଖି ପିତା ତାଙ୍କର ନାମ ଋଷଭ ଅର୍ଥାତ୍ ଶ୍ରେଷ୍ଠ ରଖିଲେ ! ସେ ନିଜର ଇଚ୍ଛାରେ ମନୁଷ୍ୟ ଶରୀର ଧାରଣ କରିଛନ୍ତି, ଏହିପରି ପୁରାଣ ପୁରୁଷ ପୁରୁଷୋତ୍ତମଙ୍କୁ ପୃଥ୍ୱୀପତି ନାଭି ନିଜର ପୁତ୍ରଭାବେ ବିସ୍ମର କଲେ । ସେ ତାଙ୍କର ଯଥାର୍ଥ ରୂପକୁ ଭୁଲିଗଲେ । ତାଙ୍କର ମାୟା ହେତୁ ବିଭ୍ରମଚିତ୍ତ ହୋଇ ସେ ଜଗତର ପାଳନକର୍ତ୍ତାଙ୍କୁ ପ୍ରେମରେ ପାଳନ କରିବାକୁ ଲାଗିଲେ । ଜଗତପିତାଙ୍କୁ ପୁତ୍ର ରୂପେ ଲାଳନ ପାଳନ କଲେ । ମୋର ବେଟା, ମୋର ପୁତ୍ର, ମୋର ରାଜା, ଏହି ପ୍ରକାର ମିଠାକଥାରେ ବାରମ୍ବାର କହି ତାଙ୍କର ପଦ୍ମ ସଦୃଶ୍ୟ ମୁଖମଣ୍ଡଳକୁ ଚୁମ୍ବନ କଲେ । ସେ ଅନୁଭବ କଲେ ଯେତେ ପ୍ରେମ ସେ ନିଜର ପୁତ୍ରକୁ କରୁଛନ୍ତି, ସେତିକି ପ୍ରେମ ମଧ୍ୟ ତାଙ୍କର ପ୍ରଜାମାନେ ପୁତ୍ରକୁ କରୁଛନ୍ତି, ସମସ୍ତେ ନିଜ ନିଜର ପୁତ୍ରମାନଙ୍କୁ ପ୍ରାଣଠାରୁ ଅଧିକ ଭଲ ପାନ୍ତି । ରାଜା ଦେଖିଲେ ଧନୀଠାରୁ ନିର୍ଦ୍ଧନ ପର୍ଯ୍ୟନ୍ତ, ମନ୍ତ୍ରୀଠାରୁ ସିପାହି ପର୍ଯ୍ୟନ୍ତ, ବେଦଜ୍ଞ ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ସମସ୍ତେ ତାଙ୍କୁ ନୟନର ତାରା ପରି ମାନୁଛନ୍ତି ଓ ଜାଣୁଛନ୍ତି ଏବଂ ଶ୍ରଦ୍ଧା ମଧ୍ୟ କରୁଛନ୍ତି । ତେଣୁ ସେ ବ୍ରାହ୍ମଣ ଏବଂ ପୁରୋହିତଙ୍କୁ ଡାକି ଋଷଭଦେବଙ୍କୁ ସିଂହାସନ ଉପରେ ବସାଇଦେଲେ । ତାହାକୁ ରାଜ୍ୟଭାର ସମର୍ପଣ କରି ମହାରାଜନାଭି ନିଜର ପତ୍ନୀ ମେରୁଦେବୀଙ୍କ ସହିତ ତପୋବନକୁ ଯାତ୍ରାକଲେ । ଉତ୍ତର ଦିଗରେ ହିମାଳୟର ବହୁତ ଶୀର୍ଷସ୍ଥାନକୁ ଅତିକ୍ରମ କରି ସେ ଗନ୍ଧମାଦନ ପର୍ବତ ଉପରେ ଅବସ୍ଥିତ ଭଗବାନ ନରନାରାୟଣଙ୍କର ନିବାସସ୍ଥଳ ବଦରିକା ଆଶ୍ରମରେ ଯାଇଁ ପହଞ୍ଚିଲେ । ସେଠାରେ ସେ ଯମନିୟମକୁ ପାଳନପୂର୍ବକ ଭଗବାନ ବାସୁଦେବଙ୍କର ଆରାଧନାରେ ତତ୍ପର ହୋଇ ତାଙ୍କର ରୂପକୁ ଚିନ୍ତା କରିବାକୁ ଲାଗିଲେ । ସମୟକ୍ରମେ ସେ ସମୟ ଆସିବା ହେତୁ ତାଙ୍କର ସ୍ୱରୂପରେ ଲୀନ ହୋଇଗଲେ ।

ନିଜର କାନ୍ଧ ଉପରେ ରାଜ୍ୟଭାର ଦେଖି ଭଗବାନ ଋଷଭ ଲୋକନୀତି ଅନୁକରଣ କରି ମନୁଷ୍ୟମାନଙ୍କ ପରି ଚେଷ୍ଟା କରିବାକୁ ଲାଗିଲେ । ସେ କିଛିକାଳ ଗୁରୁକୁଳରେ ବାସକରି ବେଦବେଦାଙ୍ଗ ଅଧ୍ୟୟନ କଲେ । ଗୁରୁଙ୍କର ସେବାକରି ଗୁରୁ ଶିଷ୍ୟ ସମ୍ପର୍କରେ ମହତ୍ତ୍ୱକୁ ନିଜର ଆଦର୍ଶଭାବେ ଉପସ୍ଥିତ କଲେ । ଗୁରୁ ଆଶ୍ରମରେ ନିର୍ଦ୍ଦିଷ୍ଟ ସମୟ ଅତିବାହିତ କରି ଗୁରୁଙ୍କୁ ଶେଷ ଦକ୍ଷିଣା ଦେଇ ସେ ବ୍ରତପୂର୍ବକ ସ୍ନାନ ଇତ୍ୟାଦି ସମ୍ପନ୍ନ କଲେ । ସ୍ନାତକହୋଇ ସେ ଗୃହସ୍ଥାଶ୍ରମରେ ପ୍ରବେଶ କଲେ । ଦେବରାଜ ଇନ୍ଦ୍ର ତାଙ୍କର ପ୍ରଭାବକୁ ଜାଣି ତାଙ୍କ ସମ୍ମୁଖରେ ଲଜ୍ଜିତ ହୋଇ ନିଜ କନ୍ୟାର ବିବାହ ତାଙ୍କ ସହିତ ସମ୍ପନ୍ନ କଲେ ।

ଏହାପରେ ମହାରାଜ ପରୀକ୍ଷିତ କହିଲେ—"ଭଗବନ୍ ! ଋଷଭଦେବ ପାର୍ଥିବ ନରପତିର ରୂପଧାରଣ କରିଥିଲେ, ମାତ୍ର ଇନ୍ଦ୍ର ତ ତ୍ରିଲୋକର ରାଜା, ତେବେ ନିଜ କନ୍ୟାର ବିବାହ ଶ୍ରୀ ଋଷଭଦେବଙ୍କ ସହିତ କାହିଁକି କଲେ ? ଦେବଲୋକର କନ୍ୟାଙ୍କୁ ମର୍ତ୍ତ୍ୟଲୋକରେ କିପରି ବିବାହ ଦିଆଗଲା ?".

ଏହା ଶୁଣି ଶ୍ରୀ ଶୁକ କହିଲେ—"ମହାରାଜ ! ଭଗବାନ ଋଷଭ ଥିଲେ ସମସ୍ତ ଲୋକର ସକଳ ଐଶ୍ୱର୍ଯ୍ୟର ଅଧିକାରୀ । ତାଙ୍କ ପାଇଁ ଭୂଲୋକ ଯେପରି ସ୍ୱର୍ଗଲୋକ ମଧ୍ୟ ସେପରି, ମାତ୍ର ଇନ୍ଦ୍ର ଅଭିମାନରେ ସଦା ସର୍ବଦା ଉନ୍ମତ୍ତ ହୋଇ ରହନ୍ତି । ଯେଉଁଭଳି ଭାବରେ ସେ ଋଷିମାନଙ୍କୁ, ତପସ୍ୱୀମାନଙ୍କୁ ଏବଂ ଏପରିକି ସ୍ୱୟଂ ସାକ୍ଷାତ ଶ୍ରୀହରିଙ୍କୁ, ମୂର୍ଖତା ବଶ ହେତୁ ନିଜର ପ୍ରଭାବ ଦେଖାନ୍ତି, ସେହିଭଳି ଭୁଲ ସେ ଋଷଭଦେବଙ୍କ ସହିତ ମଧ୍ୟ କରିଥିଲେ ଏବଂ ନିଜେ ଅପମାନିତ ହୋଇଥିଲେ ।"

ଏହା ଶୁଣି ଅତ୍ୟନ୍ତ ଉତ୍ସୁକତା ପ୍ରକଟ କରି ମହାରାଜ ପରୀକ୍ଷିତ ପଚାରିଲେ, "ପ୍ରଭୋ ! ଇନ୍ଦ୍ର ଭଗବାନ୍ ଋଷଭଙ୍କୁ ନିଜର ଶକ୍ତି କିପରି ଭାବରେ ଦେଖାଇଲେ ! କିଭଳି ଭାବରେ ତାଙ୍କ ପରାଜୟ ଭୋଗ କରିବାକୁ ପଡ଼ିଲା । ଏହି ବୃତ୍ତାନ୍ତକୁ ଶୁଣିବା ପାଇଁ ମୋର ଅତ୍ୟନ୍ତ ଇଚ୍ଛା ହେଉଛି, ଦୟାକରି ତାହାକୁ ଅତ୍ୟନ୍ତ ବିସ୍ତାରିତଭାବେ ବର୍ଣ୍ଣନା କରନ୍ତୁ ।"

ରାଜାଙ୍କର ଏଭଳି ପ୍ରଶ୍ନ ଶୁଣି ଶ୍ରୀ ଶୁକଦେବ କହିଲେ - "ରାଜନ୍ ! ଋଷଭ ଦେବ ରାଜା ହେବାପରେ ପ୍ରଜାମାନଙ୍କର ସକଳକାର୍ଯ୍ୟ ଦେଖାଶୁଣା କରିବାକୁ ଲାଗିଲେ । ସେ ଚାରିଆଡ଼େ ସୁରକ୍ଷା ପାଇଁ ଉଚିତ ବ୍ୟବସ୍ଥା ଗ୍ରହଣ କଲେ । ତାଙ୍କର ରାଜ୍ୟ ଶାସନ ପ୍ରଣାଳୀ ଅତ୍ୟନ୍ତ ଉଚ୍ଚକୋଟୀର, ଅନୁକରଣୀୟ ଓ ଅଭିନନ୍ଦନୀୟ ଥିଲା । ପ୍ରଜାମାନେ ତାଙ୍କୁ ପିତାଠାରୁ ମଧ୍ୟ ଅଧିକ ସ୍ନେହ

କରୁଥିଲେ । ସମସ୍ତେ ତାଙ୍କୁ ଭଗବାନଙ୍କ ପରି ମାନୁଥିଲେ ଓ ପୂଜା କରୁଥିଲେ । ତାଙ୍କର ଆଦର ସତ୍କାରକୁ ପ୍ରଜାମାନଙ୍କ ଦ୍ୱାରା ଏ ପ୍ରକାର ପୂଜା ପାଉବାର ଦେଖି ଇନ୍ଦ୍ରଙ୍କର ବଡ଼ଇର୍ଷା ହେଲା । ମହାରାଜା ଯେଉଁ ଲୋକ ସବୁବେଳେ ସମ୍ମାନ ଏବଂ ପ୍ରତିଷ୍ଠା ପାଇଁ ଉତ୍ସୁକ ହୋଇଥାନ୍ତି, ସେମାନେ ଅନ୍ୟର ବଡପଣ ଦେଖି ପାରନ୍ତି ନାହିଁ । କ ହାର ଯଶ ପ୍ରତିଷ୍ଠା ଦେଖି ତାଙ୍କର ଅତ୍ୟଧିକ ମାନସିକ ସନ୍ତାପ ଘଟେ । ସେମାନେ ନିଜଠାରୁ ଅଧିକ କାହାକୁ ବଢିବାକୁ ଦିଅନ୍ତି ନାହିଁ । ଏଇଥିପାଇଁ ଇନ୍ଦ୍ର ଚିନ୍ତାକଲେ, "ମୁଁ ତ ଦେବଲୋକର ରାଜା, ସମସ୍ତଙ୍କୁ ଜୀବନଦାନ ଦେଉଛି, ବର୍ଷାକରି ସମସ୍ତଙ୍କର ଭରଣପୋଷଣ କରୁଛି, ତଥାପି ଲୋକମାନେ ମୋତେ ଏତେ ଆଦର କରୁନାହାନ୍ତି କିମ୍ବା ମୋତେ ଏତେ ଶ୍ରଦ୍ଧା କରୁନାହାନ୍ତି । ଏହି ମର୍ତ୍ତ୍ୟଲୋକ ଅଞ୍ଚଳର ରାଜା ଏତେ ଲୋକପ୍ରିୟ ଯାହାଙ୍କି ପ୍ରଜାମାନେ ଏହାଙ୍କୁ ପରମେଶ୍ୱର କହି ତାହାଙ୍କ ପୂଜା କରୁଛନ୍ତି । ଦେଖେ ତାର ପ୍ରଭାବ କେତେ । ମୁଁ ତା ରାଜ୍ୟରେ ବର୍ଷା କରାଇବି ନାହିଁ, ପୁଣି ସେ ନିଜର ପ୍ରଜାମାନଙ୍କୁ କିପରି ପାଳନ କରୁଛି, ଦେଖିବି । ରାଷ୍ଟ୍ରର ଦୁର୍ଭିକ୍ଷ, ଶାସକର ପାପରୁ ହିଁ ଫଳେ । ଯେତେବେଳେ ଦେଶରେ ଦୁର୍ଭିକ୍ଷ ପଡ଼ିବ, ସେତେବେଳେ ସମସ୍ତ ଜନତା ଅପ୍ରସନ୍ନ ହୋଇ ରାଜାଙ୍କୁ ନିନ୍ଦା କରିବେ । ତାଙ୍କର ପ୍ରତିଷ୍ଠା ଧୂଳିରେ ମିଶାଇଯିବ ।" ଏହା ଚିନ୍ତାକରି ଇନ୍ଦ୍ର ତାଙ୍କ ରାଜ୍ୟରେ ବର୍ଷାକାଳ ବର୍ଷାକଲେ ନାହିଁ ।

ଶ୍ରୀ ଋଷଭଦେବ ଜାଣିଗଲେ ଯେ ଇନ୍ଦ୍ରଙ୍କର ଅଭିମାନ ଅତ୍ୟଧିକ ହୋଇ ଗଲାଣି । ତାଙ୍କର ଏ ବିଷୟରେ ଗର୍ବ ଅଛି ଯେ ମୁଁ ବର୍ଷା କରିବି ନାହିଁ । ତେବେ ପ୍ରଜାପାଳନ ହୋଇ ପାରିବ ନାହିଁ । ଠିକ କଥା, ଏହି ଅମରପତି ମୋର ପ୍ରଭାବକୁ ଦେଖନ୍ତୁ । ଏହାକହି ସେ ନିଜର ଯୋଗବଳରେ ଜଳପୂର୍ଣ୍ଣ ମେଘ ସୃଷ୍ଟି କଲେ ଏବଂ ଏତେ ଜଳ ବୃଷ୍ଟି କଲେ ଯେ ସମସ୍ତ ଭୂମିଶସ୍ୟ ଶ୍ୟାମଳବର୍ଣ୍ଣ ଧାରଣ କଲା । ଏହା ଦେଖି ଇନ୍ଦ୍ରଙ୍କର ଗର୍ବ ଖର୍ବ ହେଲା, ତାଙ୍କର ଅଭିମାନ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲା । ସେ ଭଗବାନ ଋଷଭଦେବଙ୍କର ପ୍ରଭାବକୁ ବୁଝିଗଲେ ଏବଂ ସବୁଠାରୁ ସୁନ୍ଦରୀ ନିଜର ଜୟନ୍ତୀ ନାମକ କନ୍ୟାକୁ ଭଗବାନ ଋଷଭଦେବଙ୍କ ସହିତ ବିବାହ କରିଦେଲେ । ଶ୍ରୀ ଋଷଭଦେବ ତାଙ୍କୁ ନିଜର ଅନୁରୂପ ବିଚାର କରି ବୈଦିକ ବିଧିବିଧାନ ପୂର୍ବକ ଜୟନ୍ତୀଙ୍କର ପାଣିଗ୍ରହଣ କଲେ ଏବଂ ଧର୍ମପୂର୍ବକ ଗୃହସ୍ଥାଶ୍ରମର ନିୟମ ଲୋକମର୍ଯ୍ୟାଦା ପାଇଁ ପାଳନ କଲେ । ସମୟ ଅନୁସାରେ ମହାରାଣୀ ଜୟନ୍ତୀଙ୍କ ଗର୍ଭରେ ପରମଯଶସ୍ୱୀ ପିତାଙ୍କର ଅନୁରୂପ ଏକଶତ ପୁତ୍ର ଜନ୍ମ ଲାଭକଲେ ।

ଏହାଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ଋଷଭଦେବଙ୍କର ଏହି ଶହେପୁତ୍ର କେଉଁ କେଉଁ ଠାରେ ରାଜା ହେଲେ ।"

ଏହା ଶୁଣି ଶ୍ରୀ ଶୁକ କହିଲେ—"କୁରୁ ବଂଶାବତଂସ ରାଜନ ! ମହାରାଜ ଋଷଭଦେବଙ୍କ ବୀର୍ଯ୍ୟରୁ ଜୟନ୍ତୀଙ୍କ ଗର୍ଭରୁ ଯେଉଁ ଏକଶତ ପୁତ୍ର ଜନ୍ମଲାଭ କଲେ ସେମାନେ ସମସ୍ତେ ଜାୟନ୍ତେୟ ନାମରେ ପରିଚିତ । ଏମାନଙ୍କ ମଧ୍ୟରେ ଶ୍ରେଷ୍ଠ ଥିଲେ ଭରତ । ସେ ଏତେବଡ଼ ପ୍ରତାପୀ ହେଲେ ଯେ ତାଙ୍କ ନାମରେ ଏହି ଅଜନାଭ ଖଣ୍ଡ 'ଭାରତବର୍ଷ' କୁହାଗଲା ଯାହା ଏ ପର୍ଯ୍ୟନ୍ତ ସେହି ନାମରେ ପ୍ରସିଦ୍ଧି ଲାଭ କରିଛି । ଭରତଙ୍କ ଠାରୁ ଶ୍ରେଷ୍ଠ ନଅଜଣଙ୍କର ନାମଥିଲା-କୁଶାବର୍ତ୍ତ, ବ୍ରହ୍ମାବର୍ତ୍ତ, ମଳୟ, କେତୁ, ଭଦ୍ରସେନ, ଇନ୍ଦ୍ରସ୍ପୃକ୍, ବିଦର୍ଭ ଏବଂ କୀକଟ । ସେମାନେ ସମସ୍ତେ ଭାରତବର୍ଷ ଭିତରେ ଥିବା ବିଭିନ୍ନ ରାଜ୍ୟରେ ପୃଥକ ପୃଥକ ଭାବେ ରାଜାହେଲେ । ତାଙ୍କର ବଂଶ ତାଙ୍କର ନାମ ଅନୁସାରେ ପ୍ରସିଦ୍ଧ ।

ଏହିପରି ଭାବରେ ଭରତ ଏବଂ ଅନ୍ୟ ନଅ ମିଶି ଦଶ ହେଲେ । ଶେଷ ନବେ ପୁତ୍ର ଯେଉଁଥିରୁ ନଅଭାଇ ବିବାହ କରି ନଥିଲେ. ସେମାନେ ଊର୍ଦ୍ଧ୍ୱରେତା ହୋଇ ମୁନିବ୍ରତ ଧାରଣ କରି ପରିବ୍ରାଜକ ହୋଇଗଲେ । ତେଣୁ ସେହି ନଅଜଣ ଯୋଗେଶ୍ୱର ନାମରେ ପରିଚିତ । ସେମାନଙ୍କ ସମ୍ବାଦ ପ୍ରସଙ୍ଗ ଅନୁସାରେ ନାରଦ ବାସୁଦେବ ସମ୍ବାଦ ଅବସରରେ ବର୍ଣ୍ଣନା କରାଯିବ । ବର୍ତ୍ତମାନ ଅବଶିଷ୍ଟ ଏକାଅଶି ଜଣଙ୍କ କଥା ।

ସେମାନେ ଷତ୍ରିୟ ଧର୍ମକୁ ହିଂସା ପ୍ରଧାନ ମାନି ତାକୁ ପରିତ୍ୟାଗ କରିଦେଲେ । ଏମାନେ ସମସ୍ତେ ଥିଲେ ବେଦଜ୍ଞ, କର୍ମକାଣ୍ଡ, ସଦାଚାରୀ, ମାତୃ ପିତୃଭକ୍ତ, ବିନୀତ, ଶାନ୍ତ ଓ ମହାନ୍ । ସେମାନେ ସଦାସର୍ବଦା ଯଜ୍ଞ, ପୂଜାପାଠ ଏବଂ ଦେବାର୍ଚ୍ଚନାରେ ଲାଗି ରହୁଥିଲେ । ସବୁ ସମୟରେ ପୁଣ୍ୟକର୍ମ ଅନୁଷ୍ଠାନ କରିବାରେ ଲାଗିଥିବା ହେତୁ କର୍ମଣି ବ୍ରାହ୍ମଣ ହୋଇଗଲେ । ସେମାନେ କୌଣସି ଦେଶର ରାଜ୍ୟ ସ୍ୱୀକାର କଲେନାହିଁ । ରାଜନ ! ଏହି ପ୍ରକାର ଭାବେ ମୁଁ ତୁମକୁ ଅତ୍ୟନ୍ତ ସଂକ୍ଷେପରେ ଭଗବାନ ଋଷଭଦେବଙ୍କର ଏକଶତ ପୁତ୍ରଙ୍କର ବୃତ୍ତାନ୍ତ ଶୁଣାଇଲି, ଏବେ ଆପଣ ଆଉ କଣ ପଚାରିବାକୁ ଚାହାନ୍ତି ?

ଉତ୍ସୁକତା ପ୍ରକଟ କରି ରାଜା ପଚାରିଲେ—"ଦୀନବନ୍ଧୁ ! ଆପଣ ଋଷଭଦେବଙ୍କର ଜ୍ୟେଷ୍ଠପୁତ୍ରଙ୍କର ଅନେକ ପ୍ରଶଂସା କଲେ ଏବଂ ବାସ୍ତବରେ ସେ ପ୍ରଶଂସନୀୟ ଥିଲେ ଯାହାଙ୍କର କୀର୍ତ୍ତିହେତୁ ଏହି ଭୂଖଣ୍ଡର ନାମ ବଦଳି ଗଲା । ମୁଁ ସେହି ରାଜର୍ଷିଙ୍କର ଚରିତ ଶୁଣିବାକୁ ଇଚ୍ଛା କରୁଛି । ଦୟାକରି ମୋତେ ଭରତ ଚରିତ ଶୁଣାନ୍ତୁ ।"

ଏହାଶୁଣି ଶ୍ରୀଶୁକ କହିଲେ—"ରାଜନ ! ଯଥାର୍ଥ ଭାବେ ଭରତଙ୍କର ଚରିତ୍ର ଅଲୌକିକ, ସେ ସମ୍ପୂର୍ଣ୍ଣ ସିଦ୍ଧି ଏବଂ ମୋକ୍ଷ ପ୍ରଦାୟକ ମଧ୍ୟ ଥିଲେ ।" ଭରତଙ୍କ ଚରିତ୍ର ସାବଧାନ ସହକାରେ ଶୁଣିଲା ପରେ ଆଉ ମୋହ ରହେନାହିଁ । ଏତକ କହି ଶ୍ରୀ ଶୁକଦେବ ମହାରାଜାଙ୍କୁ ଭରତଙ୍କର ଚରିତ୍ର ଶୁଣାଇବାକୁ ଉଦ୍ୟତ ହେଲେ ।"

## ଛପ୍ପୟ

"କରିକେ ଗୁରୁକୁଲ ବାସ ରାଜ କୋ କାଜ ସମ୍ହାରୟୋ ।
ଲଇ ଜୟନ୍ତୀ ବ୍ୟାହ ସସୁର କୋ ମଦ ସଂହାରୟୋ ॥
ଭୟେ ପୁତ୍ର ସୌ ଭରତ ଜ୍ୟେଷ୍ଠ ତିନ ମେ ନୌ ଜ୍ଞାନୀ ।
ଭୂପ ଭୟେ ନୌ ରଚି ଜାଇ ନିଜ-ନିଜ ରଜଧାନୀ ॥
ଇକ୍ୟାସି ହିଂସା ରହିତ, ବିପ୍ରବୃତ୍ତି ମହଁ ରତ ରହେ ।
ଜପ ତପ ପୂଜା ପାଠ ମଖ, କରି ସମନ୍ଵ ସୁଖ ଦୁଃଖ ସହେ ॥"



# ଶ୍ରୀ ଋଷଭଦେବଙ୍କର ନିଜର ପୁତ୍ରମାନଙ୍କୁ ଉପଦେଶ

"ନାୟଂ ଦେହୋ ଦେହଭାଜାଂ ନୃଲୋକେ
କଷ୍ଟାନ୍ କାମାନର୍ହତେ ବିଡ୍‌ଭୁଜାଂ ଯେ
ତପୋ ଦିବ୍ୟଂ ପୁତ୍ରକା ଯେନ ସତ୍ତ୍ୱମ୍
ଶୁଦ୍ଧ୍ୟେଦ୍ୟସ୍ମାଦ୍ ବ୍ରହ୍ମସୌଖ୍ୟଂ ତ୍ୱନନ୍ତମ୍ ॥"
(ଭାଗବତ ୫-ସ୍କନ୍ଧ ୫-ଅଧ୍ୟାୟ ୧-ଶ୍ଳୋକ)

ଛପ୍ପୟ

"ନରେ ଋଷଭ ସ୍ତୁତ କର୍ମ ସ୍ମରଣ ଲୌକିକ ବୈଦିକ ସବ
ତ୍ୟଜି ଭୟେ ଜବ ପୁତ୍ରକ ବାଇ ସତ୍ ଶିକ୍ଷା ନୃପ ତବ ।
ଇନ୍ଦ୍ରିନ ଘୁମତ ଫିରତ ତ୍ରିୟା ସୁତ ପୁରମହିଁ ଆୟେ
ବ୍ରହ୍ମାବର୍ତ ଜହାଁ ପିତହୁଁ ସବ୍ ବନ୍ଧୁ ବୁଲାୟେ ।
ସମ୍ବୋଧନ କରି ସବନକୁଁ, ପ୍ରେମ ସହିତ ସବତେ କହହୁଁ
ସୁଖହୁ ସୁମିରନ ନେମ ସତତ, ବିଷୟ ଭୋଗନର ଦୁଃଖ ସହହୁଁ ।"

ଟୀକାକାରମାନେ କହନ୍ତି, ଯେପରି ସ୍ୱଭାବରେ ଭଗବାନ ଏବଂ ଭଗବଦ୍ଭକ୍ତ ସ୍ୱରୂପ ସମଦର୍ଶୀ ଏବଂ ସମସ୍ତଙ୍କ ସୁହୃଦ୍, ଏବଂ ପୁଣି ଯେ ଶ୍ରେଷ୍ଠ, ଯାହାର ଅଧିକ ନିଜ ଗୁଣ ଅଛି ତାହାପ୍ରତି ଗୁଣାଧିକ୍ୟ ହେତୁ କିମ୍ବା ବାତ୍ସଲ୍ୟ ହେତୁ ପକ୍ଷପାତ ମଧ୍ୟ କରନ୍ତି । ସେ ନିଜରତାଙ୍କୁ ଆମେ ସବୁବେଳେ ଶୁଭ ସଦାଚାର ଦେଖିବାକୁ ଚେଷ୍ଟାକରୁ, ଅନ୍ତର ହାର୍ଦ୍ଦିକ କାମନା ହୁଏ ଯେ ସେ, ସଦାସର୍ବଦା ସଂସାରରେ ଶାଶ୍ୱତ ଶାନ୍ତି

ଅନୁଭବ କରୁ । ଖାଇବା, ପିଇବା ଭଲ ପାଇବା ତ ସାମାନ୍ୟ କଥା, ସବୁଠାରୁ ବଡ଼ପ୍ରେମ ହେଉଛି, ଆମେ ଆମର ଆଶ୍ରିତମାନଙ୍କୁ ମୃତ୍ୟୁ ମୁଖରୁ ବଞ୍ଚାଇବା, ତାଙ୍କୁ ବିଷୟବାସନାରେ ପଶିବାକୁ ନଦେବା । ସେ କେବେ ମଧ୍ୟ ପରମାର୍ଥ ଭାବନାରୁ ଚ୍ୟୁତ ନହେଉ ଏବଂ ଏହାର ପଯତ୍ନ କରୁ ।

ଶ୍ରୀ ଶୁକଦେବ କହିଲେ –"ରାଜନ ! ମହାରାଜ ଋଷଭଦେବ ତାଙ୍କର ସମସ୍ତ ପୁତ୍ରମାନଙ୍କୁ ଉତ୍କୃଷ୍ଟ ପରମାର୍ଥିକ ଉପଦେଶ ଦେଲେ । ସେ ନିଜର ପୁତ୍ରମାନଙ୍କ ସମ୍ମୁଖରେ ଯେଉଁ ଗୂଢ଼ାତିଗୂଢ଼ ମର୍ମ ପ୍ରଦର୍ଶନ କଲେ, ତାକୁ ଯେଉଁ ପୁରୁଷ ଶ୍ରଦ୍ଧାଭକ୍ତି ସହିତ ଶ୍ରବଣ କରିବ ତାହାର ସଂସାର ବନ୍ଧନ ନିଶ୍ଚିତ ଭାବେ ଛିନ୍ନଭିନ୍ନ ହୋଇଯିବ ।"

ମହାରାଜ ପରୀକ୍ଷିତ କହିଲେ—'ଗୁରୁଦେବ ! ଯେତେବେଳେ ଋଷଭଦେବ ନିଜେ ଭଗବାନଙ୍କର ଅବତାର ଥିଲେ, ତେବେ ତାଙ୍କର ଗୃହସ୍ଥାଶ୍ରମରେ ପ୍ରବେଶ କରିବାର କଣ ଆବଶ୍ୟକତା ଥିଲା । ଏ ମୋର ପୁତ୍ର, ଏ ମୋର କେହିନୁହେଁ, ଏଭଳି ଭେଦଭାବ ସେ କାହିଁକି କଲେ ? ପୁଣି ସେଇ ସକାମ କର୍ମର ଆଚରଣ ଅନ୍ତତଃପକ୍ଷେ ହିଁ ହୋଇଥାଏ ତାଙ୍କର କେଉଁ ଲୋକ ପ୍ରାପ୍ତି ଇଚ୍ଛା ଥିଲା, ଯାହା ଫଳରେ ସେ ଏତେ ଯାଗଯଜ୍ଞରେ ନିମଗ୍ନ ରହି କର୍ମକାଣ୍ଡର ଚକ୍ର ଭିତରେ ପଶିଥିଲେ ।"

ଏହା ଶୁଣି ହସି ହସି ଶୁକଦେବ କହିଲେ—"ରାଜନ ! ଆପଣଙ୍କର କହିବା ଯଥାର୍ଥ, ତାଙ୍କର କର୍ମ କରିବାର ଆଦୌ ଆବଶ୍ୟକତା ନଥିଲା । ସେ ତ ସ୍ୱଭାବରେ ସବୁ ସମୟରେ ଅନର୍ଥ ପରମ୍ପରା ଠାରୁ ପୃଥକ ଆନନ୍ଦାନୁଭବ ସର୍ବସ୍ୱତନ୍ତ୍ର ସାକ୍ଷାତ ଈଶ୍ୱର ଥିଲେ । ତଥାପି ମଧ୍ୟ ଅଜ୍ଞମାନଙ୍କୁ ଉଦ୍ଧାର କରିବା ପାଇଁ ତାଙ୍କର ଇଚ୍ଛା ଥିଲା । ଜୀବ ପେଟରୁ ତ ସବୁ ଶିଖିକରି ଆସେ ନାହିଁ । ନିଜର ବଡମାନଙ୍କୁ, ଶ୍ରେଷ୍ଠ ପୁରୁଷମାନଙ୍କୁ ଯାହା କରୁ କରିବାର ଦେଖେ ତାହାର ଆଚରଣ ସାଧାରଣ ଲୋକ କରିବାକୁ ଲାଗେ । ଲୋକମାନେ ଧର୍ମରୁ ପୃଥକ ହୋଇ ବିଷୟ ବାସନାରେ ମଜ୍ଜି ଯାଏ, ତେବେ ସେ ସଦାସର୍ବଦା ଚୌରାଶୀ ଚକ୍ରରେ ବୁଲେ । କାମ ଭୋଗ କରିବାର ଅଛି, ତେବେ ଧର୍ମ ପୂର୍ବକ କର, ସେଇଥିପାଇଁ ପ୍ରାଚୀନ ଋଷିମାନେ ନିବୃତ୍ତି ମାର୍ଗର ପ୍ରବର୍ତ୍ତନ କରିଥିଲେ । ଯାହାକଲେ ଚତ୍ତ ଧିରେ ଧିରେ କର୍ମରୁ ପୃଥକ ହୋଇ ନିଷ୍କର୍ମ ଆଡକୁ ଅଗ୍ରସର ହୁଏ । ଏହି ହେତୁ କାଳକ୍ରମେ ନଷ୍ଟ ହେଉଥିବା ଏହି ପ୍ରବୃତ୍ତି ମାର୍ଗକୁ ପୁନର୍ଜୀବିତ କରିବା ନିମନ୍ତେ ସମସ୍ତଙ୍କ ସହିତ ସମାନ ଭାବରଖି, ଶାନ୍ତ ମିତ୍ର ଏବଂ କାରୁଣିକ ରହି, ନିଜର ସମସ୍ତ ଆଶ୍ରିତମାନଙ୍କୁ ଗୃହସ୍ଥାଶ୍ରମର ଶିକ୍ଷା ଦେଇଥିଲେ ଏବଂ ନିଜେ ମଧ୍ୟ ଧର୍ମପୂର୍ବକ ଗୃହସ୍ଥ ସୁଖକୁ ଉପଭୋଗ କରି, ସେଥିରେ

ଆସକ୍ତ ରହିବାର ପ୍ରତୀତ ହେଲେ ମଧ୍ୟ ଅନାସକ୍ତ ରହୁଥିଲେ । ରାଜନ ! କଥା କହନ୍ତି ସଂସାରରେ ଦୁଇ ପ୍ରକାର ଆନନ୍ଦ ମିଳେ । ଗୋଟିଏ ହେଉଛି ବ୍ରହ୍ମାନନ୍ଦ ଏବଂ ଅନ୍ୟଟି ବିଷୟାନନ୍ଦ । ବ୍ରହ୍ମାନନ୍ଦ ପ୍ରାପ୍ତି ତ୍ୟାଗବୈରାଗ୍ୟ ଦ୍ୱାରା ଯେ କୌଣସି ଲୋକକୁ ମିଳେ ମାତ୍ର ବିଷୟ ଭୋଗ ଯଦି ଧର୍ମକୁ ପରିତ୍ୟାଗ କରି କରାଯାଏ, ପ୍ରତ୍ୟେକ ଦିନ ଧନପ୍ରାପ୍ତି ପାଇଁ ଶରୀର ଆରୋଗ୍ୟ ନିମିତ୍ତ, ପୁତ୍ର ଓ ନାତିମାନଙ୍କ ସହିତ ବସି ଆନନ୍ଦ କରିବା ପାଇଁ, ସହଧର୍ମିଣୀ ସହିତ ଧର୍ମକାର୍ଯ୍ୟ କରିବା ପାଇଁ ମିଠା ମିଠା କଥା କହିବା ପାଇଁ; ପରୋପକାର କାର୍ଯ୍ୟ କରି ଯଶ ଏବଂ କୀର୍ତ୍ତି ଲାଭ କରିବା ନିମିତ୍ତ ଯେଉଁ ଆନନ୍ଦ ମିଳେ, ସେଥିରେ ଶରୀରର ପ୍ରତ୍ୟେକ ଲୋମ ଉତ୍ଫୁଲ୍ଲିତ ହୋଇଉଠେ, ଚିତ୍ତ ପ୍ରସନ୍ନ ହୋଇଯାଏ ଏହିପରି ସୁଖକୁ ଜଟାଜୁଟର ରଙ୍ଗୀନବସ୍ତ୍ର ପରିଧାନ କରିଥିବା ବାବାଜୀ କପରି ବୁଝି ପାରିବେ ? ଏବଂ ଅଜ୍ଞାନୀ-ମାନଙ୍କ ପାଇଁ ଏସବୁ ସୁଖ ସବୁକିଛୁ ଅଟେ । ଏଇଥିପାଇଁ ସେମାନେ ଗୃହସ୍ଥଧର୍ମକୁ ନିଜେ ସ୍ୱୀକାର କଲେ ।

ସେ ଈଶ୍ୱର ହୋଇ ମଧ୍ୟ ମର୍ଯ୍ୟାଦାଭାବେ ରାଜ୍ୟଶାସନ କଲେ । ତାଙ୍କ ରାଜ୍ୟରେ ସମସ୍ତେ ସୁଖରେ ଥିଲେ, କାହାର କୌଣସି ବସ୍ତୁର ଅଭାବ ନଥିଲା । ପ୍ରଜାମାନେ ସବୁବେଳେ ଖୁସିରେ ଥିଲେ ତାଙ୍କର ପ୍ରତ୍ୟେକ ଦିନ ନିଜର ପ୍ରଭୁ ରାଜାଙ୍କ ପ୍ରତି ଅତ୍ୟଧିକ ଅନୁରାଗ ବଢ଼ୁ, ଏହା ବ୍ୟତୀତ ସେମାନେ ଅନ୍ୟ କୌଣସି ଅଭିଳାଷ ମନରେ ରଖି ନଥିଲେ । ଲୋକମର୍ଯ୍ୟାଦା ରକ୍ଷା କରିବା ପାଇଁ ସ୍ୱୟଂ ସର୍ବଜ୍ଞ ହୋଇ ମଧ୍ୟ ବେଦର ସମସ୍ତ ଗୂଢ଼ ରହସ୍ୟ ଏବଂ ଧର୍ମକୁ ଜାଣି ମଧ୍ୟ ସବୁ କାର୍ଯ୍ୟରେ ଶ୍ରେଷ୍ଠ ବ୍ରାହ୍ମଣମାନଙ୍କ ପରାମର୍ଶ କରୁଥିଲେ । ଶାମ, ଦାମ, ଦଣ୍ଡ ଓ ଭେଦ ଇତ୍ୟାଦି ନୀତି ମାନଙ୍କର ପ୍ରୟୋଗ କପରି ଭାବରେ କେଉଁଠାରେ କରିବାକୁ ହେବ । ସେଥିପାଇଁ ସେ ପ୍ରଥମରୁ ମନ୍ତ୍ରୀମାନଙ୍କର ସମ୍ମତି ନେଉଥିଲେ ।

ସେ ଥିଲେ ସମସ୍ତ ଦେବତାମାନଙ୍କର ଅଧିପତି ଈଶ୍ୱର, ତଥାପି ଲୋକ-ସଂଗ୍ରହ ପାଇଁ ଦେବତାଙ୍କ ଉଦ୍ଦେଶ୍ୟରେ ଦ୍ରବ୍ୟ, ଦେଶ, କାଳ, ବୟସ, ଶ୍ରଦ୍ଧା, ଋତ୍ୱିକ ଏବଂ ସମୃଦ୍ଧି ପାଇବା ପାଇଁ ଯାଗଯଜ୍ଞ ବଡ଼ ଶ୍ରଦ୍ଧା ଭକ୍ତିର ସହ ଶାସ୍ତ୍ରୀୟ ବିଧିବିଧାନ ଅନୁସାରେ ସମ୍ପନ୍ନ କରୁଥିଲେ ଏବଂ ତାହାଦ୍ୱାରା ପୁରାଣ ପୁରୁଷ ଯଜ୍ଞେଶ୍ୱରଙ୍କ ଆରାଧନା କରୁଥିଲେ ।

କୌଣସି ଗୋଟିଏ ସମୟର କଥା, ସେ ପର୍ଯ୍ୟଟନ କରିବା ସମୟରେ, ନିଜର ସମସ୍ତ ଦେଶମାନଙ୍କୁ ଦେଖି ଦେଖି ଗଙ୍ଗାଯମୁନାର ମଧ୍ୟରେ ସେହି ପରମ ପବିତ୍ର ପୁଣ୍ୟ ପ୍ରଦେଶରେ ପହଞ୍ଚିଲେ ଯାହାକୁ ପୃଥିବୀର ସର୍ବଶ୍ରେଷ୍ଠ କୁହାଯାଉଥିଲା । ବ୍ରହ୍ମର୍ଷିମାନଙ୍କର ନିତ୍ୟ ନିବାସ ସ୍ଥାନ ହୋଇଥିବା ହେତୁ

ତାହାକୁ ବ୍ରହ୍ମର୍ଷି ଦେଶ କୁହା ଯାଉଥିଲା, ଯାହାର ଅଧିପତି ଥିଲେ ବ୍ରହ୍ମାବର୍ତ୍ତ ଏବଂ ତାଙ୍କର ନାମ ଅନୁସାରେ ସେ ଦେଶର ନାମ ରହିଲା ବ୍ରହ୍ମାବର୍ତ୍ତ, ସେଠାରେ ସେ ପହଞ୍ଚିଲେ ।

ସେଠାରେ ପହଞ୍ଚି ସେ ଦେଖିଲେ ଯେ ବଡ଼ ବଡ଼ ବ୍ରହ୍ମର୍ଷିମାନେ ସମୂହ ଭାବରେ ସେଠାରେ ବିରାଜମାନ କରୁଛନ୍ତି, ତାଙ୍କର ସମସ୍ତ ସୁଶୀଳ ଓ ବିନୀତ ପୁତ୍ରମାନେ ମଧ୍ୟ ବସିଛନ୍ତି । ଏହି ସମୟକୁ ଭଗବାନ ଋଷଭ ବହୁତ ଉତ୍ତମ ବୋଲି ବିଚାର କଲେ, ସେ ପୁତ୍ରମାନଙ୍କୁ ଲକ୍ଷ୍ୟକରି ସେଠାରେ ଉପସ୍ଥିତ ଥିବା ସମସ୍ତଙ୍କୁ ଉପଦେଶ ଦେବାକୁ ଲାଗିଲେ ।

ଯେତେବେଳେ ସେ ଅତ୍ୟନ୍ତ ଆନନ୍ଦିତ ଚିତ୍ତରେ ବସିଗଲେ, ଏବଂ ତାଙ୍କର ପୁତ୍ରମାନଙ୍କ ଦ୍ୱାରା ବିଧିପୂର୍ବକ ସତ୍କାର ହେଲେ, ସେତେବେଳେ ସମସ୍ତ ପୁତ୍ରମାନଙ୍କୁ ସମ୍ବୋଧନ କରି ସେ କହିଲେ, "ପୁତ୍ରମାନେ ! ତୁମେ ସବୁ ଏତେ ବଡ଼ ବଡ଼ ଋଷିମାନଙ୍କ ଗହଣରେ କାହିଁକି ବସିଛ ?"

ତାଙ୍କଉତ୍ତରୁ ହାତ ଯୋଡ଼ିକରି ବିନୀତଭାବରେ ଭରତ କହିଲେ—"ପିତା ! ଆମ୍ଭେମାନେ ଏହି ବ୍ରହ୍ମର୍ଷିମାନଙ୍କୁ ଏହି ପ୍ରଶ୍ନ ପଚାରୁଛୁ ଯେ ଆମ୍ଭମାନଙ୍କ କିପରି ଭାବରେ ବ୍ରହ୍ମାନନ୍ଦ ପ୍ରାପ୍ତି ହେବ । କୃପା ପୂର୍ବକ ଆପଣ ମଧ୍ୟ ଆମ୍ଭମାନଙ୍କୁ ଏ ବିଷୟରେ କିଛି ଉପଦେଶ ପ୍ରଦାନ କରନ୍ତୁ ।"

ଋଷଭଦେବ କହିଲେ—"ମୁଁ ଏହି ବ୍ରହ୍ମର୍ଷିମାନଙ୍କ ସମ୍ମୁଖରେ କ'ଣ ଅବା କହିପାରିବି ମାତ୍ର ଏତିକି ନିଶ୍ଚିତ ଜାଣେ ଯେ ମନୁଷ୍ୟ ଦେହ ଲାଭକରି ଏହି ସାଂସାରିକ ତୁଚ୍ଛ ବିଷୟ ଭୋଗରେ ପଡ଼ି ରହିବା ଉଚିତ ନୁହେଁ । ଦେଖ, ସଂସାରରେ ପାଞ୍ଚ ପ୍ରକାରର ସୁଖ ଅଛି, ଦେଖିବାର ସୁଖ, ଶୁଣିବାର ସୁଖ, ଶୁଙ୍ଘିବାର ସୁଖ, ଚାଖିବାର ସୁଖ ଏବଂ ସ୍ପର୍ଶର ସୁଖ ସମଷ୍ଟିଗତ ସୁଖ । ଯଦି ଏହି ସୁଖକୁ ପାଇବା ପୁରୁଷାର୍ଥ ହୁଏ, ତେବେ ଘୁଷୁରି, କୁକୁର ଓ କୁଆ ଇତ୍ୟାଦି ମଳ ଭକ୍ଷକମାନେ ମଧ୍ୟ ସୁଖୀ । କାରଣ ଯେଉଁ ସୁଖ ତୁମକୁ ପେଡ଼ା ବା ରବଡ଼ି ଖାଇବାରୁ ମିଳେ, ପଶୁ ପକ୍ଷୀଙ୍କୁ ସେହି ସୁଖ ମଳଭକ୍ଷଣରୁ ମଧ୍ୟ ମିଳିଥାଏ । ଯେଉଁ ବିଷୟସୁଖର ଅନୁଭବ ପୁରୁଷ ସ୍ତ୍ରୀ ଦ୍ୱାରା ସ୍ତ୍ରୀ ପୁରୁଷ ଦ୍ୱାରା ପ୍ରାପ୍ତ କରେ, ତାହା କୁକୁର କୁକୁରୀ ସହିତ ଘୁଷୁରି ମାଈ ଘୁଷୁରି ସହିତ ଏବଂ କୁଆ ମାଈ କୁଆ ସହିତ ସହବାସ କରି ପାଏ । ଏଥିରୁ ପ୍ରମାଣିତ ହୁଏ ଯେ ବିଷୟଦ୍ୱାରା ପ୍ରାପ୍ତି ହେଲେ ବ୍ରହ୍ମାନନ୍ଦ ମିଳେ ନାହିଁ । ତାହାର ପ୍ରାପ୍ତି କେବଳ ଅନ୍ତଃକରଣର ଶୁଦ୍ଧତା ପ୍ରାପ୍ତ ବ୍ୟକ୍ତିମାନଙ୍କୁ ମିଳେ ଏବଂ ଅନ୍ତଃକରଣ ଶୁଦ୍ଧ ହୁଏ ତପସ୍ୟା ଫଳରେ । ଏଥିପାଇଁ ସଦାସର୍ବଦା ତପସ୍ୟାରେ

ଲାଗି ରହିବା ଉଚିତ । ଶୁଦ୍ଧ ଅନ୍ତଃକରଣ ପ୍ରାପ୍ତ ତପସ୍ୱୀ କେବଳ ମୋକ୍ଷର ଅଧିକାରୀ ହୁଏ ।

ଏହାଶୁଣି ଋଷଭଦେବଙ୍କର ଜଣେ ପୁତ୍ର ପ୍ରଶ୍ନକଲେ—"ପିତା ! ମୋକ୍ଷ ପ୍ରାପ୍ତିର ସାଧନ କ'ଣ ? କେଉଁ କାର୍ଯ୍ୟ କଲେ ମୋକ୍ଷ ପ୍ରାପ୍ତି ହେବ ।"

ଅତ୍ୟନ୍ତ ଦୃଢ଼ତାର ସହ ଋଷଭଦେବ କହିଲେ—"ଦେଖ ! ମୋକ୍ଷ ପ୍ରାପ୍ତିର ଏକମାତ୍ର ଉପାୟ ହେଉଛି ମହାପୁରୁଷମାନଙ୍କୁ ଶ୍ରଦ୍ଧା ସହିତ ସେବା କରିବା । ଭଗବଦ୍ ଭକ୍ତଙ୍କର ଧନ ହେଉଛନ୍ତି ଶ୍ରୀହରି । ଯେପରି କୃପଣ ନିଜର ଧନକୁ ଅତ୍ୟନ୍ତ ସୁରକ୍ଷିତ ରଖିବା ପାଇଁ ଲୁଚାଇକରି ରଖେ । ସେହିପରି ଭଗବଦ୍ ଭକ୍ତ ମହାପୁରୁଷ ଭଗବାନଙ୍କୁ ନିଜ ହୃଦୟରେ ଲୁଚାଇକରି ରଖେ । ଯେତେବଡ ହୃଦୟହୀନ ପୁରୁଷ ହେଲେ ମଧ୍ୟ ସେବାରେ ସେ ବଶୀଭୂତ ହୁଏ । ପୁଣି ମହାପୁରୁଷମାନେ ଅତ୍ୟନ୍ତ କୃତଜ୍ଞ, ଗୁଣଗ୍ରାହୀ ଏବଂ ପରୋପକାରୀ ଅଟନ୍ତି । ଯେଉଁମାନେ ଭାବପୂର୍ବକ ଶ୍ରଦ୍ଧାର ସହ, ନିଷ୍କପଟ ହୋଇ ଛନ୍ଦକପଟରୁ ପୃଥକହୋଇ ତାଙ୍କର ସେବା କରନ୍ତି, ସେ ସେହି ସେବକକୁ ନିଜ ହୃଦୟର ଧନ ସର୍ବସ୍ୱ ଶ୍ରୀହରିଙ୍କୁ ଦେଇ ଦିଅନ୍ତି, ନିଜରପରି ତିଆରି କରି ଦିଅନ୍ତି । ପରଶମଣି ଲୁହାକୁ ସୁନାରେ ପରିଣତ କଲେ । ମାତ୍ର ଭଗବଦ୍‌ଭକ୍ତ ମହାପୁରୁଷ ନିଜର ସେବକଙ୍କୁ ପରଶମଣି ହିଁ କରିଦିଏ । ଅତଏବ ସତ୍‌ସଙ୍ଗ ହେଉଛି ମୋକ୍ଷର ମାର୍ଗ ।"

ଅନ୍ୟ ଜଣେ ପଚାରିଲେ—"ପିତାଜୀ ! ସାଧୁମାନଙ୍କର ଲକ୍ଷଣ କ'ଣ, କେଉଁ ଚିହ୍ନରୁ ଆମେ ଜାଣିବୁ ଯେ ସେ ସାଧୁ ଅଟନ୍ତି । ଏହିଭଳି ବହୁତ ଅସାଧୁ ପୁରୁଷ ସାଧୁମାନଙ୍କପରି ବେଶଧରି ବୁଲୁଛନ୍ତି । ସେମାନଙ୍କର ସଙ୍ଗଲାଭ କଲେ ମୋକ୍ଷ ତ ମିଳିପାରିବ ନାହିଁ ।"

ଏହା ଶୁଣି ଋଷଭଦେବ କହିଲେ, "ଦେଖ ! ବାହାର ଲକ୍ଷଣରୁ ସାଧୁ ଚିହ୍ନାଯାଏ ନାହିଁ । ସାଧୁମାନଙ୍କୁ ଚିହ୍ନିବା ଅତ୍ୟନ୍ତ କଠିନ । ସାଧୁ କେବଳ ସାଧୁ-ମାନଙ୍କ କୃପାରୁ ହିଁ ଜଣାଯାଏ । ଯାହାଙ୍କୁ କୃପାକରି ସେ ଚିହ୍ନାଇ ଦିଅନ୍ତି, ତାଙ୍କର ଆଗରେ ନିଜର ରୂପ ପ୍ରକଟ କରନ୍ତି । ତଥାପି ସାଧୁମାନଙ୍କର କିଛି ଲକ୍ଷଣ କହୁଛି, ସାଧୁପୁରୁଷ ସମାନଚିତ୍ତ ସମ୍ପନ୍ନ, ତାଙ୍କର ସ୍ୱଭାବ ସଦାସର୍ବଦା ଶାନ୍ତ, ସେ କେବେ ମନରେ କାହାପ୍ରତି କ୍ରୋଧ ପ୍ରକାଶ କରନ୍ତି ନାହିଁ । ସମସ୍ତଙ୍କୁ ସ୍ୱଭାବରେ ବଶୀଭୂତ ଖାଲି କ୍ଷମା କରିଥାନ୍ତି । ସେ କେବେହେଲେ ସଦାଚାରରୁ ବିଚ୍ୟୁତ ହୁଅନ୍ତି ନାହିଁ । ସବୁବେଳେ ଶ୍ରେଷ୍ଠପଥର ଅନୁସରଣ କରିଥାନ୍ତି । ସେ ସମସ୍ତଙ୍କର ହିତୈଷୀ ସୁହୃଦ, ବନ୍ଧୁ, ପରୋପକାରୀ ଏବଂ ଆସ୍ତିକଶୀଳ ଅଟନ୍ତି । ଭଗବାନ ତାଙ୍କର ହିଁ

ସର୍ବସ୍ୱ । ତାଙ୍କର ପ୍ରେମରେ ସଦାସର୍ବଦା ମଗ୍ନ ରହିଥାନ୍ତି । ଲୋକମାନଙ୍କ ପର ସେ ପେଟ ନୁହଁନ୍ତି, ରସନାକୁ ସଦାସର୍ବଦା ଜୟକରିଥାନ୍ତି । ସ୍ତ୍ରୀ, ପୁତ୍ର, ଧନ, ବିଷୟ ଭୋଗ ସମ୍ପର୍କୀୟ ପରିପୂର୍ଣ୍ଣ ଗୃହରେ ତାଙ୍କର ଆଦୌ ଆସକ୍ତି ନଥାଏ । ସେ କେବଳ ଜୀବନ ନିର୍ବାହ ନିମିତ୍ତ ଓ ପରୋପକାର ପାଇଁ ଲୌକିକ କାର୍ଯ୍ୟରେ ନିମଗ୍ନ ରୁହନ୍ତି । ଏହିଭଳି ପୁରୁଷ କେବଳ ମହାପୁରୁଷ । ସେମାନଙ୍କ ସାଧୁ କୁହାଯାଇଛି ଏବଂ ତାଙ୍କର ସଙ୍ଗରୁ ହିଁ ମୋକ୍ଷ ପ୍ରାପ୍ତି ହୁଏ ।"

ଏହା ଶୁଣି କେହି ଅନ୍ୟ ଜଣେ କହିଲା—"ପିତା ! ସଂସାରରେ ସବୁଠାରୁ ବେଶୀ ପ୍ରବେଶ କରିବାର ବସ୍ତୁ କ'ଣ ଅଛି ?"

ଏହା ଶୁଣି ଋଷଭଦେବ କହିଲେ—"ସବୁଠାରୁ ଅଧିକ ସଂସାରରେ ନିମଗ୍ନ ରହିବାର ବସ୍ତୁହେଲା ଚରିତ୍ରହୀନ ପୁରୁଷର ସାଙ୍ଗହେବା । ଯେଉଁ ସ୍ତ୍ରୀର ଚରିତ୍ର ଭ୍ରଷ୍ଟ ହୁଏ, ସେ ଅନ୍ୟ ସ୍ତ୍ରୀର ଚରିତ୍ରକୁ ଭ୍ରଷ୍ଟ କରିବାକୁ ଚେଷ୍ଟାକରେ ।

ଏହିଭଳିଭାବେ ଚରିତ୍ରହୀନ ପୁରୁଷର ସଙ୍ଗ କରିବାଦ୍ୱାରା ତାଙ୍କର ସାଙ୍ଗ ମଧ୍ୟ ଚରିତ୍ରହୀନ ହୋଇଯାଏ । ଯେଭଳି ସଙ୍ଗ କରିବ, ସେହିଭଳି ପ୍ରଭାବ ପଡ଼ିବ । ଯେପରି ଖାଇବ, ସେପରି ହିଁ ବାନ୍ତି କରିବ । ଧଳାବସ୍ତ୍ରକୁ ଯେଉଁପରି ରଙ୍ଗ ମଧ୍ୟରେ ପକାଇବ, ସେହିପରି ରଙ୍ଗ ତା ଉପରେ ଚଢ଼ିଯିବ । ଏଇଥିପାଇଁ ମୋକ୍ଷ ମାର୍ଗର ଲୋକମାନଙ୍କ ସଦାସର୍ବଦା ସ୍ତ୍ରୀ ଲମ୍ପଟ ବିଷୟୀ ପୁରୁଷଙ୍କର ସଙ୍ଗଠାରୁ ଦୂରରେ ରହିବା ଉଚିତ ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ । ଏହିଭଳି ଭାବରେ ଭଗବାନ ଋଷଭଦେବ ଅନେକ ଯୁକ୍ତି, ଦୃଷ୍ଟାନ୍ତ ଏବଂ ଗଳ୍ପଦ୍ୱାରା ନିଜର ପୁତ୍ରମାନଙ୍କୁ ଭିନ୍ନ ଭିନ୍ନ ଉପଦେଶ ଦେଲେ । ସେ ପ୍ରଥମେ ସଂସାରର ଅସାରତା ବର୍ଣ୍ଣନା କଲେ, ପୁଣି ମନୁଷ୍ୟ ଶରୀରର ମହତ୍ତ୍ୱକଥା କହିଲେ ଏବଂ ଜୀବର ପରମ ପୁରୁଷାର୍ଥ ବୁଝାଇଲେ । କେଉଁ ପ୍ରାଣୀ କେଉଁଥିଠାରୁ ଶ୍ରେଷ୍ଠ, ତାହାର ତାରତମ୍ୟ ବୁଝାଇ ବ୍ରାହ୍ମଣମାନଙ୍କୁ ସର୍ବଶ୍ରେଷ୍ଠ ଭାବରେ ସିଦ୍ଧକଲେ । ନିଜର ପୁତ୍ରମାନଙ୍କୁ ସବୁକାର୍ଯ୍ୟ ବୁଦ୍ଧିମାନ ସଦାଚାରୀ ଧର୍ମପ୍ରାଣ ବ୍ରାହ୍ମଣମାନଙ୍କର ସମ୍ମତି ନେଇ ହିଁ କରିବାକୁ ଆଦେଶ ଦେଲେ ପରିଶେଷରେ ସେ କହିଲେ—"ମୋର ପୁତ୍ରମାନେ ! ତୁମେ ଏହି ଜଗତର ବସ୍ତୁକୁ ଶ୍ରୀହରିଙ୍କର ସ୍ୱରୂପ ମାନି ପ୍ରତ୍ୟେକ ପ୍ରାଣୀମାନଙ୍କୁ ମୋ ସମାନ ପୂଜ୍ୟବୋଲି ଭାବି ଶ୍ରଦ୍ଧାପୂର୍ବକ ସଦାସର୍ବଦା ସେବାକର । ପ୍ରାଣୀମାନଙ୍କୁ ପୂଜା କରିବା ହିଁ ମୋର ସବୁଠାରୁ ବଡ଼ ପୂଜା । ମନ ହୃଦୟ ଓ କର୍ମ ସବୁ ଭାବରେ ସେହି

ଭକ୍ତବତ୍ସଳ ଭଗବାନଙ୍କୁ ସମସ୍ତଙ୍କଠାରେ ସମାନଭାବରେ ବ୍ୟାପ୍ତ ହୋଇଥିବାର ଭାବି ପ୍ରଣାମକର, ନମସ୍କାର କର, ତେବେ ତୁମେ ଏହି ମହାମୋହରୁ ମୁକ୍ତି ପାଇବ ।” ଏହିଭଳି ଭାବରେ ସେ ତାଙ୍କର ସଦାସର୍ବଦା ଆଗ୍ରହଯୁକ୍ତ ଯୋଗ୍ୟ ପୁତ୍ରମାନଙ୍କୁ ଭଲମନ୍ଦ ଶିକ୍ଷାଦେଇ ସମସ୍ତଙ୍କର ସନ୍ଦେହକୁ ମୋଚନ କଲେ ।

## ଛପ୍ପୟ

ବିଷୟ ଭୋଗି କେ କବହୁଁ କୋଉ ନର ସୁଖ ନହିଁ ପାବେ ।
ତୈଁ ନର ଜୀବନ ରତ୍ନ କାଁଚ ଦେ ବ୍ୟର୍ଥ ଗମାବେ ॥
ସୁଖ ସ୍ୱରୂପ ସର୍ବେଶ ସତତ ହୃଦୟ ମାହିଁ ବିରାଜେ ।
କସ୍ତୁରୀ ମୃଗ, ଯଥା ବିଷୟ ବନ ଖୋଜେ ଭାଜେ ॥
ବିମୟୀନର ହୈଁ ବିଷ ସରସ, ମୋକ୍ଷ ମଲ ହୈଁ ସତ ଜନ ।
ଚଢ଼ଇ ରଙ୍ଗ ସେ ହୋହି ସଙ୍ଗ, ଶ୍ୱେତ ବସନ ସମ କହେଁମନ ॥



# ଭଗବାନ ଋଷଭଦେବଙ୍କ
# ଅବଧୂତ ବୃତ୍ତି

ଅଥେତ୍ଥା ନୁ ବଂଶୋ ଯଶସାବଦାତଃ
ପ୍ରିୟବ୍ରତୋ ଯତ୍ର ପୁମାନ ପୁରାଣଃ
କୃତାବତାରଃ ପୁରୁଷଃ ସ ଆଦ୍ୟଃ
ଚଚାର ଧର୍ମ ଯଦକର୍ମ ହେତୁମ ।।

( ଭାଗବତ ୫-ସ୍କନ୍ଧ ୬-ଅଧ୍ୟାୟ ୧୪ ଶ୍ଳୋକ )

### ଛପ୍ପୟ

ଋଷଭ ଚରିତ ଅତି ଗୂଢ଼ ମୂଢ଼ ନର ମର୍ମ ନ ଜାନେ ।
ନିରଖି ନଗ୍ନ ଉନ୍ମତ୍ତ ସିଦ୍ଧ ପାଗଲ ସବ ମାନେ ।।
ପ୍ରଗଟେଁ ପାରମହଂସ ଧର୍ମ କରି ଶିକ୍ଷା ଦିନ୍ହୀ ।
କରଯୋ ଦିଗମ୍ବର ବେଷ ବେଦ ବିଧି ପୂରୀ କିନ୍ହି ।।
ବାଳକ ସମ ଖେଲେଁ ବନେ, ପୃଥ୍ୱୀ ପୈଁ ବିଚରତ ଫିରହିଁ ।
ମାର ପିଟେ ଦୁଷ୍ଟଜନ, ସୁଖ ଦୁଃଖ ମାହିଁ ଇକ ସମ ରହହିଁ ।।

ସୁଖ ହେଉ, ଦୁଃଖ ହେଉ, ମାନ ବା ଅପମାନ ହେଉ, ସତ୍କାର ବା ତିରସ୍କାର ହେଉ, ଯେ ପର୍ଯ୍ୟନ୍ତ ଶରୀରରେ ପ୍ରାଣ ଅଛି, ସେ ପର୍ଯ୍ୟନ୍ତ ଏହାକୁ ଚଳାଇବାକୁ ହେବ । ଦ୍ୱନ୍ଦ୍ୱରେ ଯେ ପର୍ଯ୍ୟନ୍ତ ସାମ୍ୟବୁଦ୍ଧି ନ ହେବ, ସେ ପର୍ଯ୍ୟନ୍ତ କୈବଲ୍ୟ ପଦ ପ୍ରାପ୍ତ ହେବା ଅସମ୍ଭବ, ଅଶକ୍ୟ ମଧ୍ୟ । ଜ୍ଞାନ ଦୃଷ୍ଟିରୁ ଦେଖିଲେ ମଳ ଏବଂ ଚନ୍ଦନ ଭିତରେ ପାର୍ଥକ୍ୟ କେଉଁଠି ? ମଳ ବ୍ୟକ୍ତିର ବିକାର ଏବଂ ଚନ୍ଦନ ମଧ୍ୟ ବିକାର । ସୁଗନ୍ଧ ଓ ଦୁର୍ଗନ୍ଧର କଳ୍ପନା ଆମେ ନିଜେ ହିଁ କରି ଦେଇଛେ । ଜ୍ଞାନ

ଦୃଷ୍ଟିରେ ଆମେ ଏପରି କହୁଦେଉଛୁ ଯେ ସବୁଠାରେ ଶ୍ରୀହରି ବିରାଜମାନ କରୁଛନ୍ତି । ଜଗତ ହେଉଛି ତାଙ୍କର ରୂପ; ମାତ୍ର ଯେତେବେଳେ ଆମ ଗଳାରେ ସୁଖ ସମ୍ପର୍କିତ ବାହୁ ବେଢ଼ି ଯାଉଛି, ପ୍ରସନ୍ନତାରେ ଆମର ରୁମ ମୂଳ ଝାଙ୍କୁରି ଉଠେ । ମାତ୍ର ଯଦି କେହି ଭୟଙ୍କର ସାପକୁ ଗଳାରେ ପକାଇଦିଏ, ତେବେ ଆମେ ଡର ଭୟରେ ଥର ଥର କମ୍ପିବାକୁ ଲାଗିଯାଉ । ଆମର ସମସ୍ତ ଜ୍ଞାନ, ଧ୍ୟାନ ଜଣାଯାଏ ନାହିଁ କେଉଁଆଡ଼େ ଯାଉଛି, ଆମେ ତାକୁ ଗଳାରୁ ନିଷ୍କାସନ କରି ଦୌଡ଼ୁ । ବାସ୍ତବରେ ଦେଖିଲେ ଜଣାଯାଏ ଯେ ସ୍ତ୍ରୀ ଲୋକର ବାହୁ ଏବଂ ସାପ ଭିତରେ କୌଣସି ପ୍ରଭେଦ ନାହିଁ । ଉଭୟ ପଞ୍ଚଭୂତରେ ହିଁ ପ୍ରସ୍ତୁତ, ଉଭୟରେ ଚୈତନ୍ୟସତ୍ତା ବିରାଜମାନ । ଉଭୟ ସଚ୍ଚିଦାନନ୍ଦଙ୍କର ସ୍ୱରୂପ, କିନ୍ତୁ ଯେ ପର୍ଯ୍ୟନ୍ତ ନିର୍ଭୟ ପାଦର ପୂର୍ଣ୍ଣ ରୂପରେ ପ୍ରାପ୍ତି ନ ହୋଇଛି, ଯେ ପର୍ଯ୍ୟନ୍ତ ଶରୀରରେ ରହି ମଧ୍ୟ ଜୀବନ୍ମୁକ୍ତ ସ୍ଥିତିକୁ ପ୍ରାପ୍ତ ନ ହୋଇଛନ୍ତି, ସେ ପର୍ଯ୍ୟନ୍ତ ଭେଦଭାବ ରହିବ । ଭେଦଭାବ ହେଉଛି ବନ୍ଧନ । ଏହା ହିଁ ସଂସାର ରୂପରେ ବିଭିନ୍ନ ଲୋକରେ ବୁଲାଏ । ଏହି ଭେଦଭାବ ପରମହଂସ ବୃତ୍ତି ଧାରଣ ନ କଲା ପର୍ଯ୍ୟନ୍ତ ପରିସମାପ୍ତି ଘଟେ ନାହିଁ । ଏହା ହିଁ ଅନ୍ତିମ ସ୍ଥିତି, ଏହା ହିଁ ଶେଷ ଗତି, ଏହା ହିଁ ପରାକାଷ୍ଠା ।

ମହାରାଜା ପରୀକ୍ଷିତ ପଚାରିଲେ— "ପ୍ରଭୋ ! ଭଗବାନ ଋଷଭଦେବ ନିଜର ପୁତ୍ରମାନଙ୍କୁ ଶିକ୍ଷା ଦେବା ପରେ କ'ଣ କଲେ ? ସେ କେଉଁ ଆଶ୍ରମର ପାଳନ କଲେ ?"

ଏହାର ଉତ୍ତରରେ ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ୍ ଋଷଭଦେବ ଏହି ଅନର୍ଥ ପରମ୍ପରାଗତ ପୃଥିବୀକୁ ମିଥ୍ୟା ବୋଲି ଜାଣି ନିଜର ସବୁଠାରୁ ବଡ଼ ପୁଅ ଭରତକୁ ଚକ୍ରବର୍ତ୍ତୀ ପଦରେ ଅଧିଷ୍ଠିତ କରାଇ, ଅନ୍ୟ ସମସ୍ତ ଭାଇମାନଙ୍କୁ ବିଭିନ୍ନ ଦେଶରେ ରାଜା କରାଇ ବଣକୁ ଚାଲିଗଲେ । ସେ ଘରେ ରହି ମଧ୍ୟ ଆହବନୀ, ଇତ୍ୟାଦି ସମସ୍ତ ଅଗ୍ନିମାନଙ୍କୁ ନିଜେ ସ୍ଥାପନା କରି ନିରଗ୍ନି ହୋଇଗଲେ । ଜ୍ଞାନ ହୋଇଯିବା ପରେ ସେ ଅଗ୍ନିହୋତ୍ରକୁ ମଧ୍ୟ ତ୍ୟାଗକଲେ । ଏହା କହିବା ଅସଙ୍ଗତ ଯେ ଜ୍ଞାନ ହୋଇଯିବା ପରେ ସେ ଏହା କଲେ କାରଣ ଅଜ୍ଞାନ ତାଙ୍କୁ କେତେବେଳେ ହେଲେ ସ୍ପର୍ଶ କରିନାହିଁ; ସେ ସର୍ବଦା ଜ୍ଞାନ ସ୍ୱରୂପ କିନ୍ତୁ ଲୌକିକ ଦୃଷ୍ଟିରୁ, ପ୍ରାଣୀମାନଙ୍କୁ ଶିକ୍ଷା ଦେବାପାଇଁ, ପରମହଂସ ଧର୍ମର ଶ୍ରେଷ୍ଠତ୍ୱ ସ୍ଥାପନ କରିବା ପାଇଁ, ସେ ମହାମୁନିମାନଙ୍କ ଦ୍ୱାରା ଅନୁମୋଦିତ ଏବଂ ପୂଜିତ ଭକ୍ତିଜ୍ଞାନ ଏବଂ ବୈରାଗ୍ୟ ରୂପକ ଶ୍ରେଷ୍ଠ ଆଶ୍ରମର ମହତ୍ତ୍ୱ ଦେଖାଇବା ପାଇଁ ପାଗଳଙ୍କପରି ବେଶଧାରଣ କଲେ । ତାଙ୍କ ଭିତର ଜ୍ଞାନର ଜ୍ୟୋତି ପ୍ରଜ୍ୱଳିତ ହେଉଥିଲା ତଥାପି ସେ ଅଜ୍ଞାନୀମାନଙ୍କ ପରି ଆଚରଣ କରୁଥିଲେ । ସେ ସମସ୍ତ

ବାହାରର ବସ୍ତ୍ର ଖୋଲିକରି ଫିଙ୍ଗିଦେଲେ, ପାଗଳ ଏବଂ ପିଶାଚଙ୍କ ପରି କେଶ ମୁକୁଳା କରି ଉଲଗ୍ନ ହୋଇ ଏଣ୍ଡାଡ଼େ ସେଆଡ଼େ ଲକ୍ଷ୍ୟହୀନ ଭାବରେ ଭ୍ରମଣ କରିବାକୁ ଲାଗିଗଲେ ।

ନିଜଦେଶ ବ୍ରହ୍ମାବର୍ତ୍ତରୁ ବାହାରି ଯେଉଁଆଡକୁ ମୁହଁଗଲା, ସେଇ ଦିଗକୁ ସେ ଚାଲିବାକୁ ଲାଗିଲେ । ବୁଦ୍ଧିର ଭଣ୍ଡାର ହୋଇଥିଲେ ମଧ୍ୟ ସେ ବୁଦ୍ଧିହୀନ ମୂର୍ଖଙ୍କ ପରି ହୋଇଗଲେ । ଦିବ୍ୟଦୃଷ୍ଟି ରହିଥିଲେ ମଧ୍ୟ ଅନ୍ଧପରି ସେ ବୃକ୍ଷମାନଙ୍କ ଦେହରେ ବାଡ଼େଇ ହେଲେ । ଦିବ୍ୟବାଣୀ ହୋଇଥିଲେ ମଧ୍ୟ ବାରମ୍ବାର ଡାକିବା ସତ୍ତ୍ୱେ ସେ କଥା କହିଲେ ନାହିଁ । ଲୋକମାନେ ତାଙ୍କୁ ଜଡ଼ା ଭାବିଲେ ପଛରୁ ଲୋକମାନେ ଡାକନ୍ତି, ଢୋଲ ବଜାନ୍ତି, ହୋ, ହା, ହା, ହୁ, ହୁ କରନ୍ତି ମାତ୍ର ସେ ପଛକୁ ଉଲେଆତ ମୁହଁ ବୁଲାଇ ଚାହାନ୍ତି ନାହିଁ । ସେଥିପାଇଁ ଲୋକମାନେ ତାଙ୍କୁ କାଲ ବୋଲି ଭାବିଲେ । ବାଳ ମୁକୁଳା, ଶରୀରର ଧୂଳିରେ ଧୂସରିତ, ଦେହରେ କାଦୁଅ ବୋଳା ହୋଇଛି । ସେ ହାତ ହଲାଇ ଦୌଡ଼ୁଛନ୍ତି । ପିଶାଚ ଏବଂ ଉନ୍ମତ୍ତମାନଙ୍କ ପରି ବେଶ ଦେଖି କୁକୁରମାନେ ଭୁକନ୍ତି, ପିଲାମାନେ ତାଳି ବଜାଉଛନ୍ତି, ମାତ୍ର ସେ ଚୁପ୍‌ଚାପ୍ ମୌନବ୍ରତ ଧାରଣକରି ନିଜର ଧ୍ୟାନରେ ମଗ୍ନ-ରହି, ସିଂହପରି ଚାଲି ଯାଉଥାନ୍ତି । କେତେବେଳେ କେଉଁ ପୁରରେ ପ୍ରବେଶ କରନ୍ତି, କେବେ ଅବା କୌଣସି ଗ୍ରାମରେ ଯାଇ ରହିଯାନ୍ତି । କେତେବେଳେ ସୁନା, ରୁପା, ଶିଶା, କୋଇଲା ଇତ୍ୟାଦି ଖଣିମାନଙ୍କରେ ପଶିଯାଇ ଖଣିରେ କାମ କରୁଥିବା ଲୋକମାନଙ୍କ ସହିତ ମିଶିଯାନ୍ତି । କେବେ ଚଷାର କ୍ଷେତରେ ପଡ଼ିଯାନ୍ତି, କେବେ କୌଣସି ମାଲୀ ବା ବାଡ଼ିବାଲାର ବଗିଚାରେ ପଶିଯାଇ ତରଭୁଜ ଖାଆନ୍ତି, କେବେ ପର୍ବତ ନିକଟସ୍ଥ ଗ୍ରାମରେ ଭ୍ରମଣ କରନ୍ତି । କେବେ ସେନା ଛାଉଣୀ ଭିତରେ ପଶନ୍ତି । ସେଠାରେ ସୈନିକମାନେ ତାଙ୍କୁ ଭିଡ଼ାଓଟରା କଲେ ସେମାନଙ୍କୁ ଧରି ନାନାଦି ପ୍ରଶ୍ନ କରନ୍ତି । କେହି ଗୁପ୍ତଚର ଭାବନ୍ତି, କେହି ସିଦ୍ଧପୁରୁଷ କହନ୍ତି । ତାଙ୍କର ଆନନ୍ଦ ନାହିଁ କିମ୍ବା ଦୁଃଖ ମଧ୍ୟ ନାହିଁ । ଧରପକାଇଲେ, ବସିଗଲେ ଛାଡ଼ିଦେଲେ, ଚାଲିଗଲେ । କେବେ କେବେ ଗ୍ରାମବାହାରେ ଗୋଶାଳାରେ ଯାଇ ବାଛୁରିମାନଙ୍କ ସହିତ ଶୋଇଯାନ୍ତି । ବାଛୁରିମାନଙ୍କ ସହିତ କଥାବାର୍ତ୍ତା କରନ୍ତି । କେବେ ଗଉଡ଼ଘରେ ପଶି ଲବଣୀ ଖାଆନ୍ତି, ଦହି ପିଅନ୍ତି, ଘିଅ ଲଗାନ୍ତି ମୋଟା ମୋଟା ରୁଟିମାନଙ୍କୁ ଖାଇଯାନ୍ତି । କେବେ କେବେ ଦଳ ଦଳ ଯାତ୍ରୀମାନଙ୍କ ସହିତ ଆଗକୁ ଆଗକୁ ମାଡ଼ିଯାନ୍ତି, ମାସ ମାସ ଧରି ସେମାନଙ୍କ ସହିତ ଯାଆନ୍ତି । ଫେରନ୍ତି ତ ଫେରି ଆସନ୍ତି । ଉତ୍ତର ଦିଗକୁ ଯାଉଛନ୍ତି, ଦକ୍ଷିଣକୁ ମୁହଁକଲେ ସେଆଡ଼କୁ ମାଡ଼ିଯାନ୍ତି । କେତେବେଳେ ପାହାଡ ଚୂଡ଼ା ଉପରେ ଚଢ଼ନ୍ତି, କୌଣସି ପଥରଖଣ୍ଡ

ଉପରେ ପଡ଼ିଯାନ୍ତି । କେବେ ଗହନ ବନରେ ଭ୍ରମଣ କରନ୍ତି, କେବେକେବେ ଜ୍ଞାନୀ ଓ ମହାତ୍ମାମାନଙ୍କର ଆଶ୍ରମକୁ ଯାଇ ତାଙ୍କ ସାହାଯ୍ୟରେ କୃତକୃତ ହୁଅନ୍ତି ।

ଅଜ୍ଞାନୀ ମୂର୍ଖ ଅନ୍ୟକୁ ହଇରାଣ କଲେ ଆନନ୍ଦ ପାଏ । ବିଶେଷଭାବେ ସେମାନେ ମହାତ୍ମାମାନଙ୍କୁ ଅନେକ କଷ୍ଟ ଦିଅନ୍ତି । ଯେପରି କପଟୀ ପୁରୁଷ ଯାହାକୁ ଦେଖେ, ତାକୁ କପଟୀ ବୋଲି ଭାବେ ଏବଂ ଅକାରଣରେ ପରୀକ୍ଷା ନେବାପାଇଁ ବିଭିନ୍ନ ପ୍ରକାର କ୍ରୂରତା ଆଚରଣ କରେ, ସେହିଭଳି ଦୁଷ୍ଟ ଲୋକମାନେ କୌତୂହଳୀ ହୋଇ ମହାତ୍ମାମାନଙ୍କ ଉପରେ ପ୍ରହାର କରନ୍ତି, ସେମାନଙ୍କର ମର୍ମସ୍ଥାନ ମାନଙ୍କରେ ଆଘାତ ଦିଅନ୍ତି, ଗାଳି ଦିଅନ୍ତି, ଅପମାନ କରନ୍ତି, ଦେଖନ୍ତି ସେ ମହାତ୍ମା କି ମିଛ ଭଣ୍ଡ । ବାସ୍ତବପକ୍ଷେ ସେମାନେ ଅନ୍ୟକୁ ଦୁଃଖ ଦେଇ ଆନନ୍ଦ ଲାଭକରନ୍ତି । ଏଇଥିପାଇଁ ସେମାନେ ଏପରି କରନ୍ତି ।

ଯେଉଁଆଡ଼େ ମୁକୁଳିତ କେଶ ଦିଗମ୍ବର ଋଷଭଦେବ ଯାଆନ୍ତି, ସେଆଡେ ଦୁଷ୍ଟଲୋକମାନେ ତାଙ୍କୁ ଦେଖି ହସନ୍ତି । କେହି କେହି କହନ୍ତି ବଡ଼ ଠକ, କେହି କହନ୍ତି ମହାତ୍ମା, ଅନ୍ୟ ତାହାର ବିରୋଧ କରନ୍ତି । ଯଦି କୌପୁନୀ ଫିଙ୍ଗିଦେଲେ କେହି ମହାତ୍ମା ହୋଇଯାଏ, ତେବେ, ଆମେ ମଧ୍ୟ ଲଙ୍ଗଳା ହୋଇଯିବୁ । କେହି କହେ "ଆରେ ଭାଇ ଏତ ସମଦର୍ଶୀ ।" ଅନ୍ୟ ଦୁଷ୍ଟଟି କହେ, "ବର୍ତ୍ତମାନ ମାଡ଼-ଖାଇଲେ ସବୁ ସମଦର୍ଶୀପଣ ଭୁଲିଯିବ ।" କେହି ତାଙ୍କ ଅଣ୍ଟାକରି ଗାଳିଦେଇ କହେ, ଆରେ ହେ ଲଙ୍ଗଳାବାବା ରହ । ଠକ କେଉଁଠିକାର ବାବାଜୀ ସାଜିଛୁ । ଲଙ୍ଗଳା ହୋଇ ବୁଲିବା ପାଇଁ ତୋତେ ଲଜ୍ଜା ଲାଗୁନାହିଁ ।' କେହି ଏତିକିରେ ଦୌଡ଼ିଯାଇ ଦୁଇ ଚାହାର ବସାଇଦିଏ । ଦୁଷ୍ଟମାନଙ୍କର ଯନ୍ତ୍ରଣା ପାଇଁ ସେ ଚୁପ୍‌ଚାପ୍ ବସିପଡ଼ନ୍ତି । ଏହା ଉପରେ କେହି ତାଙ୍କର ଶରୀର ଉପରେ ଅଳ୍ପ କଷ୍ଟ କରେ, କେହି ବେଶୀ । କେହି ଛେପ ପକାଏ, କେହି ଇଟା ପଥର ଉଠାଇ କରି ମାରେ, ଯାହା ଫଳରେ ଶରୀରରୁ ବହୁ ସ୍ଥାନରୁ ରକ୍ତ ଝରେ । କେହି ରକ୍ତ ବୋହିଲା, ରକ୍ତ ବୋହିଲା କହି ତାଙ୍କ ଉପରକୁ ଧୂଳି ପକାଏ । କେହି ଦୁଷ୍ଟ ଠେଙ୍ଗା ଉଠାଇ ନିଜର ସମସ୍ତ ଶକ୍ତି ଖର୍ଚ୍ଚ କରି ତାଙ୍କ ଉପରକୁ ପକାଇଦିଏ ଏବଂ ହସି ହସି ବେଦମ ହୋଇଯାଏ । କେହି ଖରାପ ଗାଳିମାନ ବର୍ଷଣ କରନ୍ତି । ଏତେ କଥା ହେଲେ ମଧ୍ୟ ଭଗବାନ ଋଷଭଦେବ କାହାକୁ କିଛି କହନ୍ତି ନାହିଁ । ତାଙ୍କ ଶରୀରରେ ଆସକ୍ତି ନ ଥାଏ କିମ୍ବା ନିଜ ପରେ ଅଭିମାନ । କେହି ମାରିଦିଏ ତ ସହିଯାନ୍ତି, ବସାଇଲେ ବସି ପଡ଼ନ୍ତି । ଘଉଡ଼ାଇ ଚାଲିଯାନ୍ତି । ଏହିଭଳି ଭାବେ ନିରୁଦ୍ଦେଶ ଭାବେ ଦ୍ୱନ୍ଦ୍ୱ ସହି ସହି ବୁଲୁଥାନ୍ତି ।

ଶରୀରରେ ଧୂଳି ଲାଗି ରହିଥିଲେ ମଧ୍ୟ, ବାଳ ଶୁଖିଲା ଏବଂ ଲଖି ଯାଇଥିଲେ ବି, ଶରୀରରେ ବସ୍ତ୍ର ଆବରଣ ନ ଥିଲେ ମଧ୍ୟ, ସେ ଅତ୍ୟନ୍ତ ସୁନ୍ଦର ଦେଖାଯାଇଥାନ୍ତି। ଧୂଳିରେ ମିଶି ଯାଇଥିବା ସତ୍ତ୍ୱେ ମଣି, ମଣି ଅଟେ। ତାଙ୍କର ଜନ୍ମ କୁଳୀନବଂଶରେ ହୋଇଥିଲା। ସେ ଦେଖିବାକୁ ଥିଲେ ଅତ୍ୟନ୍ତ ରୂପବାନ୍। ତାଙ୍କର ପ୍ରତ୍ୟେକ ଅଙ୍ଗ ଥିଲା ସୁନ୍ଦର, ସୁକୁମାର, ସୁଗୋଲ ଏବଂ ଲାବଣ୍ୟଯୁକ୍ତ, ହାତର ପାପୁଲି ଗୁଡ଼ିକ, ଗୋଡର ପାଦଦ୍ୱୟ, ଓଠ ଏବଂ ଆଖିର ଭିତର ପଲକ ଅରୁଣ ବର୍ଣ୍ଣ ସଦୃଶ ଥିଲା। ବାହୁ ଏବଂ ବକ୍ଷସ୍ଥଳ ଥିଲା ବିଶାଳ, କାନ୍ଧ ସୁପ୍ରଶସ୍ତ ଏବଂ ସିଂହ ସମାନ ଥିଲା, କଣ୍ଠ ସୁଡ଼ୋଲ ଏବଂ ଶଙ୍ଖ ସଦୃଶ କମନୀୟ, ନାକ ସୁନ୍ଦର ଶୁକପକ୍ଷୀ ପରି ମନୋହର ଥିଲା। ତାଙ୍କର ମୁଖ ପଦ୍ମ ନାଭି ପରି, ମନ୍ଦ ସ୍ମିତହାସ୍ୟ ଲାବଣ୍ୟମୟ ଏବଂ ଆକର୍ଷକ ଥିଲା। ଯେଉଁ ପୁର, ନଗର ବା ଗ୍ରାମ ଦେଇ ସେ ଚାଲି ଯାଉଥିଲେ, ସେଠାରେ ସମସ୍ତଙ୍କ ମନକୁ ମୋହିତ କରି କାମବାଣରେ ସ୍ତ୍ରୀଲୋକମାନଙ୍କୁ ଜର୍ଜରିତ କରି ମନ୍ଦ ସୁଗନ୍ଧିତ ପବନ ସଦୃଶ ସମସ୍ତଙ୍କର ଚିତ୍ତକୁ ପ୍ରସନ୍ନ କରି ସେ ଚାଲି ଯାଉଥିଲେ। କପାଳକୁ ଛୁଇଁ କରି, ହଲକରି ଚୁମ୍ବନ କରୁଥିବା ତାଙ୍କର କଳାକୁଞ୍ଚିତ ଭ୍ରମର ସମୂହ ସଦୃଶ କେଶରାଶି କେଉଁଠି କେଉଁଠି ଲେଟି ଯାଇଁ ଲଟା ପରି ହୋଇ ଯାଇଥିଲେ। ସେହି ଜଟାମାନଙ୍କର ଗୁରୁତ୍ୱରକୁ ଧାରଣ କରି ସେ ସ୍ୱଚ୍ଛନ୍ଦ ରୂପେ ହରିଣ ପରି, ମଦମତ୍ତ ହସ୍ତୀ ପରି ଭ୍ରମଣ କରୁଥିଲେ। ଲୋକମାନେ ତାଙ୍କ ଉପରକୁ ଟେକା, କାଦୁଅ, ପଥର ପକାନ୍ତି, ମାରନ୍ତି, ପିଟନ୍ତି, ମାତ୍ର ସେ କୌଣସି କଥା ପ୍ରତି ଧ୍ୟାନ ଦିଅନ୍ତି ନାହିଁ।"

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍! ଏତେବଡ଼ ମହାପୁରୁଷ ଈଶ୍ୱର ଅବତାର ଜ୍ଞାନୀ ମହାପୁରୁଷଙ୍କୁ ମୂର୍ଖ ଲୋକମାନେ ଏତେ କଷ୍ଟ କାହିଁକି ଦେଉଥିଲେ? ସେ ତ ଶରୀରରେ ଲଙ୍ଗଳା, କଥା କହୁ ନ ଥିଲେ। କାହାର କୌଣସି ଅପକାର କରୁ ନଥିଲେ; ତଥାପି ତାଙ୍କୁ ଦଣ୍ଡ ଦେବାରେ କାହାର କଣ ଲାଭ ହେଉଥିଲା?

ଏହା ଶୁଣି ହସି ହସି ଶ୍ରୀ ଶୁକ କହିଲେ—"ରାଜନ୍! ଦୁଷ୍ଟ ଲୋକମାନେ କ'ଣ କୌଣସି ଲାଭ ପାଇଁ ଏପରି କାର୍ଯ୍ୟ କରିଥାନ୍ତି? ସାଧୁ ପୁରୁଷମାନଙ୍କୁ କଷ୍ଟ ଦେବା ଦୁଷ୍ଟମାନଙ୍କର ସ୍ୱଭାବ। ହାତୀ ନିଜ ରାସ୍ତାରେ ଚାଲିଯାଏ, କୁକୁର ତାକୁ ଦେଖି ଭୁକିବାକୁ ଲାଗେ। ସିଂହ ସ୍ୱଚ୍ଛନ୍ଦରେ ବଣରେ ବିଚରଣ କରେ, ମାଛି ମାନଙ୍କର କୌଣସି ଅପକାର କରେ ନାହିଁ; ମାତ୍ର ସେମାନେ ତାକୁ କଷ୍ଟ ଦିଅନ୍ତି। ଏହିପରି ଭାବରେ ଦୁଷ୍ଟ ଲୋକମାନେ ସାଧୁ ପୁରୁଷଙ୍କୁ ଦେଖିବା ମାତ୍ରେ ଦ୍ୱେଷ କରିଥାନ୍ତି। ତାଙ୍କୁ କଷ୍ଟ ଦେବାପାଇଁ ଅନେକ ପ୍ରକାର ଚେଷ୍ଟା କରନ୍ତି।

ଶ୍ରୀ ଶୁକ କହିଲେ—"ଏହି ପ୍ରକାର ଭାବରେ ରାଜନ୍ ! ସ୍ୱଚ୍ଛନ୍ଦରେ ବୁଲୁଥିବା ଭଗବାନ ଋଷଭ ଜୀବନ୍ମୁକ୍ତ ଆନନ୍ଦ ପାଇବାକୁ ଲାଗିଲେ । ପରମାର୍ଥ ପଥ ପାଇଁ ପଥିକମାନଙ୍କୁ ନିଜର ଆଚରଣ ଦ୍ୱାରା ପରମହଂସ ଧର୍ମ ଶିକ୍ଷା ଦେବାକୁ ଲାଗିଲେ ।"

## ଛପ୍‌ପୟ

କୋଇଁ ଫେକେ ଢେଲ ପେଶ ତେଁ କୋଇ ମାରେ ।
ତ୍ୟାଗୀ ଦେହି ମଲ ମୂତ୍ର ଧୂଲି ଖଲ କୋଇ ଡ଼ାରେ ।।
କୋଇ ଗାରୀ ଦେହି ଦୁଷ୍ଟ ଢୋଗୀ କହି ଆୟୋ ।
ଉ୍ଗ ବଦ୍ୟା କେ ହେତୁ ଧୂର୍ତ୍ତ କେ ବେଷ ବନାୟୋ ।।
ସ୍ୱାର୍ଥ ହିତ ପାଗଲ ବନେ୍ୟା, ସବ ସମୁଝେଂ ସ୍ୟାନେ ଖରେ ।
ସବ୍ ମିଲ ଜା ଅବଧୂତ କୀ, ଲାଠି ତେଁ ପୂଜା କରେ ।।



# ଭଗବାନ ଋଷଭଦେବଙ୍କର
# ଅଜଗରୀ ବୃତ୍ତି

**କୋ ନ୍ୱସ୍ୟ କାଷ୍ଠାମପରୋଽନୁଗଚ୍ଛେନ୍**
**ମନୋରଥେନାପ୍ୟଭବସ୍ୟ ଯୋଗୀ ।**
**ଯୋ ଯୋଗମାୟାଃ ସ୍ପୃହୟତ୍ୟୁଦସ୍ତା**
**ହ୍ୟସତ୍ତୟା ଯେନ କୃତପ୍ରୟତ୍ନାଃ ॥**

( ଭାଗବତ ୫ମ ସ୍କନ୍ଧ ୬ ଅଧ୍ୟାୟ ୧୫ ଶ୍ଳୋକ )

## ଛପ୍ପୟ

**ମାରେ ପିଟେ ମୂର୍ଖ ହୋଇ କ୍ଷତ ବିକ୍ଷତ ତନୁ ସବ ।**
**ତାତେ ତ୍ୟାଗେୟା ଗମନ ରହେଁ ଅଜଗର ସମ ନୃପ ଭବ ॥**
**ପାନୀ ପଶୁ ସମ ପିୟେଁ ଲେଟିକେଁ ଭିକ୍ଷା ପାବେଁ ।**
**ତ୍ୟାଗୀ ଦେହହୁଁ ମଳମୂତ୍ର ଅଙ୍ଗ ବିଷ୍ଟା ଲପଟାବେଁ ॥**
**କରେଁ ଘୃଣିତ ବ୍ୟାପାର ଜବ, ଫଟକେଁ ନହିଁ ଖଳ ପାସ ତବ ।**
**ଜନ୍ମ କୃତାରଥ କରନକୁଁ, ଆଇ ତନ ଢିଁଗ ସିଦ୍ଧି ସବ ॥**

ସଂକଳ୍ପ ବ୍ୟତୀତ ଶରୀରର କୌଣସି କାର୍ଯ୍ୟ ହୋଇପାରେ ନାହିଁ । ଏଇଥିପାଇଁ ନିଃସଙ୍କଳ୍ପ ଜ୍ଞାନୀ ମହାପୁରୁଷଙ୍କ ମନରେ କୌଣସି ସଙ୍କଳ୍ପ ଉଠେ ନାହିଁ । ସେମାନେ କୌଣସି ସଙ୍କଳ୍ପ ପାଇଁ ଆସନ୍ତି ନାହିଁ କିମ୍ବା ନିଜେ ଖାଆନ୍ତି, ପିଅନ୍ତି ନାହିଁ । ଶ୍ୱାସ ପ୍ରଶ୍ୱାସର ଗତି ସ୍ୱଭାବ ଅନୁସାରେ ଚାଲେ । ଯେ ଯେତେ ସଂକଳ୍ପ ରହିତ ନୈଷ୍କର୍ମ୍ୟ ହେବ, ସେତେବଡ଼ ଜ୍ଞାନୀ ହେବ । ଜ୍ଞାନର ଛଅଗୋଟି ଭୂମିକା ରହିଥିବାର କୁହାଯାଇଛି । ଜୀବନ୍ମୁକ୍ତ ଅବସ୍ଥା ଚତୁର୍ଥ ଭୂମିକାରେ ପ୍ରାପ୍ତ

ହୋଇଥାଏ। ଜୀବନ୍ମୁକ୍ତ ହୋଇ ମଧ୍ୟ ପୁରୁଷ ସବୁ ବ୍ୟବହାର କରିପାରେ, ଗୃହସ୍ଥ ସୁଖ ଭୋଗ କରିପାରେ । ରାଜ୍ୟ ଶାସନ କରିପାରେ । ସନ୍ତାନ ଉତ୍ପନ୍ନ ମଧ୍ୟ କରିପାରେ । ଏହି ସବୁ କାର୍ଯ୍ୟ କରି ମଧ୍ୟ ସେ ନିର୍ଲିପ୍ତ ରହେ । ବିଷୟ ତାଙ୍କ ପାଇଁ ବନ୍ଧନ ନୁହେଁ । ଏସବୁକିଛି କରି ମଧ୍ୟ ସେ ଅକର୍ତ୍ତା ରହେ । ଜନକାଦି ଏହି ଭୂମିକାରେ ସ୍ଥିତ ରହି ସବୁ କର୍ମ କରି ମଧ୍ୟ ନିର୍ଦ୍ୱନ୍ଦ ରହିଥିଲେ । ଚତୁର୍ଥ ଭୂମିକା ପରେ ଯେଉଁ ଭୂମିକା ଆସେ, ସେଥିରେ ଉନ୍ମତ୍ତତାକୁ ବଢ଼ାଇବାକୁ ଆବଶ୍ୟକ ପଡ଼େ; କାରଣ ଶେଷ ସମୟରେ ଶରୀର ପ୍ରତି ଟିକିଏ ହେଲେ ଆସକ୍ତି ରହିଗଲେ, ତେବେ କୌଣସି ନା କୌଣସି ଶରୀର ଧାରଣ କରିବାକୁ ପଡ଼େ । ଶେଷରେ ଶରୀରର କୌଣସି ମୂଲ୍ୟ ରହେନାହିଁ । ବିଷ୍ଠା, ମିଷ୍ଟାନ୍ନ, ସ୍ତ୍ରୀ, ପୁରୁଷ, ସାପ, ମାଳ, ସୁବର୍ଣ୍ଣ, ମାଟିରେ ପ୍ରସ୍ତୁତ ଦ୍ରବ୍ୟ ଜ୍ଞାନ ଦୃଷ୍ଟିରେ ବା ବ୍ୟବହାରରେ କୌଣସି ଭେଦ ରହେ ନାହିଁ । କୌଣସି କୌଣସି ଭଣ୍ଡ ଲୋକମାନେ ଏହି ସ୍ଥିତିର ଆଳରେ ନିଜକୁ ଜ୍ଞାନୀ ବୋଲି ଭାବି ଲୋକମାନଙ୍କୁ ଠକନ୍ତି ଏବଂ ନିଜର ବିଷୟବାସନାର ମନୋକାମନା ପୂର୍ଣ୍ଣ କରନ୍ତି ।

ଭଗବାନ ଋଷଭଦେବ ଚତୁର୍ଥ ଭୂମିକାରେ ରହି ଗୃହସ୍ଥଧର୍ମ ପାଳନ କଲେ । ପଞ୍ଚମ ଭୂମିକାରେ ରହି ଦିଗମ୍ବର ବେଶରେ ଅବଧୂତ ହୋଇ ପୃଥିବୀ ବୁଲିବାକୁ ଲାଗିଲେ । ବର୍ତ୍ତମାନ ସେ ପଞ୍ଚମ ଭୂମିକାକୁ ତ୍ୟାଗକରି ଷଷ୍ଠ ଭୂମିକାରେ ପ୍ରବେଶ କଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଦୁଷ୍ଟ ଲୋକମାନେ ଋଷଭଦେବଙ୍କୁ ବହୁଭାବରେ ହଇରାଣ କରିବାକୁ ଲାଗିଲେ; ତଥାପି ମଧ୍ୟ ତାଙ୍କର ମନରେ କୌଣସି କ୍ଷୋଭ ରହିଲା ନାହିଁ, ତଥାପି ସେ ବୁଲିବାବେଳେ, ଦୁଷ୍ଟମାନଙ୍କ ଦ୍ୱାରା ଉତ୍ପୀଡ଼ିତ ହେଉଥିବାବେଳେ ସେସବୁକୁ ନିଜର ଯୋଗ ସାଧନାରେ ବିଘ୍ନ ବୋଲି ବିଚାର କଲେ । ବର୍ତ୍ତମାନ ସେ ଉନ୍ମତ୍ତତାର ମାତ୍ରାକୁ ପୂର୍ଣ୍ଣରୂପରେ ବଢ଼ାଇବାକୁ ଲାଗିଲେ । ଅବଧୂତ ବୃତ୍ତି ପରେ ସେ ଅଜଗର ବୃତ୍ତିରେ ରହିଲେ ।

ରାଜା ପଚାରିଲେ, "ଭଗବନ ! ଅଜଗର ବୃତ୍ତି କଣ ? ସେଥିରେ କଣ କରିବାକୁ ହୁଏ ।"

ଏହା ଶୁଣି ଶ୍ରୀ ଶୁକ କହିଲେ—"ମହାରାଜ ! କରିବାକୁ କ'ଣ ପଡ଼େ, ଦେବତାର ଅଧୀନ ରହିବାକୁ ହୁଏ, ନିଜକୁ ସବୁବେଳେ ପ୍ରାରବ୍ଧ ଉପରେ ଛାଡ଼ି ଦେବାକୁ ହୁଏ । ଯୋଗ କ୍ଷେମ ହେବାପାଇଁ କୌଣସି ଉଦ୍ୟୋଗର ଆବଶ୍ୟକ ନାହିଁ, କୌଣସି ପ୍ରକାର ପୁରୁଷାର୍ଥ ନାହିଁ, କୌଣସି ଆଡ଼େ ଯିବାର ଆବଶ୍ୟକତା ନାହିଁ,

କେଉଁଠାକୁ ଆସିବାର ନାହିଁ । ଯାହା ମିଳେ ସେଥିରେ ସନ୍ତୁଷ୍ଟ ରହି ପ୍ରାରବ୍ଧ ଶେଷ ହେବାକୁ ଅପେକ୍ଷା କରିବାକୁ ପଡେ । ଭଗବାନ ଋଷଭଦେବ ବର୍ତ୍ତମାନ ନିଜର ମନୁଷ୍ୟ ପଣର ଅଭିମାନକୁ ଭୁଲିଗଲେ । ସେ ପଶୁମାନଙ୍କ ପରି ପାଣି ପିଇବାକୁ ଲାଗିଲେ । କେହି ଲତା ପତ୍ର ଦେଇଦେଲେ, ତାହାକୁ ସେ ଖାଇଦେଲେ । ନଦେଲେ ଲୋକ ଉପାସରେ ପଡ଼ି ରହିଲେ ଯେପରି ପଶୁ ଶୋଇ, ବସି, ଠିଆ ହୋଇ ଯେଉଁଠାରେ ଥାଏ ସେଠାରେ ମଳମୂତ୍ର ତ୍ୟାଗ କରେ, ସେ ମଧ୍ୟ ଠିକ ସେହିପରି ଭାବରେ ପିଲାଙ୍କ ପରି ଯେଉଁଠି ପାଉ ସେଠି ମଳମୂତ୍ର ତ୍ୟାଗ କଲେ । ନିଜର ବିଷ୍ଠା ନିଜର ସର୍ବାଙ୍ଗରେ ବୋଳି ଦେବାକୁ କୁଣ୍ଠିତ ହେଲେନି । ବିଷ୍ଠା ଉପରେ ବସିଯାନ୍ତି ଏବଂ ତାରି ଉପରେ ଶୋଇ ପଡ଼ନ୍ତି । ତାଙ୍କର ଏହିପରି ଘୃଣିତ କାର୍ଯ୍ୟକୁ ଦେଖି କୌଣସି ଲୋକ ତାଙ୍କ ନିକଟକୁ ଆସନ୍ତି ନାହିଁ । ଯେଉଁମାନେ ତାଙ୍କର ମହତ୍ତ୍ୱକୁ ବୁଝନ୍ତି, ସେମାନେ ତାଙ୍କର ଦର୍ଶନ ପାଇଁ ଆସନ୍ତି । ଦୁଷ୍ଟଲୋକମାନେ ତାଙ୍କୁ ଭ୍ରଷ୍ଟ ବୋଲି ଭାବି ତାଙ୍କ ପାଖରେ ରହନ୍ତି ନାହିଁ । ସେ ଏହିପରି ଭାବରେ ରହି ବ୍ରହ୍ମାନନ୍ଦ ସୁଖ ପାଇବାକୁ ଲାଗିଲେ ।"

ଏହା ଶୁଣି ମହାରାଜ ପରୀକ୍ଷିତ ପ୍ରଶ୍ନ କଲେ—"ଭଗବନ୍ ! ଏତେବଡ଼ ଜ୍ଞାନୀ, ଧ୍ୟାନୀ ଈଶ୍ୱର ହୋଇ ମଧ୍ୟ ଋଷଭଦେବ ଏପରି ଭାବରେ ଅଭଦ୍ର ଆଚରଣ କାହିଁକି କଲେ ? ଏହା ଦ୍ୱାରା ସାଧକ ଉପରେ ଖରାପ ପ୍ରଭାବ ପଡ଼େ । ଏହାକୁ ହିଁ ଜ୍ଞାନର ଚରମସୀମା ଭାବି ଲୋକେ ଭଷ୍ଟାଚାର କରିବାକୁ ଲାଗିବେ । ଆମେ ବୁଝୁଛୁ ଯେ ସେ ସମଦର୍ଶୀ ଥିଲେ ତଥାପି ମଧ୍ୟ ଲୋକସଂଗ୍ରହ ଦୃଷ୍ଟିରୁ ତାଙ୍କୁ ଏଭଳି ସଦାଚାରହୀନ କାର୍ଯ୍ୟ କରିବାର କ'ଣ ଆବଶ୍ୟକତା ଥିଲା ?"

ଏହା ଶୁଣି ଶ୍ରୀ ଶୁକଦେବ କହିଲେ –"ମହାରାଜ ! ଆପଣଙ୍କର କହିବା କଥା ସତ୍ୟ । ସାଧାରଣ ଲୋକମାନେ ବାହ୍ୟକଥାକୁ ହିଁ ଦେଖି ସେହି ଅନୁସାରେ କାର୍ଯ୍ୟ କରିଥାନ୍ତି । ମାତ୍ର ସତ୍ୟତା କେଉଁଠାରେ ଲୁଚିଯାଏ ନାହିଁ । ଚନ୍ଦନ ବା ବିଷ୍ଠାକୁ ସମାନ ମନେ କରି ବ୍ୟବହାରରେ କୌଣସି ଭେଦ ନ କରିବା କଠିନ କାର୍ଯ୍ୟ ଅଟେ, ସମସ୍ତେ ଏହାର ଆଚରଣ କରି ପାରିବେ ନାହିଁ ।"

ନୈମିଷାରଣ୍ୟର ମଝିରେ ଋଷିମାନଙ୍କ ମଧ୍ୟରେ ବସି ଶୌନକ, ଇତ୍ୟାଦି ସୂତଙ୍କୁ ପଚାରିଲେ—"ସୂତ ! ଭଗବାନ ଋଷଭଦେବ ଯେତେବେଳେ ନିଜର ବିଷ୍ଠାକୁ ଅଙ୍ଗରେ ଲଗାଇ ଦେଉଥିବେ, ସେତେବେଳେ କେହି ତାଙ୍କ ପାଖକୁ ଯାଉ ନଥିବେ ନିଶ୍ଚୟ ?"

ଏହା ଶୁଣି ସୂତ କହିଲେ—"ହଁ ଭଗବନ ! ସାଧାରଣ ଲୋକମାନେ ଘୃଣା କରୁଥିଲେ, ମାତ୍ର ଜ୍ଞାନୀମାନେ ଏହାର ମର୍ମକୁ ବୁଝୁଥିଲେ, ସେମାନେ ତାଙ୍କୁ ତାଙ୍କର ସେହିପରି ଅବସ୍ଥାରେ ମଧ୍ୟ ଆଦର କରୁଥିଲେ ।

ଶୌନକ କହିଲେ—"ସୂତ ! ଏଭଳି ପଶୁ ମଧ୍ୟ କରେ, ପାଗଳ ମଧ୍ୟ ଏପରି କରେ । ଶ୍ରେଷ୍ଠ ପିଲାମାନେ ମଧ୍ୟ ଯେଉଁଠି ପାରି ସେଠି ଏଭଳି କରି ଦିଅନ୍ତି, ସେମାନଙ୍କ ଭିତରେ ଓ ଏହାଙ୍କ ଭିତରେ ପ୍ରଭେଦ କେଉଁଠି ରହିଲା ?"

ଏହା ଶୁଣି ହସି ହସି ସୂତ କହିଲେ—"ମହାରାଜ ! ଆପଣ ସବୁକିଛି ଜାଣନ୍ତି । ଏ ଲୋକମାନେ ଅଜ୍ଞାତାବଶତଃ ଏପରି କରନ୍ତି । ଜ୍ଞାନୀ, ଜ୍ଞାନର ପରାକାଷ୍ଠା ହେବା ପରେ ଶରୀରର ମୋହକୁ ନଷ୍ଟ କରିବା ପାଇଁ, ଚିତ୍ତକୁ ସବୁବେଳେ ସମାନ ସ୍ତରରେ ସ୍ଥିର ରଖିବାପାଇଁ ଏଭଳି କାର୍ଯ୍ୟ କରନ୍ତି । କେହି କେହି ଭଣ୍ଡ ପ୍ରତିଷ୍ଠା ପାଇବା ପାଇଁ ମଧ୍ୟ ଏପରି କରିଥାନ୍ତି, ମାତ୍ର ଶେଷରେ ତାଙ୍କର ପରଦା ଖୋଲିଯାଏ । ଏହି ବିଷୟରେ ମୁଁ ଆପଣଙ୍କୁ ଗୋଟିଏ ମନୋରଞ୍ଜକ ଘଟଣା ଶୁଣାଇବି ।

ବାରାଣସୀର ବିଶ୍ୱନାଥପୁରଠାରେ ଜଣେ ପରମ ବିରକ୍ତ ଅବଧୂତ ରହୁଥିଲେ । ତାଙ୍କର ଶତବର୍ଷ ପରମାୟୁ ଥିଲା, ଦିଗମ୍ବରାବସ୍ଥାରେ ସେ ଏଆଡ଼େ ସେଆଡ଼େ ବୁଲୁଥିଲେ । ବାରାଣସୀର ବିଦ୍ୱାନମାନେ ତାଙ୍କୁ ସ୍ମରଣ କରି ବହୁତ ଅଭିମାନ କରୁଥିଲେ । ତାଙ୍କର ସ୍ଥିତି ଏତେ ଉଚ୍ଚରେ ଥିଲା ଯେ ସେ ନିଜେ କିଛି ଖାଉ ନଥିଲେ । ଯେ କେହି କିଛି ତାଙ୍କ ମୁହଁରେ ଢାଳି ଦେଲେ ତା ପେଟ ଭିତରକୁ ଚାଲିଯାଏ । ସେ ଗୁଳିବାନଯାଏ ଖାଉନଥିଲେ ଜମ୍ବା ଦିନସାରା ଖାଲି ଖାଉଥିଲେ । କିଛି ବାକୁ ନଥିଲେ । ଏପରି ହେଲା ଯେ କୌଣସି ଦିନ ଜଣେ ବ୍ୟକ୍ତି ପରୀକ୍ଷା କରିବା ୧୫-୧୬ ସେର ଗୋବର ତାଙ୍କୁ ଖୋଇଦେଲା, ସେ କୌଣସି ଆପତ୍ତି ନକରି ତାହାକୁ ମଧ୍ୟ ଖାଇଦେଲେ ।

ତାହାଙ୍କର ଏପରି ପ୍ରତିଷ୍ଠା ଦେଖି, ଜଣେ ଭଣ୍ଡ ସାଧୁଙ୍କର ଇଚ୍ଛାହେଲା ଯେ ମୋର ମଧ୍ୟ ଏହିପରି ଖ୍ୟାତି ହେଉ । ଶେଷରେ ସେ ନିଜର କୌପୁନୀ ବାହାର କରି ଫିଙ୍ଗିଦେଲେ । ସେ ମଧ୍ୟ ଦିଗମ୍ବର ସାଜି ଗଳିଗଳି ରହିବାକୁ ଲାଗିଗଲେ । ତପସ୍ୟା ପ୍ରତି ଲୋକଙ୍କ ଆକର୍ଷଣ ହେବା ସ୍ୱାଭାବିକ, ତାଙ୍କ ନିକଟକୁ ଲୋକମାନେ ଆସିବାକୁ ଲାଗିଲେ । ସାଧାରଣ ଲୋକମାନେ ତାଙ୍କୁ ସମ୍ମାନ କରିବାକୁ ଲାଗିଲେ । ଏହା ଫଳରେ ସେ ନିଜକୁ ପରମହଂସ ଅବଧୂତ ବୋଲି ଭାବିବାକୁ ଲାଗିଲେ । ଯେଉଁଠି ବସିଲେ ସେଠାରେ ମଳମୂତ୍ର ତ୍ୟାଗ କଲେ, କାହାରି କାହାରି କୋଳରେ ବସି ଖାଇବାକୁ ଲାଗିଲେ । ଲୋକମାନେ ମହାତ୍ମା ବୋଲି ବିଚାର କରି ଭଲ ଭଲ ଖାଦ୍ୟ ତାଙ୍କୁ ଖାଇବାକୁ ଦେଲେ । ଫଳ ଓ ମିଷ୍ଟାନ୍ନ ଖାଇ ସେ ଷଣ୍ଢ ପରି ମୋଟା ହୋଇଗଲେ ଏବଂ ଯେଉଁଠି ବସିଲେ ସେହି ଭୂମିକୁ ଅପବିତ୍ର କଲେ । ଥରେ ଜଣେ

ରାଣୀ ବାହାର ରାଜ୍ୟରୁ ବାରାଣସୀ ଆସିଥିଲେ । ସେ ଥିଲେ ବଡ଼ ବିଦୁଷୀ ଏବଂ ଜ୍ଞାନ ସମ୍ପନ୍ନା । କେହି ଯାଇ ତାଙ୍କ ପାଖରେ ଏହି ଅବଧୂତଙ୍କର ପ୍ରଶଂସା କଲା । ସେ ଅତ୍ୟନ୍ତ ଶ୍ରଦ୍ଧାର ସହି ତାଙ୍କର ଦର୍ଶନ କରିବାକୁ ଗଲେ । ବାବାଙ୍କ ପାଖରେ ମୂର୍ଖ ଯାତ୍ରୀମାନଙ୍କର ଭିଡ଼ ଜମିଥିଲା । ପରମହଂସ ବାବା ମଇଁଷି ପରି ସେଠାରେ ପଡ଼ି ରହି ଖିଆପିଆ କରୁଥିଲେ । ରାଣୀ ମଧ୍ୟ ପ୍ରଣାମକରି ଚୁପ୍‌ଚାପ୍ ସେଠାରେ ବସିଗଲେ । ବର୍ତ୍ତମାନ ପରମହଂସ ବାବାଙ୍କର ଆନନ୍ଦ କହିଲେ ନସରେ । ଉଠିକରି କୌତୁହଳ-ବଶତଃ ରାଣୀଙ୍କର କୋଳ ଉପରେ ସେ ବସିଗଲେ । ତାଙ୍କର ବହୁମୂଲ୍ୟ ବସ୍ତ୍ରରୁ ଯେଉଁ ସୁବାସିତ ସୁଗନ୍ଧ ନିର୍ଗତ ହେଉଥିଲା, ସେଥିରେ ପରମହଂସ ମତ୍ତ ହୋଇଗଲେ । ରାଣୀ ଅତ୍ୟନ୍ତ ସତ୍କାର ପୂର୍ବକ ନିଜ ହାତରେ ତାଙ୍କୁ ପେଡ଼ା ଖୁଆଇବାକୁ ଲାଗିଲେ । ଖାଉ ଖାଉ ପରମହଂସ ରାଣୀଙ୍କର ବସ୍ତ୍ର ଉପରେ ମଳତ୍ୟାଗ କଲେ । ପଶୁପରି ମୁଣ୍ଡା ମୁଣ୍ଡା ମଳର ଦୁର୍ଗନ୍ଧରେ ରାଣୀଙ୍କର ମନ ବିରକ୍ତ ହୋଇଗଲା । ସେ ତାଙ୍କର ପରମହଂସତ୍ୱ ଉପରେ ସନ୍ଦେହ ପ୍ରକାଶ କଲେ । ସେ କ'ଣ କଲେ ନା ପେଡ଼ା ଖାଇବା ସମୟରେ ଗୋଟିଏ ପେଡାରେ ତାଙ୍କର ବିଷ୍ଠାକୁ ଲଗାଇ ଦେଇ ଯେମିତି ତାଙ୍କ ମୁହଁରେ ମାଡ଼ ଦେବାକୁ ଇଚ୍ଛାକଲେ, ସେମିତି ଅବଧୂତ ମୁହଁକୁ ବୁଲାଇ ଦେଲେ । ଏଥିରୁ ରାଣୀ ସେ ଭଣ୍ଡ ପରମହଂସ ବୋଲି ଜାଣିଗଲେ । ସେ ଅତ୍ୟନ୍ତ ରୋଷପୂର୍ଣ୍ଣ ସ୍ୱରରେ କହିଲେ, "ପରମହଂସ ବାବା ! ତୁମର ଏତିକି ମଧ୍ୟ ଧ୍ୟାନ ରହିଲା ନାହିଁ ଯେ ସେ ହେଉଛି ସ୍ତ୍ରୀ, ଏ ହେଉଛି ପୁରୁଷ, ସେ ରାଣୀ, ଏବଂ ସେ ଗରିବ । ଏଠାରେ ମଳମୂତ୍ର ତ୍ୟାଗ କରିବା ଉଚିତ କି ନୁହେଁ, ମାତ୍ର ତୁମକୁ ଏହା କିପରି ଜଣା ପଡ଼ିଗଲା ଯେ ଏହା ହେଉଛି ପେଡ଼ା ଏବଂ ଏହା ହେଉଛି ବିଷ୍ଠା । ଏହାକୁ ଖାଇବା ଉଚିତ, ଏହାକୁ ଦେଖି ମୁହଁ ବୁଲାଇବା ଆବଶ୍ୟକ । ଦୟାକରି ଲୋକମାନଙ୍କୁ ଠକିବା ତ୍ୟାଗକର, ପେଟ ପାଇଁ ଏତେବଡ଼ ପାପ କରନାହିଁ । ବସ୍ତ୍ର ପିନ୍ଧି ପକାଅ । ସରଳତା ପୂର୍ବକ ସାଧନା କର ।"

ଭଗବାନଙ୍କର ଦୟା ଥିଲା କିମ୍ବା ତତକ୍ଷାର ଫଳ ଥିଲା, ଏହା ବାବାଙ୍କ ଉପରେ ବହୁତ ପ୍ରଭାବ ପକାଇଲା ଏବଂ ସେହି ସମୟରେ ସେ ବସ୍ତ୍ର ଧାରଣ କରି ନେଲା ଓ ସରଳତାର ସହିତ ଭଗବଦ୍ଭକ୍ତିରେ ଲାଗିଗଲା ।

ସୂତ କହୁଛନ୍ତି - "ମୁନିମାନେ ! ଅଜଗର ପରି ଜୀବନକୁ ବିତାଇବା, ପେଡ଼ା ଓ ବିଷ୍ଠାରେ କୌଣସି ପ୍ରକାର ଭେଦଭାବ ନ ରଖିବା ଅତ୍ୟନ୍ତ ଉଚ୍ଚସ୍ଥିତି ଅଟେ । ଏଥିପାଇଁ ଋଷଭଦେବଙ୍କର ସ୍ଥିତିକୁ ଶୁଣି ମହାରାଜ ପରୀକ୍ଷିତ ଚକିତ ହୋଇଗଲେ ଏବଂ ବାରମ୍ବାର ମୋର ଗୁରୁଦେବ ଭଗବାନ ଶୁକଙ୍କୁ ତାଙ୍କ ସମ୍ପର୍କରେ ପ୍ରଶ୍ନ ପଚାରିବାକୁ ଲାଗିଲେ ।"

ଶ୍ରୀ ଶୌନକ ପଚାରିଲେ—ସୂତ ! ମହାରାଜ ପରୀକ୍ଷିତ ଆଗକୁ କ'ଣ ପ୍ରଶ୍ନ କଲେ, ଦୟାକରି ତାହା ଆମ୍ଭମାନଙ୍କୁ ଶୁଣାନ୍ତୁ ।"

ଏହା ଶୁଣି ସୂତ କହିଲେ—"ମହାଭାଗ ! ମଳମୂତ୍ରରେ ଗୋଳି ହୋଇ ରହି ଥିବାର ଶୁଣି ମହାରାଜ ପରୀକ୍ଷିତ ପ୍ରଶ୍ନ କଲେ—"ବିଷ୍ଠାରେ ଶରୀର ଆଚ୍ଛନ୍ନ ରହିବା ଫଳରେ ସେ କ'ଣ ଦୁର୍ଗନ୍ଧ ଅନୁଭବ କରୁ ନ ଥିଲେ ? ମଳର ଦୁର୍ଗନ୍ଧ ବହୁ ଦୂର ପର୍ଯ୍ୟନ୍ତ ବ୍ୟାପିଥାଏ ।"

ଏହା ଶୁଣି ଶ୍ରୀ ଶୁକ କହିଲେ—"ରାଜନ୍ ! ତାଙ୍କର ଶରୀର ଚିନ୍ମୟ ଏବଂ ଦିବ୍ୟ ହୋଇ ଯାଇଥିଲା, ସେଥିରେ ଦୁର୍ଗନ୍ଧ କେଉଁଠି ରହିବ । ଏହା ନୁହେଁ, ତାଙ୍କ ମଳରୁ ମଳୟ ପର୍ବତର ଚନ୍ଦନ ଠାରୁ ସହସ୍ର ଗୁଣ ଅଧିକ ଚନ୍ଦନର ସୁବାସ ଆସୁଥିଲା, ଯାହାର ସୌରଭରେ ଚାଳିଶ କୋଷ ପର୍ଯ୍ୟନ୍ତ ବାୟୁ ସୁଗନ୍ଧିତ ହୋଇ ଯାଉଥିଲା ।"

ଏହି ପ୍ରକାର ଭାବରେ ରାଜନ୍ ! ମୋକ୍ଷପତି ଭଗବାନ ଋଷଭଦେବ ନାନାପ୍ରକାର ଯୋଗଚର୍ଯ୍ୟା ଆଚରଣ କରିବାକୁ ଲାଗିଗଲେ । ସେ ସଦାସର୍ବଦା ଅତ୍ୟନ୍ତ ଉତ୍କୃଷ୍ଟ ଆନନ୍ଦରେ ନିମଗ୍ନ ରହିବାକୁ ଲାଗିଲେ । ସେ ସମ୍ପୂର୍ଣ୍ଣ ପ୍ରାଣୀମାନଙ୍କ ଅନ୍ତରାତ୍ମାରେ ଅଭିନ୍ନ ଭାବରେ ଭଗବାନ ବାସୁଦେବଙ୍କ ରୂପରେ ସ୍ଥିତ ହୋଇ ଯିବା ହେତୁ ସମ୍ପୂର୍ଣ୍ଣ ପୁରୁଷାର୍ଥରେ ପରିପୂର୍ଣ୍ଣ ହୋଇଗଲେ । ତାଙ୍କର କୌଣସି ବସ୍ତୁରେ ଆକାଂକ୍ଷା କିମ୍ବା ଅଭିଳାଷ ନ ଥିଲା । ସ୍ୱତଃ ଭାବରେ ଆସୁଥିବା କୌଣସି ବସ୍ତୁ ପାଇଁ ତାଙ୍କର ଆନନ୍ଦ କିମ୍ବା ଚାଲି ଯାଉଥିବା ବସ୍ତୁ ନିମିତ୍ତ ଦୁଃଖ ନ ଥିଲା । ଦ୍ୱନ୍ଦ୍ୱରୁ ଅତୀତ ହୋଇ ସୁଖ ଦୁଃଖରେ ସମାନ ଭାବରେ ରହି ବ୍ରହ୍ମାନନ୍ଦ ରୂପରେ ରସସୁଧାକୁ ସେ ପାନ କରିବାକୁ ଲାଗିଲେ ।

ଶ୍ରୀ ଶୁକଦେବ କହିଲେ—"ମହାରାଜ ! ଏହି ପ୍ରକାର ଭାବରେ ଶ୍ରୀ ଋଷଭଦେବ ଏହି ଶରୀରରେ ତ୍ରିଗୁଣାତୀତ ଅବସ୍ଥାକୁ ପ୍ରାପ୍ତ କରିନେଲେ ।"

**ଛପ୍ପୟ**

"ଖଲଜନ ନିନ୍ଦେଂ ରହିଁ କରେ ପଣ୍ଡିତ ବହୁ ବନ୍ଦନ ।
ମଲତେ ଲିଥିରହ୍ୟୋ ଅଙ୍ଗ ଚଢ଼ାବେଂ ରହେ ଚନ୍ଦନ ।।
ଜ୍ଞାନୀ ମାଲା ସର୍ପ ଏକ ସମ କରିକେ ଜାନେଁ ।
ହୋବେ ଜଡ଼ ଚୈତନ୍ୟ ନାରୀ ନର ଭେଦ ନ ମାନେ ।।
ଜୋ ଜଗ ଦେଖେ ବ୍ରହ୍ମମୟ, ଉନକୋ ଜ୍ଞାନୀ ନାମ ହୈ ।
ତିନକେ ପାବନ ଚରନ ମହିଁ, ଶ୍ରଦ୍ଧା ସହିତ ପ୍ରନାମ ହୈ ।।"



# ଋଷଭଦେବଙ୍କଦ୍ୱାରା ପ୍ରାପ୍ତ ସିଦ୍ଧିର ପରିତ୍ୟାଗ

ନଃ କୁର୍ଯ୍ୟାତ୍କର୍ହିଚିତ୍ସଖ୍ୟ ମନସି ହ୍ୟନବସ୍ଥିତେ ।
ଯଦ୍ ବିଶ୍ରମ୍ଭାଚ୍ଚିରାଚ୍ଚୀର୍ଣ୍ଣଂ ଚସ୍କନ୍ଦ ତପ ଏଶ୍ୱରମ୍ ॥

( ଭାଗବତ ୫-ସ୍କନ୍ଦ ୬-ଅଧ୍ୟାୟ ୩-ଶ୍ଲୋକ )

## ଛପ୍ପୟ

ଆଇ ସବଇ ସିଦ୍ଧି ସିଦ୍ଧି ନେ ସବ ଠୁକରାଈ
କରି ବିନୟ ବହୁ ଭାଁତି ନେକ ହୁଁ ନହିଁ ଅପନାଈ ॥
ମନ ଅତି ଦାନବ ଦୁଷ୍ଟ କରେ ବିଶ୍ୱାସ ନ କବହୁଁ ।
ଇନ୍ଦ୍ରିୟଜିତ ହ୍ୱୈ ଜାୟ ବଚେ ବିଷୟନ ତେ କବହୁଁ ॥
ବ୍ରହ୍ମା, ବିଶ୍ୱାମିତ୍ର, ଶିବ, ଧୋଖୋ ସବକୁଁ ମନ ଦୟୋ ।
କବହୁଁ ନ ମାନେ ଭୂଲମହୁଁ, ମେରୋ ମନ ବଶ ମେ ଭୟୋ ॥

ଯେ ପର୍ଯ୍ୟନ୍ତ ମନୁଷ୍ୟ ଦ୍ୱନ୍ଦ୍ୱାତୀତ ହୋଇ ନ ଯାଇଛି, ଶରୀରର ସଙ୍କଳ୍ପରୁ ଊର୍ଦ୍ଧ୍ୱକୁ ନ ଉଠିଛି, ସେ ପର୍ଯ୍ୟନ୍ତ ମନ ସ୍ଥିର ହୁଏନାହିଁ ଏବଂ ସଙ୍କଳ୍ପ ଓ ବିକଳ୍ପ ମଧ୍ୟରେ ଗତି କରେ । ସେଥିପାଇଁ ଶରୀର ଧାରଣ କରିଥିବା ବ୍ୟକ୍ତିମାନଙ୍କୁ ସାବଧାନ ସହ କାର୍ଯ୍ୟ କରିବାକୁ ହୋଇଥାଏ । ନିଜର ମନ ଉପରେ କେତେବେଳେ ହେଲେ ବିଶ୍ୱାସ କରିବା ଉଚିତ ନୁହେଁ । ଯୋଗରେ ଆରୂଢ଼ ହୋଇଥିବା ଯୋଗୀର ମଧ୍ୟ ଅଧଃପତନ ହୁଏ । ସଙ୍ଗ ଦ୍ୱାରା, ଆସକ୍ତି ହେତୁ ଯୋଗୀ ମଧ୍ୟ କେବେ କେବେ ବିଷୟ ବାସନାରେ ପଶିଯିବା ଦେଖାଯାଏ । ସେଥିପାଇଁ

ଯେଉଁଠାରେ ବିଷୟର ସାମାନ୍ୟତମ ସଂସର୍ଗ ରହୁଛି, ସେଠାରୁ ପରମାର୍ଥ ପଥର ପଥିକ ଶୀଘ୍ର ଚାଲି ଆସିବା ଉଚିତ ବୋଲି ଶାସ୍ତ୍ରକାରମାନେ ସ୍ଥାନ ବିଶେଷରେ ଗୁରୁତ୍ୱ ଦେଇଛନ୍ତି । ନଚେତ୍ ତାର ଗନ୍ତବ୍ୟରେ, ତାର ସାଧନାରେ ବ୍ୟାଘାତ ଘଟିବ । ବିଷୟ ଏବଂ ଇନ୍ଦ୍ରିୟର ସଂସର୍ଗ ହେଲେ କାମନା ବଳବତ୍ତର ହୁଏ । ଯଦ୍ୟପି ଭକ୍ତ ଏବଂ ଜ୍ଞାନୀମାନଙ୍କର କୌଣସି କାମନା ରହେନାହିଁ, କାରଣ ସେମାନଙ୍କର ସମସ୍ତ କାମନା ସର୍ବେଶ୍ୱରଙ୍କର କାମନାରେ ମିଶିଯାଏ, ତଥାପି ଲୋକସଂଗ୍ରହ ନିମନ୍ତେ ଏହାକୁ ଭୁଲିଯାଇ ବିଷୟରେ ଆଦର ବୃଦ୍ଧି କରିବା ଆଦୌ ଉଚିତ ନୁହେଁ । ଶରୀରର ଭାବନା ନ ରହିବା ଭଲ, ମାତ୍ର ଯେ ପର୍ଯ୍ୟନ୍ତ ଶରୀରର ଭାବନା ରହୁଛି, ଯେ ପର୍ଯ୍ୟନ୍ତ ଖାଇବା ପିଇବାର ଆବଶ୍ୟକତା ରହୁଛି, ସେ ପର୍ଯ୍ୟନ୍ତ ବିଷୟରୁ ନିଜକୁ ମୁକ୍ତ ରଖିବା ଏବଂ କୌଣସି ଅବସ୍ଥାରେ ତାକୁ ଗ୍ରହଣ ନ କରିବା, ମହାପୁରୁଷମାନଙ୍କର ଲକ୍ଷଣ ଅଟେ ।

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଯେତେବେଳେ ଭଗବାନ ଋଷଭଦେବ ଜୀବନ୍ମୁକ୍ତର ସୁଖ ପାଉଥିଲେ, ଜ୍ଞାନର ଛଅଟି ଭୂମିକାରେ ରହି ସଂସାରର ଅସାରତା ଅନୁଭବ କରୁଥିଲେ, ସେ ସମୟରେ ସମସ୍ତ ସିଦ୍ଧି ମୂର୍ତ୍ତିମାନ ହୋଇ ତାଙ୍କ ନିକଟକୁ ଆସିଲେ ଯାହା ସାହାଯ୍ୟରେ ସେ ସଙ୍କଳ୍ପ ମାତ୍ରକେ ଅଦୃଶ୍ୟ ହୋଇ ପାରିଥାନ୍ତେ, ଅନ୍ୟ ଶରୀରରେ ପ୍ରବେଶ କରି ପାରିଥାନ୍ତେ, ଅଧିକ ଯାହା କିଛି ଇଚ୍ଛା ହୋଇଥାନ୍ତା କରି ପାରିଥାନ୍ତେ । ଏପରିକି ନୂତନ ସୃଷ୍ଟି ମଧ୍ୟ କରି ପାରିଥାନ୍ତେ ।

ସମସ୍ତ ସିଦ୍ଧିମାନେ ତାଙ୍କ ପାଖକୁ ଆସି କହିଲେ—"ଦେବ ! ଦାସୀମାନଙ୍କୁ କିଛି ସେବା କରିବା ପାଇଁ ଅନୁମତି ଦିଅନ୍ତୁ । ଆମ୍ଭଙ୍କୁ ଆମ୍ଭମାନଙ୍କର ଯଥା କାର୍ଯ୍ୟ ସମ୍ପନ୍ନ କରିବାକୁ ଆଜ୍ଞା ପ୍ରଦାନ କରନ୍ତୁ, ଆମ୍ଭମାନଙ୍କୁ ନିଜର ବୋଲି ଗ୍ରହଣ କରନ୍ତୁ ।"

ତାଙ୍କର କଥା ଶୁଣି ଋଷଭଦେବ ହସିଦେଲେ । ସେ ସିଦ୍ଧିଗଣଙ୍କର କଥାକୁ ଗ୍ରହଣ କଲେନାହିଁ । ନିଜର କରିବା ତ ଦୂରର କଥା. ସେମାନଙ୍କୁ ସେହି ସମୟରେ ବାରି ଦେଲେ ଏବଂ ସେଠାରୁ ଚାଲିଯିବାକୁ ଆଜ୍ଞା ଦେଲେ ।

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ ! ମୋତେ ଏପରି ଲାଗୁଛି ଭଗବାନ ଋଷଭଦେବ ସିଦ୍ଧିଗଣଙ୍କୁ ତିରସ୍କାର କରି ଠିକ୍ କାର୍ଯ୍ୟ କରି ନାହାନ୍ତି । ତାଙ୍କ ନିକଟରେ ପ୍ରିୟ ଅପ୍ରିୟ, ସୁଖ, ଦୁଃଖ, ହାନିଲାଭ, ଜୀବନମରଣ ଯଶ ଅପଯଶ, ଶତ୍ରୁ ମିତ୍ର, ସ୍ୱାଦ ଅସ୍ୱାଦ ଶୋକ ଅନୁଗ୍ରହ, ସ୍ତୁତି ନିନ୍ଦା, ସମସ୍ତ ସମାନ । ଯେତେବେଳେ ସେ ଭୂମି ଉପରେ ରହୁଥିଲେ, ସବୁନକୁ ତିରସ୍କାର

କରୁ ନ ଥିଲେ, ସୂର୍ଯ୍ୟଙ୍କର ପ୍ରକାଶ ଦ୍ୱାରା କାର୍ଯ୍ୟ ସମ୍ପନ୍ନ କରୁଥିଲେ । ପୃଥିବୀ ଉପରେ ବହି ଯାଉଥିବା ପାଣିକୁ ପିଉଥିଲେ ଅନ୍ନ ମଧ୍ୟ ଖାଉଥିଲେ, ମଳମୂତ୍ର ତ୍ୟାଗ କରୁଥିଲେ, ଆକାଶ ତଳେ ରହୁଥିଲେ । ତେବେ ସିଦ୍ଧିଗଣଙ୍କୁ କାହିଁକି ତିରସ୍କାର କଲେ ?"

ଏହା ଶୁଣି ଶୁକଦେବ କହିଲେ—"ମହାରାଜ ! ସାଧୁମାନଙ୍କୁ ସିଦ୍ଧିରୁ କ'ଣ ମିଳିବ ? ତାହା ନାଟୁଆ ଓ ଯାଦୁକରଙ୍କର ଆବଶ୍ୟକ । ସିଦ୍ଧି ଦେଖାଇ ଅନ୍ୟକୁ ପ୍ରଭାବିତ କରିବେ । ଧନ ସମ୍ପତ୍ତି ବୃଦ୍ଧି କରିବେ । ସାଧୁମାନଙ୍କର ଧନ ହେଉଛି କେବଳ ଶ୍ରୀହରି ।"

ରାଜା ପରୀକ୍ଷିତ କହିଲେ—"ନାଁ । ମହାରାଜ ! ଧନଯଶର କଥା ନୁହେଁ, ସିଦ୍ଧିତ ପଡ଼ି ରହିଥାନ୍ତା, କେତେବେଳେ ଇଚ୍ଛା ହୋଇଥାନ୍ତା, ଆକାଶରେ ଉଡ଼ି ବୁଲିସିବାକୁ । ତାହା ଦୁଃଖୀଜୀବଙ୍କର ଉପକାରରେ ଲାଗିଥାନ୍ତା । ଏଥିରେ କ'ଣ ହାନି ହେଉଥିଲା ?"

ଏହା ଶୁଣି ଶ୍ରୀ ଶୁକଦେବ କହିଲେ—"ମହାରାଜ ! ହାନି ତ କିଛି ନୁହେଁ ମାତ୍ର ଟିକିଏ ମନଥିଲେ, ମନ ଆସ୍ତେ ଆସ୍ତେ ବିଷୟ ଆଡ଼କୁ ଅଗ୍ରସର ହୋଇଥାନ୍ତା । ପରୋପକାର କରିବା ଫଳରେ ମନରେ ଅହଂକାର ଉଦୟ ହୋଇଥାନ୍ତା । ଯୋଗାରୂଢ଼ ହୋଇ ମଧ୍ୟ ପତନର ସମ୍ଭାବନା ଆସି ଯାଇଥାନ୍ତା ।"

ରାଜା କହିଲେ, "ଭଗବନ ! ଏହି ଶଙ୍କା ସାଧାରଣ ଲୋକମାନଙ୍କ ପାଇଁ କରା ଯାଇପାରେ, ମାତ୍ର ଯେ ଜ୍ଞାନରୂପକ ଅଗ୍ନି ଦ୍ୱାରା କର୍ମରୂପକ ବୀଜକୁ ପୋଡ଼ି ଦେଇଛି ଏଭଳି ଆତ୍ମାରାମ ମହାତ୍ମାମାନଙ୍କର ସିଦ୍ଧି କ'ଣ କ୍ଷତି କରିପାରେ । ତାଙ୍କ ଉପରେ ସିଦ୍ଧିମାନଙ୍କର କି ପ୍ରଭାବ ପଡ଼ିଥାନ୍ତା । ସିଦ୍ଧିମାନଙ୍କ ନିମିତ୍ତ ପ୍ରଯତ୍ନ କରିଥିଲେ ଅହଂକାର ଆସିବାର କିଛି ସମ୍ଭାବନା ଥିଲା । ନିଜକୁ ନିଜେ ଆସିଥିବା ସିଦ୍ଧିମାନଙ୍କୁ ଅପମାନ କରିବା ମୋତେ ଉଚିତ ପ୍ରତୀତ ହେଉନାହିଁ ।"

ଏହା ଶୁଣି ଶୁକଦେବ କହିଲେ—"ମହାରାଜ ! ଋଷଭଦେବ ଥିଲେ ସିଦ୍ଧି-ମାନଙ୍କର ସିଦ୍ଧି । ତାଙ୍କର ସିଦ୍ଧିଗଣ କ'ଣ ଭଲ ମନ୍ଦ କରିଥାନ୍ତେ କିନ୍ତୁ ସେ ନିଜର ଆଚରଣ ଦ୍ୱାରା ଆମ୍ଭକୁ ଏହି ଉପଦେଶ ଦେଉଛନ୍ତି, ଯେ ଏହି ଭ୍ରମଯୁକ୍ତ ମନକୁ କେତେବେଳେ ହେଲେ ବିଶ୍ୱାସ କରିବା ଉଚିତ ନୁହେଁ । ଏକଥା ମନରେ ଭାବ ଯେ ବର୍ତ୍ତମାନ ମୁଁ ସିଦ୍ଧ ହୋଇଗଲି, ବିଷୟ ଭୋଗ ମୋର କ'ଣ କ୍ଷତି କରି ପାରିବ ଏହି ଭ୍ରମରେ ସୁଦ୍ଧା ବିଷୟ ମଧ୍ୟରେ ପ୍ରବେଶ କରିବା ଉଚିତ ନୁହେଁ । ବଡ଼ ବଡ଼ ଜ୍ଞାନୀ,ଧ୍ୟାନୀ, ଯତି ଓ ଯୋଗୀ ମନକୁ ବିଶ୍ୱାସ କରି ନିଜନିଜର ଲକ୍ଷ୍ୟରୁ ଚ୍ୟୁତ ହୋଇ

ଯାଇଥିଲେ । ତେଣୁ, ଶିବ ଭଗବାନଙ୍କୁ ପ୍ରାର୍ଥନା କଲେ ଯେ—"ପ୍ରଭୋ ! ମୋତେ ଆପଣଙ୍କର ସେହି ମୋହିନୀରୂପ ଦେଖାନ୍ତୁ ଯାହାକୁ ଦେଖାଇ ଆପଣ ଦୈତ୍ୟମାନଙ୍କୁ ଠକି ଥିଲେ ।"

ଏହା ଶୁଣି ହସି ହସି ଭଗବାନ କହିଲେ—"ଭୋଳାନାଥ ! ତୁମେ କେଉଁ ଗୋଲକଧନ୍ଦାରେ ପଡ଼ିଛ, ଜାଣିଶୁଣି କାହିଁକି ନିଜ ଗୋଡ଼ରେ କୁରାଢ଼ି ମାରୁଛ, କେଉଁଥିପାଇଁ କୌଣସି କଥା ନାହିଁ, ପାଗଳ ହାତୀର ସାମନା କରୁଛ, କାହିଁକି ସିଂହର ଲାଞ୍ଜକୁ ଟାଣୁଛ । ନିଜେ ରାମ ରାମ କୁହ, ଏହିଭଳି ବ୍ୟର୍ଥ କାର୍ଯ୍ୟରେ କୌତୂହଳ ପ୍ରକାଶ କରିବା ଆଦୌ ଉଚିତ ନୁହେଁ । ମୁଁ ତ ଦୈତ୍ୟମାନଙ୍କୁ ଭଣ୍ଡାଇବା ପାଇଁ ସେପରି ରୂପ ସୃଷ୍ଟି କରିଥିଲି, ତାହାର ଦର୍ଶନ ମାତ୍ରକେ କାମ ବୃଦ୍ଧି ଜାତ ହୁଏ, ଚିତ୍ତ ଚଞ୍ଚଳ ହୋଇଯାଏ । କାହିଁକି ବସି ବସି ଅଯଥା ଅନର୍ଥରେ ଘାଣ୍ଟି ହେବାକୁ ଇଚ୍ଛା କରୁଛ ?"

ଏହା ଶୁଣି ଯୋଗେଶ୍ୱରଙ୍କର ଈଶ୍ୱର ତ୍ରିନୟନ ମଦନକୁ ଦହନ କରିଥିବା ଶୂଳପାଣି ପିନାକୀ ଦୃଢ଼ସ୍ୱରରେ କହିଲେ—"ନା ଭଗବାନ ! ବହୁତ ଅବତାରଙ୍କୁ ମୁଁ ଦର୍ଶନ କରିଛି । କଚ୍ଛପ, ମତ୍ସ୍ୟ, ବରାହ, ନୃସିଂହ, ବାମନ, ପରଶୁରାମ, ରାମ, କୃଷ୍ଣ, ବୁଦ୍ଧ, କଳ୍କୀ ସମସ୍ତଙ୍କୁ ଦେଖି ନେତ୍ର ସଫଳ କରିଛି । ଏହି ଅବତାରକୁ ମଧ୍ୟ ଦର୍ଶନ କରିବାକୁ ମୋର ଇଚ୍ଛା ।

ଭଗବାନ ସ୍ମିତହାସ୍ୟ କରି କହିଲେ—"ଭୋଳାବାବା ! ଅବତାର ଦର୍ଶନରେ ନେତ୍ର ସଫଳ ହେବକି ନାହିଁ, ତାହା ମୁଁ ଜାଣେନା ମାତ୍ର ତୃତୀୟ ନୟନ ହେଲେ ମଧ୍ୟ ଚିତ୍ତ ଚଞ୍ଚଳ ହୋଇ ଉଠିବ । ନିଜ ପଣକୁ ଆପଣ ଭୁଲିଯିବେ ଏବଂ ଗୋବିନ୍ଦାୟ ନମୋ ନମଃ ହୋଇଯିବାପରେ ପାର୍ବତୀଙ୍କର ଅତ୍ୟନ୍ତ ଦୁଃଖ ହେବ ।"

ଶିବ କହିଲେ, "ଅହେ ମହାରାଜ ! କାମକୁ ମୁଁ ତ ପ୍ରଥମରୁ ଭସ୍ମ କରି ଦେଇଛି । ମୋ ଉପରେ ତାହାର ଯାଦୁ ଚାଲି ପାରିବନାହିଁ । ସେ ଏଠାର ଧାନ ନୁହେଁ ଯାହାକୁ ଚଢେଇମାନେ ଖୁଣ୍ଟି କରି ଖାଇବେ ।"

ଶିବଙ୍କର ଆଗ୍ରହ ଦେଖି ଭଗବାନ ମୋହିନୀ ରୂପର ଦର୍ଶନ କରାଇ ଦେଲେ ଏବଂ ଶିବଙ୍କର ଯେଉଁ ଦଶା ହେଲା ତାହା ଏଠାରେ ବର୍ଣ୍ଣନା କରାଯାଇ ନପାରେ । ତେଣୁ ସଜ୍ଜନ ! ସିଦ୍ଧିମାନଙ୍କର ଭ୍ରମରେ ସିନା ପଡ଼ିବା ଉଚିତ ନୁହେଁ । ଭଗବାନଙ୍କ ଭକ୍ତର ସିଦ୍ଧିଗଣ ସବୁବେଳେ କିଙ୍କର ହୋଇ ରହନ୍ତି, ତାହାକୁ ସ୍ୱୀକାର କରାଯାଇ ପ୍ରକାଶକୁ ନ ଆଣିବା ଉଚିତ । ଲୁଣ ଯେ ପର୍ଯ୍ୟନ୍ତ ଢଙ୍କା ହୋଇ ରହେ, ସେ

ପର୍ଯ୍ୟନ୍ତ ସୁରକ୍ଷିତ ରହେ । ଯେତେବେଳେ ଅଲୋକର ସାନ୍ନିଧରେ ଆସେ, ଖୋଲା ରଖିଦେଲେ, ଦଳ ଦଳ ଚଢ଼େଇମାନେ ତାକୁ ଘେରିକରି ଖାଇବାକୁ ଲାଗିଯାନ୍ତି । ସିଦ୍ଧ ପୁରୁଷ ସାମାନ୍ୟ ମାତ୍ର ସିଦ୍ଧିକୁ ଦେଖାଇଲେ ସଂସାରୀମାନେ, କାମୀ ପୁରୁଷମାନେ ତାଙ୍କ ନିକଟକୁ ଆସନ୍ତି, ମୋତେ ପୁଅ ଦିଅ, ଧନ ଦିଅ, ସୁନ୍ଦରୀ ବୋହୂ ଦିଅ, ରୋଗରୁ ମୁକ୍ତକର, ମକଦ୍ଦମାରେ ଜୟଯୁକ୍ତ କର, ବାଟ ବତାଅ କାହାଠାରୁ ଆଣି ଧନଦିଅ, ଏହିଭଳି ମାଗିଥାନ୍ତି । ଏଥିରେ ଯୋଗରେ କିଛି ନା କିଛି ବିଘ୍ନ ଘଟେ । ପ୍ରଥମେ ପଙ୍କକାଦୁଅରେ ବସ୍ତ୍ରକୁ ଖରାପ କର । ପୁଣି ତାକୁ ଜଳରେ ଧୁଅ, ଏହା ଅପେକ୍ଷା ଉତ୍ତମ ହେଉଛି ପଙ୍କକାଦୁଅଠୁ ଦୂରରେ ରହିବା । ଏହି ଚିତ୍ତ ହେଉଛି ସବୁଠାରୁ ଦୁଷ୍ଟ । ଏହାକୁ କେତେବେଳେ ହେଲେ ବିଶ୍ୱାସ କରିବା ଉଚିତ ନୁହେଁ । ଯେପରି ବ୍ୟଭିଚାରିଣୀ ସ୍ତ୍ରୀ ନିଜର ମଧୁର କଥାରେ ପ୍ରଥମେ ସ୍ୱାମୀ ଠାରେ ପ୍ରେମ ପ୍ରଦର୍ଶନ କରେ ଏବଂ ପରେ ଉପପତିକୁ ଚୁପ୍‌ଚାପ ଆଣି-ତାକୁ ହତ୍ୟାକରେ । ଏହିଭଳି ମନ କାମକୁ ଏବଂ ତାର ବନ୍ଧୁ ଲୋଭ ଓ କ୍ରୋଧକୁ ଅବସର ପାଇବା ମାତ୍ରେ ଆଣି ମନୁଷ୍ୟର ତପ, ତେଜ, ପ୍ରଭାବ ଏବଂ ସଦାଚାରକୁ ନଷ୍ଟ କରି ତାକୁ ଭ୍ରଷ୍ଟ କରିଦିଏ ।

ଏହି ମନ କାମ, କ୍ରୋଧ, ମଦ, ଲୋଭ, ଶୋକ, ମୋହ ଏବଂ ଭୟ ଇତ୍ୟାଦିର ମୂଳ କାରଣ ଅଟେ । ମନର ଏମାନଙ୍କ ସହିତ ସ୍ୱାଭାବିକ ମିତ୍ରତା ରହିଛି, ଏହିଭଳି ଦୁଷ୍ଟ ମନ ଉପରେ ବୁଦ୍ଧିମାନ ବ୍ୟକ୍ତି କିପରି ବିଶ୍ୱାସ କରିପାରେ । କିଭଳି ଭାବେ ଏହି ଚଞ୍ଚଳ ଘୋଡ଼ାର ଲଗାମ୍‌କୁ ହାଲୁକା କରାଯାଇ ପାରେ ? ଏଇଥିପାଇଁ ରାଜନ୍ ଭଗବାନ ଋଷଭଦେବ ସିଦ୍ଧିମାନଙ୍କୁ ସ୍ୱୀକାର କଲେ ନାହିଁ । ସେମାନଙ୍କୁ ତିରସ୍କାର କରି ତଡ଼ିଦେଲେ । କୌଣସି ପଦାର୍ଥକୁ ଗ୍ରହଣ କରିବା ବେଳେ ଯେଉଁ ଆନନ୍ଦ ମିଳେ, ତାହାକୁ ତ୍ୟାଗ କଲେ ଶହେଗୁଣ ସୁଖ ଅଧିକ ମିଳେ । ଏଇଥିପାଇଁ ଯୋଗୀ ଲୋକମାନେ ସଂଗ୍ରହ କରିବାର ଆଗ୍ରହ କରନ୍ତି ନାହିଁ । ସେମାନେ ସଦା ସର୍ବଦା ତ୍ୟାଗ ପାଇଁ ତତ୍ପର ରହନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଏହି ପ୍ରକାର ଭାବରେ ଭଗବାନ ଋଷଭଦେବ ଏହି ଦେହରେ ଜୀବନ୍ମୁକ୍ତର ପରମୋତ୍କୃଷ୍ଟ ସୁଖ ଭୋଗକରି ବାଳକ ତୁଲ୍ୟ କ୍ରୀଡ଼ା କରିବାକୁ ଲାଗିଲେ, ଅଜଗର ଭାବରେ ନିଶ୍ଚେଷ୍ଟ ରହି ସମସ୍ତ ଅତିବାହିତ କଲେ ।"

## ଛପ୍ପୟ

"ମନ ମତଂଗ ଉଦ୍ଦଣ୍ଡ ଦୁଷ୍ଟତା କରେ ସଦାଇଁ ।
ସଂଯମ ଅଙ୍କୁଶ ସଦା ରଖେ ଅପନେ କର ମାହ୍ନୀଂ ॥
ହରେଁ ହରେ ପ୍ରିୟଧାନ ଉଖ ମିଠି ଲଖି ଲଖି କେଂ ।
ଦୌରବେ ନିଜ ସୁଁଢ଼ ହୋହ୍ୱପ୍ରମୁଦିତ ଅତି ଉଖିକେଂ ।
ଗଜ ଆରୋହୀ ଯୁକ୍ତି ତେଁ, ପୈନୋ ଅଙ୍କୁଶ ଧାରକେଂ ।
ପ୍ରବଲ ପ୍ରଲୋଭନ ତେ ବଚତ, କରେ ଚତୁର ଗଜ ମାରକେଂ ॥"



## ଶ୍ରୀ ଋଷଭଦେବଙ୍କର ଦେହତ୍ୟାଗ

"ନିତ୍ୟାନୁଭୂତ ନିଜ ଲାଭ ନିବୃତ୍ତ ତୃଷ୍ଣଃ
ଶ୍ରେୟସ୍ୟତଦ୍ରଚନୟା ଚିର ସୁପ୍ତବୁଦ୍ଧେଃ ।
ଲୋକସ୍ୟ ଯଃ କରୁଣୟା ଭୟମାତ୍ମଲୋକ—
ମାଖ୍ୟାନ୍ନମୋ ଭଗବତେ ଋଷଭାୟ ତସ୍ମୈ ॥"

( ଭାଗବତ ୫ମ ସ୍କନ୍ଧ ୬ ଅଧ୍ୟାୟ ୧୯ ଶ୍ଳୋକ

### ଛପ୍‌ପୟ

"ମଳିନ ବସନ କେ ସରସ ଲଖେ ଜାନି ନା ତନକୁଁ ।
ସୁଖ ଦୁଃଖ ମହଁ ସମ ରହେ ରଖହୁ ସଂଯତ ନିଜ ମନକୁଁ ॥
ଋଷଭ ତ୍ୟାଗି ଅଭିମାନ ଲଙ୍ଗ ଅରୁ ଥୁଲ ଦେହ କୋ ।
ତ୍ୟାଗୋ ଜନପଦ ସର୍ବ ପୁତ୍ର ଧନ ଧାମ ଗେହ କୋ ॥
ଯୋଗ ବାସନା ତେ' ବଚୀ, ତନକ ଅହଂ ଆଶ୍ରୟ ମଣ୍ଡ ।
ତାହୁ ତେ ଘୁମତ ଫିରତ, ଚଳତ ସ୍ୱାସ ପ୍ରସ୍ୱାସ ଗଣ୍ଡ ।"

ଶରୀର ଅଭିମାନରୁ ଉତ୍ପନ୍ନ ହୁଏ, ଅହଂ ଭାବରୁ ସ୍ଥିତ ରହେ । ସମସ୍ତ କର୍ମ ସଙ୍କଳ୍ପ ଦ୍ୱାରା ହୁଏ । ଶରୀରରେ ଅହଂଭାବ ନଥିଲେ, କୌଣସି ସଂକଳ୍ପ ଉଠେ ନାହିଁ । ସଙ୍କଳ୍ପ ନହେଲେ କୌଣସି କର୍ମ ହୁଏ ନାହିଁ । କାର୍ଯ୍ୟ ନହେଲେ ଏହି ଶରୀରର ସ୍ଥିତି ମଧ୍ୟ ରହେ ନାହିଁ । ଏଥିରୁ ଏତିକି ପ୍ରମାଣ ହୁଏ ଯେ ଶରୀର ଧାରଣ କରିବା ପାଇଁ ଅହଙ୍କାର ଆବଶ୍ୟକ । ଜ୍ଞାନୀ ପୁରୁଷର ସଂସାରୀ ପୁରୁଷ ପରି ଅହଂକୃତଭାବ ନଥାଏ, ତଥାପି ମଧ୍ୟ ଶରୀର ଧାରଣ ପାଇଁ ସୂକ୍ଷ୍ମ ଅହଙ୍କାର ଭାବନା ଥାଏ, ଯାହା ଫଳରେ ଶରୀର ସମ୍ପୃକ୍ତ ସମସ୍ତ କାର୍ଯ୍ୟ ପ୍ରାରବ୍ଧ ଅନୁସାରେ କୌଣସି

ସଂକଳ୍ପ ନଥାଇ ହେଉଥାଏ । ଯେତେବେଳେ ଏହି ସୂକ୍ଷ୍ମ ଅହଙ୍କାର ଶେଷ ହୋଇଯାଏ, ସେତେବେଳେ ଏହି ପଞ୍ଚଭୌତିକ ଶରୀର ଅଧିକ ଦିନ ପର୍ଯ୍ୟନ୍ତ ରହି ପାରେ ନାହିଁ । କାରଣ ଶରୀର ରକ୍ଷା ପାଇଁ ଅହଙ୍କାର ବିକାଶ ଅପରିହାର୍ଯ୍ୟ । ଅହଙ୍କାର ଶୂନ୍ୟ ବ୍ୟକ୍ତି ସମସ୍ତ ସୂକ୍ଷ୍ମ ଗୁଣ ବିଗ୍ରହ ଏବଂ ସର୍ବବ୍ୟାପକ ଅଟେ । ସ୍ଥୂଳ, ସୂକ୍ଷ୍ମ ଭୂତ ନିଜ ନିଜର କାରଣରେ ଲୀନ ହୋଇଯାଏ, ସେ ମୁକ୍ତ ହୋଇଯାଏ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ ଋଷଭଦେବ ଏଭଳି ଆଚରଣ କରିବାକୁ ଲାଗିଲେ, ଯାହାକୁ ଦେଖିକରି ସମସ୍ତ ଲୋକମାନେ ତାଙ୍କୁ ମତ୍ତ ଉନ୍ମତ୍ତ ଏବଂ ଅଜ୍ଞାନୀ ବୋଲି ଭାବୁଥିଲେ ।"

ଏହା ଶୁଣି ମହାରାଜା ପରୀକ୍ଷିତ ପଚାରିଲେ—"ପ୍ରଭୋ ! ଏତେବଡ଼ ଜ୍ଞାନୀ ଏବଂ ଅବିଚାର ପୁରୁଷ ହୋଇ ମଧ୍ୟ ଋଷଭଦେବ ନିଜଲା ଏହି ମଳମୂତ୍ରରେ ଘାଣ୍ଟି ହେଉଥିଲେ—ଏଭଳି ଲୋକବିରୁଦ୍ଧ କାର୍ଯ୍ୟ କାହିଁକି କରୁଥିଲେ ?"

ଏହା ଉପରେ ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭଗବାନ ଋଷଭଦେବ ଅତ୍ୟନ୍ତ ଐଶ୍ୱର୍ଯ୍ୟଶାଳୀ ସମସ୍ତ ସିଦ୍ଧିମାନଙ୍କର ସ୍ୱାମୀ ଇନ୍ଦ୍ରାଦି ଲୋକମାନଙ୍କର ଭୂଷଣ ଥିଲେ । ତଥାପି ମଧ୍ୟ ନିଜର ଐଶ୍ୱର୍ଯ୍ୟକୁ ଲୁଚାଇ ରଖିବା ପାଇଁ ଅବଧୂତ ବେଶକୁ ଧାରଣ କରି ଜଡ଼ପୁରୁଷ ପରି ଆଚରଣ କରୁଥିଲେ । ଦେଖନ୍ତୁ ମହାରାଜ ! ଯାହା ପାଖରେ ଯେଉଁ ଜିନିଷ ମୂଲ୍ୟବାନ୍, ସେ ପ୍ରାୟ ତାକୁ ଲୁଚାଇ କରିରଖେ । କୌଣସି ଏକ ବିଶେଷ ଅବସ୍ଥାରେ ନିଜର ଅତ୍ୟନ୍ତ ନିକଟ ସମ୍ପର୍କୀୟ ମାନଙ୍କ ପାଖରେ ତାହାକୁ ପ୍ରକାଶିତ କରେ । କୁହନ୍ତୁ, ଦେଖି. କେହି କ'ଣ କାହାର ଧନକୁ ସବସମ୍ମୁଖରେ ଖୋଲିକରି ଧରେ ? ଯେତେବଡ଼ ଧନୀକୁ ପଚାରନ୍ତୁ, ସେ କହନେ ଯେମିତି ସେମିତି କାମ ଚାଲିଯାଉଛି । ଧନୀ ନିଜର ଧନକୁ ଯେପରି ଲୁଚାଇ ରଖେ, ସେହିପରି ଜ୍ଞାନୀ ନିଜର ଐଶ୍ୱର୍ଯ୍ୟ, ବଳ, ସାମର୍ଥ୍ୟ, ପ୍ରଭାବ, ଜ୍ଞାନ ଓ ବିଜ୍ଞାନକୁ ଲୁଚାଇ ରଖେ । ସଭ୍ୟ ନରନାରୀ ଯେପରି ନିଜର ଗୁହ୍ୟ ଅଙ୍ଗମାନଙ୍କୁ ଲୁଚାଇ ରଖନ୍ତି । ସେ ନିଜର ଐଶ୍ୱର୍ଯ୍ୟ, ଧନ, ପ୍ରଭାବ ଓ ପ୍ରତିଷ୍ଠାକୁ ସ୍ୱତଃ ପ୍ରଦର୍ଶନକରେ ସେ ବେପାରୀ ଅଟେ । ତାର ପ୍ରଦର୍ଶନ ସେହି ବସ୍ତୁମାନଙ୍କର ଭାବନାରୁ ହିଁ ଉଦ୍ଭିଷ୍ଟ । ପ୍ରଦର୍ଶନ ନ କରାଇ ଲୋକମାନେ ତାହାର ସମ୍ପତ୍ତିକୁ ଜାଣିଗଲେ ତାହା ଅନ୍ୟକଥା, ଏଇଥିପାଇଁ ଋଷଭଦେବ ସିଦ୍ଧିମାନଙ୍କୁ ସ୍ୱୀକାର କରି କୌଣସି ଉପଯୋଗ କଲେ ନାହିଁ କିମ୍ବା ନିଜର ଈଶ୍ୱରୀୟ ପ୍ରଭାବକୁ ପ୍ରକଟ କଲେନାହିଁ । ଜ୍ଞାନୀ ନିଜର ଯୋଗ ଦୃଷ୍ଟିରେ ଜାଣେ ଯେ ଏ ହେଉଛନ୍ତି ଈଶ୍ୱର । ତାଙ୍କର କେତେବେଳେହେଲେ ମିଥ୍ୟାଭିମାନ ହେବନାହିଁ । ଶରୀର ଇତ୍ୟାଦିର ଯେଉଁ ବ୍ୟବହାରିକ ଅଭିମାନ ରହେ, ତାହାକୁ ମଧ୍ୟ ସେ ତ୍ୟାଗ କରିଥିଲେ । ବର୍ତ୍ତମାନ କେବଳ ସେ ଯୋଗ-

ମାତ୍ମାଙ୍କର ବାସନାହେତୁ ଅଭିମାନ ବଶତଃ ଶରୀରକୁ ଧାରଣ କରିଥିଲେ । ବାସ୍ତବରେ ସେ ଲିଙ୍ଗ ଦେହ ଇତ୍ୟାଦି ଅଭିମାନରୁ ମୁକ୍ତ ହୋଇ ଅନ୍ତରାତ୍ମାରେ ଅଭେଦ ରୂପରେ ସ୍ଥିତ ହୋଇଥିବା ପରମାତ୍ମାଙ୍କ ନିଜ ସହିତ ତାଦାତ୍ମ୍ୟଭାବ ଅନୁଭବ କରୁଥିଲେ ।"

ରାଜା ପଚାରିଲେ—"ଭଗବନ୍ ! ଯେତେବେଳେ ଶରୀରରେ ଅଭିମାନ ଶେଷ ହୁଏନାହିଁ, ତେବେ ତାହା କେତେଦିନ ଧରି ରହିପାରେ ?"

ଶ୍ରୀ ଶୁକ କହିଲେ—"ରାଜନ୍ ! ଏହା ତ ମୁଁ କହୁଛି, ତାଙ୍କର ଶରୀର ଆଉ ଅଧିକଦିନ ରହିବାର ନଥିଲା । ବିନା ସଙ୍କଳ୍ପରେ ପ୍ରାରବ୍ଧ ହେତୁ ଧାରଣ ଶରୀର ଏ ପାଖରୁ ସେପାଖ ବୁଲେ । ଏହିହେତୁ ସେ ଦକ୍ଷିଣ ଦେଶରେ କୋଙ୍କ-ବେଙ୍କକୁଟକ ଏବଂ କର୍ଣ୍ଣାଟକ ଇତ୍ୟାଦି ଦେଶରେ ଲୁଗୁରିବାଳ ବସ୍ତ୍ରହୀନ ଦିଗମ୍ବର ବେଶ ଧାରଣକରି ବୁଲିବାକୁ ଲାଗିଲେ ।

ଅରେ ସେ ପାଗଳଙ୍କ ପରି ଶରୀରର ଭଲମନ୍ଦକୁ ଭୁଲିଯାଇ ବ୍ରହ୍ମାନନ୍ଦରେ ନିମଗ୍ନ ରହି କୁଟକାଚଳର ଉପବନରେ ବିଚରଣ କରୁଥିଲେ । ଶରୀର ଉପରେ ନଥିଲା କୌଣସି ବସ୍ତ୍ର, ସମ୍ପୂର୍ଣ୍ଣ ଦେହରେ ଧୂଳି ଲାଗି ରହିଥିଲା ଏବଂ ଆଖି ଉମା ଉମା ହୋଇ ଉଠିଥିଲା, ବାଳ ଶୁଖିଲା ଓ ଇତସ୍ତତଃ । ଏହିପରି ମଦୋମତ୍ତ ହୋଇ ମୁହଁରେ ପଥର ଧରି ବୁଲୁଥିଲେ ।"

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ, "ଭଗବନ୍ ! ଶ୍ରୀ ଋଷଭଦେବ କେଉଁଥିପାଇଁ ମୁହଁରେ ପଥର ରଖିଥିଲେ ମ ?"

ଏହା ଶୁଣିକରି ଶୁକଦେବ କିଛି ସମୟ ଭାବିବାକୁ ଲାଗିଲେ ଏବଂ କହିଲେ —"ରାଜନ୍ ଅବଧୂତଙ୍କର କାର୍ଯ୍ୟପ୍ରଣାଳୀ ଜଣାପଡ଼େ ନାହିଁ । ସେ କେଉଁ ଅଭିପ୍ରାୟରେ କେଉଁ କାର୍ଯ୍ୟ କରେ । ମୁହଁରେ ପଥର ରଖିବାର ଅଭିପ୍ରାୟ ଏଇଆ ହୋଇପାରେ ଯେ, ଏହି ଶରୀରର ଅଙ୍ଗ ଓ ପଥର ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଦାନ୍ତ ଯେପରି ପଥର ସେହିପରି ! ଏଇଥିପାଇଁ ସମାନତା ଦେଖାଇବା ପାଇଁ ସେ ମୁହଁରେ ପଥର ଧାରଣ କଲେ । କିମ୍ବା ଯେଉଁ ଲୋକ ଏହି ମନୁଷ୍ୟ ଶରୀର ପାଇଁ କେବଳ ଖାଇବା ପିଇବା ଚିନ୍ତାରେ କଟାଏ । ସେ କେବଳ ପଥର ହିଁ ଖାଏ କିମ୍ବା ମୂର୍ଖ ଲୋକମାନେ ଯେଉଁମାନେ ମୋତେ ପାଗଳ ଭାବି ଟେକା ମାରୁଛନ୍ତି, ମୁଁ ତାଙ୍କୁ ଖରାପଭାବେ କହୁନାହିଁ । ପଥରକୁ ମଧ୍ୟ ଦେହିଭଳି ଭାବରେ ଖାଇ ଦେଉଛି ଯେପରି ଖାଦ୍ୟ ଦେଉଥିବା ଲୋକମାନଙ୍କର ଖାଦ୍ୟ । କିମ୍ବା ଯେଉଁମାନେ ହୃଦୟହୀନ, ଶୁଷ୍କ ପଥର ପରି ହୃଦୟ ଅଟେ,

ସେମାନଙ୍କୁ କାଳ ମୁହଁରେ ନିକ୍ଷେପ କରିଯାଏ; କିନ୍ତୁ ସେମାନେ ମୁହଁକୁ ଯାଇଁ ସେହିଭଳି ଭାବରେ ହାର ଆସନ୍ତି । କିନ୍ତୁ ମୃତ୍ୟୁକୁ ଦେଖି ମଧ୍ୟ ସେ ଭୟଭୀତ ହୁଅନ୍ତି ନାହିଁ, ତାଙ୍କ ମନରେ କୌଣସି ବିକାର ଲକ୍ଷ୍ୟ କରିଯାଏ ନାହିଁ । କିମ୍ବା । ଋଷଭଦେବ ପରମହଂସମାନଙ୍କୁ ଉପଦେଶ ଦେଉଛନ୍ତି ଯେ ଜ୍ଞାନୀ ହୋଇ ମଧ୍ୟ ବାଳକ ପରି କ୍ରୀଡ଼ା କର । ଯେପରି ଗ୍ରେଟପିଲାକୁ ଟଙ୍କା ପଇସା ମାଟି ଫଳ ମିଠାଇ ଯାହା କିଛି ମିଳେ, ସେ ତାକୁ ମୁହଁରେ ପୁରିଦିଏ, ଏହି ପ୍ରକାର ଜ୍ଞାନୀଙ୍କୁ ପ୍ରାରବ୍ଧ ହେତୁ ଯାହାକିଛି ମିଳିଥାଏ, ସେଥିରେ ସନ୍ତୁଷ୍ଟ ରହିବା ଉଚିତ । ମିଠା ଖଟାର ଭେଦଭାବ ରହିବା ଉଚିତ ନୁହେଁ । ଏହି ପ୍ରକାର ଭାବରେ ମହାରାଜ ! ମୁହଁରେ ପଥର ଧାରଣ କରିବାର ଅଭିପ୍ରାୟ ତାଙ୍କର ହୋଇ ଥାଇପାରେ ।

ବର୍ତ୍ତମାନ ଭଗବାନ ଋଷଭଦେବଙ୍କର ଇଚ୍ଛା ଏହି ପଞ୍ଚ ଭୌତିକ ଶରୀରକୁ ପରିତ୍ୟାଗ କରିବା ପାଇଁ ହେଲା । ଯେତେବେଳେ ସେ କୁଟକାଚଳର ଉପବନରେ ବିଚରଣ କରୁଥିଲେ, ହଠାତ୍ ବନେ ପବନର ତୀବ୍ର ଗତି ହେତୁ ହଲିବା ଦ୍ୱାରା ଏବଂ ପରସ୍ପରର ସଂଘର୍ଷ ଫଳରେ ବାଉଁଶରୁ ଅଗ୍ନି ଉତ୍ପନ୍ନ ହେବାକୁ ଲାଗିଲା । ଏହାକୁ ଦାବାନଳ କହନ୍ତି । ସେହି ଅଗ୍ନି ଉତ୍ପନ୍ନ ହେବା ମାତ୍ରେ ସମସ୍ତ ବଣକୁ ଜଳାଇବାକୁ ଆରମ୍ଭ କରିଦେଲା । ଶ୍ରୀ ଋଷଭଦେବ ସେଠାରେ ବିଚରଣ କରୁଥିଲେ । ତାଙ୍କର ଶରୀର ପ୍ରତି ମୋହ ଥିଲେ, ତା ପ୍ରତି ଆସକ୍ତି ଥିଲେ ତାଙ୍କୁ ରକ୍ଷା କରିବାକୁ ଇଚ୍ଛା କରି ବଞ୍ଚାଇବାକୁ ଚେଷ୍ଟା କରିଥାନ୍ତେ । ତାଙ୍କର ପଞ୍ଚଭୂତର ତିଆରି ସମସ୍ତ ପଦାର୍ଥ ପ୍ରତି ଅଭେଦ ବୁଦ୍ଧି ଥିଲା, ତେଣୁ ସେ ସେଠାରେ ଚୁପ୍‌ଚାପ ବସି ରହିଲେ । ଅଗ୍ନି ତାଙ୍କର ସମସ୍ତ ପଞ୍ଚ ଭୌତିକ ଶରୀରକୁ ଜଳାଇ ଦେଲା । ତାଙ୍କର ଶରୀର ଭସ୍ମ ହୋଇଗଲା ।

ଏହା ଶୁଣି ରାଜା ପଚାରିଲେ—"ଭଗବନ ! ଏତେବଡ଼ ମହାପୁରୁଷ ଯୋଗୀ ଏବଂ ସାକ୍ଷାତ୍ ଭଗବାନଙ୍କର ଅବତାର ଋଷଭଦେବଙ୍କର ଶରୀରକୁ ଜଳାଇବାକୁ ଅଗ୍ନିଦେବଙ୍କର ସାହାସ କିପରି ହେଲା ? ଯେତେବେଳେ ଅଗ୍ନି ଭଗବାନଙ୍କର ଭକ୍ତ ପ୍ରହ୍ଲାଦଙ୍କର ଶରୀରକୁ ଜଳାଇବାକୁ ସମର୍ଥ ହେଲା ନାହିଁ, ସେତେବେଳେ ଏ ତ ଥିଲେ ସାକ୍ଷାତ ଈଶ୍ୱର । ଏ ବିଷୟରେ ମୋର ସନ୍ଦେହ ହେଉଛି ।"

ଏହା ପରେ ଶୁକଦେବ କହିଲେ—"ରାଜନ ! ଆପଣ ସତ୍ୟ କହୁଛନ୍ତି, ଶ୍ରୀ ଋଷଭଦେବଙ୍କର ଇଚ୍ଛା ହୋଇ ନଥିଲେ ଅଗ୍ନିର ସାମର୍ଥ୍ୟ ନ ଥିଲା ତାଙ୍କର ଶରୀରକୁ ଜଳାଇ ଦେବାର । କିନ୍ତୁ ସେ ବର୍ତ୍ତମାନ ଶରୀରକୁ ଛାଡ଼ିବାକୁ ଇଚ୍ଛା

କରୁଥିଲେ । ତାଙ୍କର ସଙ୍କଳ୍ପ ହେତୁ ଅଗ୍ନିଦେବ ତାଙ୍କ ଆଜ୍ଞାକୁ ପାଳନ କଲେ । ସେ ଯୋଗୀମାନଙ୍କର ଦେହ ତ୍ୟାଗ କରିବାର ବିଧି ଶିଖାଇବା ପାଇଁ ଏହି ପ୍ରକାର ଭାବରେ ଶରୀରକୁ ଛାଡ଼ିବାକୁ ଉଦ୍ୟତ ହେଲେ । ଅତଏବ ତାଙ୍କ ଶରୀର ତାଙ୍କ ସଂକଳ୍ପ ହେତୁ ନଷ୍ଟ ହେଲା ।

ଏହି ପ୍ରକାର ଭାବରେ ମହାରାଜ ! ମୁଁ ଆପଣଙ୍କୁ ସମ୍ପୂର୍ଣ୍ଣ ବେଦ, ଲୋକ ଦେବତା, ବ୍ରାହ୍ମଣ ଏବଂ ଗାଈମାନଙ୍କର ପରମଗୁରୁ ଭଗବାନ ଋଷଭଦେବଙ୍କର ପରମପାବନ ପୁଣ୍ୟପଦ ବିଶୁଦ୍ଧ ଚରିତ୍ର ଆପଣଙ୍କ ଆଗରେ କହିଲି । ବର୍ତ୍ତମାନ ଆପଣ ଆଉ କ'ଣ ପଚାରିବାକୁ ଇଚ୍ଛା କରୁଛନ୍ତି ।"

ରାଜା ପଚାରିଲେ—"ଭଗବନ ! କେହି କେହି ଲୋକ ଭଗବାନ ଋଷଭ-ଦେବଙ୍କୁ 'ଅର୍ହତ' କହନ୍ତି, ଏହାର ଅର୍ଥ କ'ଣ ? ଏଭଳି ଲୋକମାନେ ତ ବେଦକୁ ମାନନ୍ତି ନାହିଁ, ଭଗବାନ ଯଜ୍ଞ ପୁରୁଷଙ୍କର ନିନ୍ଦା କରନ୍ତି, ଏହା କେଉଁ କଥା ?"

ଏହା ଶୁଣି ଶୁକଦେବ କହିଲେ—"ରାଜନ୍ ! କିଛି ଲୋକ ମହାପୁରୁଷଙ୍କ ନାମରେ କୌଣସି କୌଣସି ପନ୍ଥା ବାହାର କରନ୍ତି । ଏହି ଲୋକମାନେ ମହାପୁରୁଷ-ଙ୍କର ଅନ୍ତରଙ୍ଗ ଭାବନାକୁ, ଜ୍ଞାନବିଜ୍ଞାନକୁ ବୁଝି ପାରନ୍ତି ନାହିଁ, ତାଙ୍କର ବାହ୍ୟବେଶ ଏବଂ ଆଚରଣକୁ କେବଳ ଅନୁକରଣ କରନ୍ତି । କାଶୀରେ ଜଣେ ମହାତ୍ମା ଥିଲେ । କେବେ କେବେ ସେ ଗୋଟିଏ ଲମ୍ବା ଟୋପି ପିନ୍ଧି ଦେଉଥିଲେ । ତାଙ୍କ ପରେ ତାଙ୍କ ନାଁରେ ଯେଉଁ ପନ୍ଥା ଚାଲିଲା, ସେଥିରେ ଟୋପି ପ୍ରଧାନ ହୋଇଗଲା, ଯେ ଏହିପରି ଟୋପି ପିନ୍ଧିବ ସେ ସେହି ପନ୍ଥାର ଅବଲମ୍ବୀ ଭାବେ ବୁଝାଯିବ । କୌଣସି ମହାତ୍ମା ନାକରେ ତିଳକ ଲଗାଇ ଥିଲେ, ବର୍ତ୍ତମାନ ତାଙ୍କ ନାମରେ ଯେଉଁ ସମ୍ପ୍ରଦାୟ ସୃଷ୍ଟି ହେଲା, ସେଥିରେ ଏହିଭଳି ତିଳକ ନିଶ୍ଚୟ ରହିଥିବ, ଆଉ କିଛି ଥାଉ ବା ନଥାଉ । କୌଣସି ଏକ ମହାତ୍ମା କିଛି ଚେର ଗୋଡରେ ବାନ୍ଧୁଥିଲେ, ପରେ ତାଙ୍କର ଅନୁସରଣକାରୀମାନେ ଚେର ବାନ୍ଧିବା ଆବଶ୍ୟକ ବୋଲି ଧରି ନେଲେ । ଏହି ପ୍ରକାର ଭାବରେ ମହାରାଜ ! ଲୋକେ ବାହାର ଜିନିଷକୁ ଖୁବ ଶୀଘ୍ର ଗ୍ରହଣ କରିନିଅନ୍ତି । ଅନ୍ତରାତ୍ମାକୁ କେବଳ କେହି ଧୀର, ବୀର ପୁରୁଷ ହିଁ ଦେଖେ । ଆମ୍ଭେମାନେ ଏମିତ ଶୁଣିଛୁ ଯେ ଭଗବାନ ଋଷଭଦେବ କୋଙ୍କ, ବେଙ୍କ ଏବଂ କୁଟକାଦି ଦେଶମାନଙ୍କରେ ଭ୍ରମଣ କରୁଥିଲେ, ସେତେବେଳେ ସେଠାରେ ତାଙ୍କର ମହିମା ଥିଲା ଅପାର । କଳିଯୁଗରେ ଯେତେବେଳେ ଏହି ବୃତ୍ତାନ୍ତକୁ ସେଠାରେ କୌଣସି 'ଅର୍ହତ' ରାଜା ଶୁଣିବ, ସେ ଏହିଭଳି ଆଚରଣ କରିବ ଏବଂ ଏକ ନୂତନ ମତର ପ୍ରଚାର କରିବ । ତା ପଛରେ ଯେଉଁମାନେ ରହିବେ,

ସେମାନେ ଏ କଥାର ଯଥାର୍ଥ ଭାବକୁ ନ ବୁଝି ବଚନ ବଚନ ଅର୍ଥ ଲଗାଇ ଅର୍ଥର ଅନର୍ଥ କରିବେ । ସେମାନେ ଦେବ ମାୟାରେ ମୋହିତ ହୋଇ ଶାସ୍ତ୍ରବିହିତ ଚିନ୍ତା ଓ ଆଚରଣକୁ ତ୍ୟାଗ କରି ଅଧର୍ମର ପ୍ରଭାବରେ ବୁଦ୍ଧିହୀନ ହୋଇ ଓଲଟା ପାଲଟା କଥାବାର୍ତ୍ତା କରିବେ । ଦାନ୍ତ ଉପରେ ମଳଧାରଣ କରିବେ । ମୁଖରୁ ଦୁର୍ଗନ୍ଧ ନିର୍ଗତ ହେବ । କେଶର ବିନ୍ୟାସ କରିବେନାହିଁ । ଈଶ୍ୱରଙ୍କର ତିରସ୍କାର କରିବେ, ଅହଂସାର ମନମୁଖୀଭାବନ ଗ୍ରହଣ କରିବେ, ବେଦର ବ୍ରାହ୍ମଣର ସଦାସର୍ବଦା ନିନ୍ଦା କରିବେ ଅନ୍ଧ ପରମ୍ପରାରେ ବଶୀଭୂତ ହୋଇ ଅବୈଦିକ ଆଚରଣକୁ ସ୍ୱୀକାର କରିବେ । ସେମାନଙ୍କ ପରି ଆଚରଣ କରୁଥିବା ସାଧୁ ପୁରୁଷମାନଙ୍କର ଦୋଷ ନାହିଁ, ଦୋଷ ତ ସେହି ସ୍ୱାର୍ଥାନ୍ଧମାନଙ୍କର ଯେଉଁମାନେ ତାଙ୍କ ନାଁରେ ନିଜର ସ୍ୱାର୍ଥ ସିଦ୍ଧି ପାଇଁ ସାଧାରଣ ଲୋକମାନଙ୍କୁ ଭୁଲାଇଥାନ୍ତି । ମହାରାଜ ଏଥିରେ କାହାରି କିଛି ଦୋଷ ନାହିଁ । ଏହା କେବଳ ଯୁଗଧର୍ମ ଅଟେ । ଭଗବାନଙ୍କର ଇଚ୍ଛା ହେତୁ ଏହା ସବୁ ସଙ୍ଘଟିତ ହୁଏ । ତାଙ୍କର ଇଚ୍ଛା ବ୍ୟତୀତ ପତ୍ରଟିଏ ମଧ୍ୟ ହଲିବ ନାହିଁ । ସେ ଯୁଗ ଯୁଗ ଧରି ଲୋକମାନଙ୍କର ଚିତ୍ତବୃତ୍ତିକୁ ଏହି ପ୍ରକାର ଭାବରେ ପ୍ରସ୍ତୁତ କରନ୍ତି ଯାହା ଫଳରେ ଲୋକମାନଙ୍କର ସ୍ୱାଭାବିକ ପ୍ରବୃତ୍ତି ଏହି ଯୁଗର କାର୍ଯ୍ୟ ଅନୁକୂଳ ହୋଇଯାଏ । ଧର୍ମ ଅଧର୍ମ ଉଭୟ ଭଗବାନଙ୍କର ଇଚ୍ଛା ଦ୍ୱାରା ସମୟ ସମୟରେ ବଢେ ଏବଂ କମେ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଏହି ଋଷଭ ଚରିତ ଅତ୍ୟନ୍ତ ମଙ୍ଗଳମୟ ଶିକ୍ଷାପ୍ରଦ ପାବନ ଏବଂ ମନୋରମ ଅଟେ । ଯେଉଁ ପୁରୁଷ ଏହାକୁ ଶ୍ରଦ୍ଧାପୂର୍ବକ ଶୁଣେ ଓ ଶୁଣାଏ, ଏହି ଉଭୟଙ୍କର ଭଗବାନ ବାସୁଦେବଙ୍କ ଚରଣାରବିନ୍ଦରେ ଭକ୍ତି ହୋଇଯାଏ । ଭକ୍ତି ହେଉଛି ଜୀବର ଶ୍ରେୟ । ଏହାହିଁ ପରମ ପୁରୁଷାର୍ଥ । ଏହାର ପ୍ରାପ୍ତିରେ ଶାନ୍ତି ଓ ସୁଖ ମିଳେ । ଏହି ହେତୁ ଭକ୍ତି ରୂପକ ଜଳାଶ୍ରୟରେ ପଣ୍ଡିତଲୋକମାନେ ନିଜର ନାନା ପ୍ରକାର ପାପଦ୍ୱାରା ସନ୍ତପ୍ତ ଅନ୍ତଃକରଣକୁ ନିରନ୍ତର ସ୍ନାନ କରି ଧୌତ କରନ୍ତି । ଏହି ସ୍ନାନର ଫଳ ଏହା ହୁଏ ଯେ ତାଙ୍କୁ ପରମ ଶୀତଳତା ମିଳେ ଯାହା ଫଳରେ ଧର୍ମ, ଅର୍ଥ, କାମ କଥା ବା କ'ଣ କୁହାଯିବ, ମୋକ୍ଷକୁ ମଧ୍ୟ ସେ ତିରସ୍କାର କରେ । ଯାହା ପାଖରେ ଭଗବାନ୍ ସେବା ଅଭାବ, ରହିଛି, ଭଗବତ୍ ଭକ୍ତିର ଗଙ୍ଗାରେ ଯେ ସ୍ନାନକରେ ତାର ସମସ୍ତ ପ୍ରକାର ପୁରୁଷାର୍ଥ ସିଦ୍ଧ ହୋଇଯାଏ ।

## ଛପ୍‌ପଯ୍ଯ

"କୋଙ୍କ ବେଙ୍କ ଅରୁ କୁଟକ ଫିରତ କର୍ନାଟକ ଜ୍ଞାନୀ ।
କୁଟକାଚଲ କେ ନିକଟ ଗୟେ ମୁନିବର ନିର୍ମାନୀ ॥
ପବନ ବେଣୁ ସଂଘର୍ଷ ଲଗୀ ଦାବାନଳ ବନ ମହଁ ।
ବୈଠେ ହୈ ନିଶ୍ଚିନ୍ତ ନହୀ ଶଙ୍କା କଛୁ ମନ ମହଁ ॥
ତନୁ ଅନିତ୍ୟତା ପ୍ରକଟ ହିତ, ଉପଲଖଣ୍ଡ ମୁଖ ମହଁ ଧରଯୋ ।
ଭୟେ ଲୀନ ନିଜ ରୂପ ମହଁ, ଦ ବାନଲ ମହଁ ତନୁ ଜରଯୋ ॥"



# ଭରତ ଚରିତ ଆରମ୍ଭ

"ଯୋ ଦୁସ୍ତ୍ୟଜାନ୍ଦାରସୁତାନ୍ ସୁହୃଦ୍‌ରାଜ୍ୟହୃଦିସ୍ପୃଶଃ ।
ଜହୌ ଯୁବୈବ ମଲବ ଦୁତ୍ତମଶ୍ଲୋକ ଲାଲସଃ ॥"

( ଭାଗବତ ୫-ସ୍କନ୍ଧ ୧୪-ଅଧ୍ୟାୟ ୪୩-ଶ୍ଳୋକ )

## ଛପ୍ପୟ

"ଋଷଭ ତନୟ ଅତି ଶ୍ରେଷ୍ଠ ଜ୍ୟେଷ୍ଠ ସବଇ ପୁତ୍ରନ ମହୁଁ ।
ମରତ ନାମ ବିଖ୍ୟାତ ଭୟେ ତୀନହୁ ଭୁବନନ ମହୁଁ ॥
ନ୍ୟାୟ ଧର୍ମ ତେ, କରେ ସଦା ପୃଥ୍ୱୀକୋ ପାଳନ ।
ଔରସ ସୁତ ସମ ସମୁର୍ଝି କରେ ସବଇ କୋ ଲାଳନ ॥
ବିଶ୍ୱରୂପ ତନୟାସୁ ଧୂର, ପଞ୍ଚଜନୀ ସଁ ଗ ବ୍ୟାହ କର ।
ଯଜ୍ଞ ଯାଗ ଶୁଭ କର୍ମ ତେ, ଆରଧେଂ ନୃପ ସଦା ହର ॥"

ମୋକ୍ଷର ମହତ୍ତ୍ୱ ସେହି ଜାଣେ, ଯାହାର ମୋକ୍ଷ ହୋଇ ଯାଇଛି । ଯାହାର ମୋକ୍ଷ ହୋଇଯାଏ, ସେ ଫେରିକରି କହିବାକୁ ଆସେ ନାହିଁ, ମୋକ୍ଷରେ ସୁଖ ମିଳେ । ମାତ୍ର କୀର୍ତ୍ତିରେ କେତେ ସୁଖ ଅଛି, ଏହାର ଅନୁଭବ କରିବା ପାଇଁ ବହୁତ ଲୋକ ଅଛନ୍ତି । ଆମ୍ଭର କୀର୍ତ୍ତି ଅକ୍ଷୟ ରହୁ, ଆମର ନାମ ଧାମ ରହୁଁ, ଏହି ଲାଳସା ସମସ୍ତଙ୍କର ରହେ । ପ୍ରାୟ ଦେଖାଯାଏ, ସାର୍ବଜନିକ ସ୍ଥାନରେ ଧର୍ମଶାଳା ମାନଙ୍କରେ ରାସ୍ତାର ପଥରରେ କୋଇଲାରେ ବା ଖଡ଼ିରେ ନିଜର ନାମ ଲୋକେ ଲେଖି ଦିଅନ୍ତି, କେତେକ ନିଜ ନାମରେ ପାଠଶାଳା, ଗୋଶାଳା, ପୁସ୍ତକାଳୟ, ଧର୍ମଶାଳା, ଭବନ, ଇତ୍ୟାଦି ପ୍ରସ୍ତୁତ କରି ନିଜର କୀର୍ତ୍ତିର ସ୍ଥାନ ରଖିବାକୁ ଚାହାନ୍ତି ମାତ୍ର ସେମାନେ ଭୁଲି ଯାଆନ୍ତି, ଯେତେବେଳେ ସେମାନେ ଏତେ ଯତ୍ନରେ ପ୍ରସ୍ତୁତ

କରୁଥିବା ଶରୀର ନଷ୍ଟ ହୋଇଗଲା, ତାହାର ନାମ ରହିଲା ନାହିଁ ତେବେ ପାଷାଣ ଉପରେ ଅଙ୍କିତ ଏହି ନାମ କେତେ ଦିନ ରହିବ ! ତଥାପି ମଧ୍ୟ କୀର୍ତ୍ତି ପାଇଁ ସମସ୍ତେ ସର୍ବଦା ଯତ୍ନଶୀଳ ରହନ୍ତି । କେତେକ ଲୋକ ନିଜର କୀର୍ତ୍ତିକୁ ସ୍ଥାୟୀ ରଖିବା ପାଇଁ ଶତ୍ରୁ ମୁକାବିଲା ପ୍ରବଳ ଯତ୍ନ କରନ୍ତି । ତଥାପି ମଧ୍ୟ ତାଙ୍କର କୀର୍ତ୍ତି ରହେ ନାହିଁ, କେତେକ ଆଦୌ ଚେଷ୍ଟା ନକଲେ ମଧ୍ୟ, ନ ଚାହିଁଲେ ମଧ୍ୟ, ଅଜର ଓ ଅମର ହୋଇଯାନ୍ତି । ଏହା ହେଉଛି ଭାଗ୍ୟର କଥା । ଭଗୀରଥ ନିଜର ପିତୃକୂଳକୁ ଉଦ୍ଧାର କରିବା ପାଇଁ ଗଙ୍ଗାଙ୍କୁ ଆଣିଥିଲେ । ତାଙ୍କୁ ଆଣିବାର ପ୍ରଯତ୍ନ ଅଂଶୁମାନ ଏବଂ ଦିଲୀପ ମଧ୍ୟ କରିଥିଲେ, ସେମାନେ ତପସ୍ୟା କରୁ କରୁ ମୃତ୍ୟୁ-ଲୋକକୁ ଗମନ କଲେ, ମାତ୍ର ଯଶ ପାଇଲେ ଭଗୀରଥ । ସେଥିପାଇଁ ଆଜି ପର୍ଯ୍ୟନ୍ତେ ଭାଗୀରଥ ଗଙ୍ଗା ନାମରେ ସୁପ୍ରସିଦ୍ଧ । ଯେଉଁ ଲୋକମାନେ ମିଳି ଏହି ସାଗରକୁ ଖୋଳିଥିଲେ, ସେ ସଗରଙ୍କର ଷାଠିଏ ହଜାର ପୁତ୍ରଙ୍କ ମଧ୍ୟରୁ ଜଣକର ନାମ କେହି ଜାଣେ ନାହିଁ, କିନ୍ତୁ ସଗରଙ୍କର ନାମ ହେତୁ ସାଗର ସୃଷ୍ଟିର ଶେଷ ପର୍ଯ୍ୟନ୍ତ ପ୍ରସିଦ୍ଧ ହୋଇ ରହିବେ । ସେହିପରି ଭରତ ଏତେ ବଡ ପୁଣ୍ୟଶ୍ଳୋକ, ଯଶସ୍ୱୀ ଏବଂ କୀର୍ତ୍ତିମାନ ତାଙ୍କ ନାମରେ ଏହି ଖଣ୍ଡ ଭରତଖଣ୍ଡ ନାମରେ ଏ ପର୍ଯ୍ୟନ୍ତ ପ୍ରସିଦ୍ଧି ଲାଭ କରିଛି ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଆମ୍ଭେ ଆପଣଙ୍କୁ ପ୍ରଥମରୁ କହି ରଖିଛୁ ଯେ ଋଷଭଦେବଙ୍କର ଏକଶହ ପୁତ୍ରମାନଙ୍କ ମଧ୍ୟରୁ ଭରତ ସବୁଠାରୁ ଥିଲେ ଶ୍ରେଷ୍ଠ ଓ ଜ୍ୟେଷ୍ଠ । ଯେତେବେଳେ ସେ ଯୁବାବସ୍ଥା ସମ୍ପନ୍ନ ହେଲେ, ସେତେବେଳେ ତାଙ୍କୁ ଋଷଭଦେବ ଯୁବରାଜ ପଦରେ ଅଧିଷ୍ଠିତ କଲେ । ସେ ପିତାଙ୍କ ସହିତ ରାଜକାର୍ଯ୍ୟରେ ସହଯୋଗ କରିବାକୁ ଲାଗିଲେ । ଋଷଭଦେବ ତାଙ୍କର ବିବାହ ଶ୍ରୀ.ବିଶ୍ୱରୂପଙ୍କର କନ୍ୟା ପଞ୍ଚଜନୀଙ୍କର ସହିତ କରିଦେଲେ । ପଞ୍ଚଜନୀଙ୍କୁ ପାଇ ଭରତ ଅତ୍ୟନ୍ତ ଆନନ୍ଦିତ ହେଲେ । ପିତା ଯେତେବେଳେ ଦେଖିଲେ ମୋର ପୁତ୍ର ସର୍ବଗୁଣସମ୍ପନ୍ନ, ପ୍ରଜାପାଳନ ଅତ୍ୟନ୍ତ କୁଶଳତାର ସହିତ ସମ୍ପାଦନ କରି ପାରିବେ, ସେତେବେଳେ ରାଜ୍ୟର ସମସ୍ତ ଭାର ତାଙ୍କ ଉପରେ ଛାଡ଼ି ଦେଇ ତାଙ୍କର ଶ୍ରେଷ୍ଠ ପୁତ୍ରକୁ ତାଙ୍କର ଅଧିନରେ ରଖି ବାର୍ଯ୍ୟାଙ୍କୁ ପୁତ୍ରମାନଙ୍କ ନିକଟରେ ସମର୍ପଣ କରି ଅବଧୂତ ବୃତ୍ତି ଧାରଣ କରି ଘରୁ ବାହାରି ଗଲେ ।

ପିତାଙ୍କର ଗୃହତ୍ୟାଗ ପରେ ଭରତ ସମଗ୍ର ଅଜନାଭଖଣ୍ଡର ରାଜା ହେଲେ । ସେ ଧର୍ମ ପୂର୍ବକ ପ୍ରଜା ପାଳନ କରିବାକୁ ଲାଗିଲେ । ଅନେକ ବୈଦିକ ଅନୁଷ୍ଠାନ ଏବଂ ଯାଗଯଜ୍ଞ ଇତ୍ୟାଦି କରିବାକୁ ଲାଗିଲେ । ମହାରାଣୀ ପଞ୍ଚଜନୀଙ୍କର ଗର୍ଭରୁ ଭରତଙ୍କର ସୁମତି, ରାଷ୍ଟ୍ରଭୃତ, ସୁଦର୍ଶନ, ଆବରଣ ଏବଂ ଧୂମ୍ରକେତୁ ନାମକ

ପାଞ୍ଚପୁତ୍ର ହେଲେ । ଯେପରି ହାତର ପାଞ୍ଚ ଆଙ୍ଗୁଳି ମିଳିମିଶି କାର୍ଯ୍ୟ କରେ, ଯେପରି ପଞ୍ଚଭୂତ ମିଳି ଏହି ଦୃଶ୍ୟ ପ୍ରପଞ୍ଚକୁ ସୃଷ୍ଟି କରେ, ଯେପରି ପାଞ୍ଚ ଜ୍ଞାନେନ୍ଦ୍ରିୟ ସମସ୍ତ ତନ୍ମାତ୍ରାଙ୍କୁ ବ୍ୟକ୍ତ କରେ, ଯେପରି ପଞ୍ଚପ୍ରାଣ ମିଶି ଦେହକୁ ପରିଚାଳନା କରନ୍ତି, ସେହିପରି ପାଞ୍ଚ ଭାଇ ମିଳିମିଶି ଭରତଙ୍କର ସମସ୍ତ ରାଜ୍ୟଭାର ସୁରୁଖୁରୁ ଭାବରେ ବହନ କରିବାକୁ ଲାଗିଲେ ।

ମହାରାଜ ଭରତ ସମସ୍ତ ଶାସ୍ତ୍ରର ମର୍ମକୁ ଜାଣିଥିବା ବ୍ୟକ୍ତି ଥିଲେ । ସେ ରାଜାଙ୍କର କର୍ତ୍ତବ୍ୟକୁ ପୂର୍ଣ୍ଣଭାବେ ଜ୍ଞାତ ଥିଲେ । ନିଜର ସମସ୍ତ ପ୍ରଜାଙ୍କର ପାଳନ ସେ ନିଜର ଜନ୍ମିତ ସନ୍ତାନମାନଙ୍କ ପରି କରୁଥିଲେ । ତାଙ୍କର ସମସ୍ତ କର୍ମ ପ୍ରଭୁଙ୍କ ପ୍ରତି ଅର୍ପିତ ହୋଇ ନିଷ୍କାମ ଥିଲା । ସେ ଧର୍ମକାର୍ଯ୍ୟରେ ଆଦୌ ଖାତଷ୍ଟୁହ ହେଉ ନଥିଲେ । ସେ ସଦାସର୍ବଦା ଯାଗଯଜ୍ଞରେ ଲାଗିରହି ପ୍ରଭୁଙ୍କର ଆରାଧନା କରୁଥିଲେ ।

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ, "ଭଗବନ ! ଯେବେ ଭରତଙ୍କର କୌଣସି କର୍ମର ଫଳ ଲାଭର ଇଚ୍ଛା ନଥିଲା, ତେବେ ସେ ଏତେ ଆଡ଼ମ୍ବର ପୂର୍ଣ୍ଣ ଯଜ୍ଞ ପାଇଁ କାହିଁକି ବ୍ୟର୍ଥପ୍ରୟାସ କରୁଥିଲେ ? ସେ ଯଜ୍ଞଦ୍ୱାରା ସ୍ୱର୍ଗ ପାଇଁ ତ ଚେଷ୍ଟା କରୁ ନଥିଲେ ?

ଏହା ଶୁଣି ଶ୍ରୀ ଶୁକ କହିଲେ—"ମହାରାଜ ! ଆପଣଙ୍କର କହିବା ସତ୍ୟ ଭରତଙ୍କର କାମନା ସ୍ୱର୍ଗ ଇତ୍ୟାଦି ଲୋକକୁ ଜୟ କରିବାର ନଥିଲା, ତଥାପି ମଧ୍ୟ ଏହି ଯୁଗରେ ଯଜ୍ଞପତି ଭଗବାନ ବାସୁଦେବଙ୍କର ବର୍ଣ୍ଣାଶ୍ରମ ଧର୍ମ ଦ୍ୱାରା ପୂଜା କରିବାର ପ୍ରଥା ପ୍ରଚଳିତ ଅଛି ।"

ରାଜା ପଚାରିଲେ—"ଭଗବନ୍ ! ଯଜ୍ଞ କେତେ ପ୍ରକାରର ?"

ଏହା ଶୁଣି ଶ୍ରୀ ଶୁକ ଉତ୍ତର ଦେଲେ—"ରାଜନ ! ଯଜ୍ଞର ଅନେକ ଭେଦ ରହିଛି । ତଥାପି ମଧ୍ୟ ସମସ୍ତର ସମାବେଶ ୭ ଯଜ୍ଞରେ ହୋଇପାରେ । ଗୋଟିଏ ହେଉଛି ପ୍ରତ୍ୟେକ ଦିନ କରଣୀୟ ଅଗ୍ନିହୋତ୍ର ଯଜ୍ଞ, ନିତ୍ୟ ଅଗ୍ନିଙ୍କର ଉପାସନା, ଏହା ପ୍ରଥମ ଓ ପ୍ରଧାନ ଅଟେ । ଦ୍ୱିତୀୟ ଯଜ୍ଞ ହେଉଛି ପିତୃ ପୁରୁଷମାନଙ୍କ ପାଇଁ ପ୍ରତ୍ୟେକ ଅମାବାସ୍ୟାରେ ଯଜ୍ଞ ଅନୁଷ୍ଠାନ ହୁଏ । ପିତୃ ପୁରୁଷମାନଙ୍କ ଅମାବାସ୍ୟା ହେଉଛି ଅତ୍ୟନ୍ତ ପ୍ରିୟ । ଅତଏବ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଅମାବାସ୍ୟାରେ ଯେଉଁ ଯଜ୍ଞ କରାଯାଏ ଏହାକୁ ଦର୍ଶ ଯଜ୍ଞ କୁହାଯାଏ, ଏହାକୁ କରିବାଦ୍ୱାରା ଅକ୍ଷୟ ଫଳ ପ୍ରାପ୍ତି ହୁଏ । ସେଦିନ କିଛି ନହେଲେ ମଧ୍ୟ କେବଳ ପିତୃ ପୁରୁଷମାନଙ୍କ ପାଇଁ କିଛି ଅନ୍ନଦାନ ଦେବା ଆବଶ୍ୟକ । ପ୍ରତ୍ୟେକ ମାସ ପୂର୍ଣ୍ଣିମା ଦିନ ଯେଉଁ ଯଜ୍ଞ

କରାଯାଏ ତାହାକୁ ପୂର୍ଣ୍ଣିମାସ ଯଜ୍ଞ କୁହାଯାଏ । ଚତୁର୍ଥ ଯଜ୍ଞକୁ ଚାତୁର୍ମାସ କହନ୍ତି । ବର୍ଷାର ଚାରିମାସକାଳ ଗୋଟିଏ ସ୍ଥାନରେ ରହିକରି ଯେଉଁ ବିଶେଷ ନିୟମ ସଂଯମର ସହିତ ବ୍ରତ ଉପବାସ ଇତ୍ୟାଦି କରାଯାଏ, ସେ ସବୁ ଚାତୁର୍ମାସ ଯଜ୍ଞର ଅନ୍ତର୍ଭୁକ୍ତ । ଏହି ଯଜ୍ଞ ଯଜ୍ଞ ଭେଦରେ ଦୁଇପ୍ରକାର ଅଟେ । ଯେଉଁ ଯଜ୍ଞରେ ପଶୁ ବାନ୍ଧିବାର ଖମ୍ବ ରହେ ତାହାକୁ ପାସୁଡ଼ଃ ଯଜ୍ଞ କୁହାଯାଏ, ଯେଉଁଥିରେ ଏହା ହୁଏ ନାହିଁ ତାହାକୁ କରୁ କହନ୍ତି । ତାହା ମଧ୍ୟ ପ୍ରକୃତି ଓ ବିକୃତି ଭେଦରେ ଦୁଇପ୍ରକାର ଅଟେ । ଯେଉଁଥିରେ ଯଜ୍ଞର ସମ୍ପୂର୍ଣ୍ଣ ଅଙ୍ଗର ବିଧାନ ରହିଥାଏ । ଏହି ନାଙ୍ଗୋ ପାଙ୍ଗ ଯଜ୍ଞର ସଂଜ୍ଞା ପ୍ରକୃତି ଅଟେ । ଯେଉଁଥିରେ ନ୍ୟୂନାଧିକ ରୂପରେ ଅଙ୍ଗର ବିଧାନ ରହେ ଏହାକୁ ବିକୃତ କହନ୍ତି । ଯଜମାନ ଯଜ୍ଞର ହୋତା (ଋଗ୍‌ବେଦୀୟ) ଅଦ୍ଧ୍ୱର୍ଯ୍ୟୁ (ଯଜୁର୍ବେଦୀୟ) ଉଦ୍‌ଗାତା (ସାମବେଦ ଗାନକରିବା ବ୍ୟକ୍ତି) ଏବଂ ବ୍ରହ୍ମା (ଅଥର୍ବବେଦୀୟ) ଏହି ଚାରି ଋତ୍ୱିକଙ୍କର ସହାୟତାରେ ଶ୍ରଦ୍ଧାସହକାରେ ସମ୍ପନ୍ନ କରି ପାରେ । ସଭ୍ୟମାନେ ଯଜ୍ଞରେ ଉପସ୍ଥିତ ରହି ଅବଲୋକନ କରନ୍ତି । ଏହିଭଳି ଭାବରେ ଭିନ୍ନ ଭିନ୍ନ ଯଜ୍ଞର ଅଙ୍ଗ ଏବଂ କ୍ରିୟା ସହିତ ଅନୁଷ୍ଠାନ କରାଯାଏ । ଯେଉଁ ଯଜ୍ଞ ଯେଉଁ ଦେବତା ନାମରେ କରାଯାଏ, ସେହି ଦେବତାଙ୍କୁ ସେହି ଯଜ୍ଞରେ ପ୍ରଧାନତା ମିଳେ ଏବଂ ଶେଷରେ ସବୁ ଦେବତାମାନଙ୍କୁ ସମାନ ଭାଗରେ ପୂଜା କରାଯାଏ । ଯେଉଁ ଯଜ୍ଞ, ଯେଉଁ କାମ ପାଇଁ କରାଯାଏ, ସେ ସେହିପରି ଫଳ ଉତ୍ପନ୍ନ କରେ ଏବଂ ମୃତ୍ୟୁ ପରେ ଯଜ୍ଞକର୍ତ୍ତା ନିଜର ଭାବନା ଅନୁସାରେ ସେହି ସେହି ଲୋକମାନଙ୍କୁ ଯାଇ ସେହି ଫଳମାନଙ୍କୁ ଭୋଗ କରେ ।"

ରାଜା ପଚାରିଲେ--"ଭଗବନ୍ ! ଯେପରି କଲେ ମଧ୍ୟ ଯଜ୍ଞର ଫଳ ତ ସ୍ୱର୍ଗପ୍ରାପ୍ତି । ଆମେ ସ୍ୱଇଚ୍ଛାରେ ଅଗ୍ନିକୁ ସ୍ପର୍ଶକରୁ କିମ୍ବା ଅନିଚ୍ଛାରେ ଶରୀରକୁ ଜଳାଇ ଦେଉ । ତେବେ ନିଷ୍କାମ କର୍ମର ଅର୍ଥ କଣ ହେଲା ? କର୍ମ ସବୁ ତ ସକାମ, କାମନା ବ୍ୟତୀତ କର୍ମରେ ପ୍ରବୃତ୍ତି ହେବା ଅସମ୍ଭବ ।"

ଶ୍ରୀ ଶୁକ କହିଲେ—"ମହାରାଜ ଆପଣଙ୍କ କହିବା ଯଥାର୍ଥ ଅଟେ, ସାମାନ୍ୟ ନିୟମ ଏହା ଅଟେ ଯେ କର୍ମର ପ୍ରବୃତ୍ତିରୁ କାମନା ଜାତ ହୁଏ । ଅଗ୍ନି ଇଚ୍ଛା ବା ଅନିଚ୍ଛାରେ ସ୍ପର୍ଶ କଲେ ମଧ୍ୟ ଜଳାଇ ଦିଏ । କିନ୍ତୁ ଅକରକରା ଇତ୍ୟାଦି ଔଷଧ ରହିଛି ଯାହାକୁ ପୂର୍ବ ହାତରେ ଲଗାଇଦେଇ ଅଗ୍ନି ରଖିଦେଲେ ହାତ ଜଳେ ନାହିଁ, ଏହିପରି ଭାବରେ ସବୁ କର୍ମକରି ଯଦି ତାହା ଏକମାତ୍ର ପ୍ରଭୁପାଦଙ୍କ ଉଦ୍ଦେଶ୍ୟରେ କରାଯାଏ, ତେବେ ତାହା ନିଷ୍କାମ କର୍ମର ବନ୍ଧନ ହୁଏ ନାହିଁ ।"

ରାଜା କହିଲେ—"ମହାରାଜ ! ଏହି କଥା ମୋ ବୁଦ୍ଧିରେ ପଶୁନାହିଁ । ବର୍ତ୍ତମାନ ଯଜମାନ ଯଜ୍ଞ କରୁଅଛି । ସଂଯୁକ୍ତ ହାତରେ ଘୃତନେଇ ମନ୍ତ୍ର ପଢ଼ିଲେ

'ଇନ୍ଦ୍ରାୟ ସ୍ୱାହା' ଏହି ମନ୍ତ୍ର ଇନ୍ଦ୍ରଙ୍କ ପାଇଁ ଅଟେ । ବର୍ତ୍ତମାନ ଇନ୍ଦ୍ର ଏହି 'ହବି'କୁ ଗ୍ରହଣ କରି ଭାବ ଅନୁସାରେ ଫଳ ଦେବେ । ଯଜ୍ଞଭାଗ ପ୍ରାପ୍ତକରି ଇନ୍ଦ୍ରଦେବ ଯଜମାନଙ୍କୁ ସ୍ୱର୍ଗ ଦେବେ ନିଶ୍ଚୟ । ସ୍ୱର୍ଗରେ ସ୍ୱର୍ଗୀୟ ସୁଖ, ଅପ୍ସରା-ମାନଙ୍କ ସହିତ ବିମାନରେ ବସି ବୁଲିବା ଇତ୍ୟାଦି ମିଳିବ । ଇନ୍ଦ୍ର ହବି ତ୍ୟାଗ କରି ସ୍ୱର୍ଗ ଦେବା କର୍ତ୍ତବ୍ୟ ହୋଇଯାଏ । ନଚେତ୍ ଯଜ୍ଞ କରିବା ବ୍ୟର୍ଥ ଅଟେ, ତେବେ ନିଷ୍କାମ ରହିଲା କେଉଁଠି ?''

ଏହା ଶୁଣି ଶ୍ରୀ ଶୁକ କହିଲେ—"ରାଜନ ! ସବୁ କାର୍ଯ୍ୟରେ ଭାବାନୁସାରେ ଫଳଲାଭ ହୁଏ । ଯାହାର ଯେପରି ଭାବନା ତାହାକୁ ସେହିପରି ଭାବରେ ଫଳ ମିଳେ । ଆପଣ ଯେତେ ବଡ଼ବଡ଼ ଯଜ୍ଞ କରନ୍ତୁ, ପଛକେ ଦାନ ଦିଅନ୍ତୁ, ଧର୍ମ କରନ୍ତୁ, ଆପଣଙ୍କର ଭାବନା ଶୁଦ୍ଧ ନହେଲେ ସମସ୍ତ ବ୍ୟର୍ଥ ଅଟେ । ମାଆ, ଭଉଣୀ, ପୁତ୍ରୀ, ସ୍ତ୍ରୀର ଶରୀର ଏକ ପ୍ରକାର ଅଟେ । ସମସ୍ତଙ୍କର ଶରୀର ଏକ ମାତ୍ର ଭାବନା ଅନୁସାରେ ଆଲିଙ୍ଗନ କରିବା ଦ୍ୱାରା ଫଳ ଭିନ୍ନ ଭିନ୍ନ ହୁଏ । ମା କୁ ଆଲିଙ୍ଗନ କରିବା ବେଳେ ଭାବନା ଭିନ୍ନ, ଭଉଣୀ ଓ ଝିଅକୁ ଅନ୍ୟ ଭାବନାରେ ଏବଂ ସ୍ତ୍ରୀ କୁ ଅନ୍ୟ ଭାବରେ । କ୍ରିୟା ଗୋଟିଏ, ମାତ୍ର ଭାବନାର ବିଭିନ୍ନତା ହେତୁ ଫଳ ଲାଭରେ ପାର୍ଥକ୍ୟ ଦେଖାଯାଏ । ଏହି ପ୍ରକାର ଭାବରେ ଭରତ ଯଜ୍ଞ କରୁଥିଲେ ସେହିଭଳି ବେଦ ମନ୍ତ୍ରରେ ଏବଂ ବୈଦିକ କ୍ରିୟାରେ ମାତ୍ର ନିଜର ଭାବନା ପୃଥକ ରଖିଥିଲେ ଯେପରି ଆର୍ଯ୍ୟମାନେ ମନ୍ତ୍ର ପଢ଼ୁଥିଲେ । 'ଇନ୍ଦ୍ରାୟ ସ୍ୱାହା, ସୂର୍ଯ୍ୟାୟ ସ୍ୱାହା' । ଏହା ଉପରେ ଭରତ ଭାବନା କରୁଥିଲେ, ଇନ୍ଦ୍ର କିଏ ସେ, ଯାହାଙ୍କ ଉପରେ ସମସ୍ତ ସ୍ୱର୍ଗୀୟ ଶକ୍ତିର ଉପଭୋଗ ଏବଂ ରକ୍ଷା କରିବାର ଶକ୍ତି ନିହିତ, ସେ ଐଶ୍ୱର୍ଯ୍ୟ ସମ୍ପନ୍ନ ଅଟନ୍ତି, ସେତେବେଳେ ସେ ଭାବୁଥିଲେ ଇନ୍ଦ୍ରଙ୍କ ଦେହରେ ସେ ଶକ୍ତି ଆସିଲା କେଉଁଠୁ । ତାଙ୍କ ଦେହରେ ଐଶ୍ୱର୍ଯ୍ୟର ଗୋଟିଏ ଅଂଶ ତ ରହିଛି । ଐଶ୍ୱର୍ଯ୍ୟର ସ୍ରୋତ ହେଉଛନ୍ତି ପରମଦେବ, ପରଂବ୍ରହ୍ମ, ଯଜ୍ଞପୁରୁଷ ଭଗବାନ ବାସୁଦେବ । ଅତଏବ ଇନ୍ଦ୍ରସ୍ୱରୂପ ଯେଉଁ ଭଗବାନ ଅଟନ୍ତି ତାଙ୍କପାଇଁ ଏହି 'ହବି' ଦିଆଯାଉଛି । ଏହି ଭାବନାରେ ବଜ୍ର ହାତରେ ନେଇ ପୁରନ୍ଦରଙ୍କ ପାଖରେ ହବି ପହଞ୍ଚିବା ପରେ ତାହା ଶ୍ରୀ ହରି ହିଁ ପାଇଥାନ୍ତି । ଯେପରି ଆମେ କୌଣସି ପତ୍ରରେ ଠିକଣା ଲେଖିବାବେଳେ ଏ ଚିଠି ଅମୁକ ଲୋକ ପାଖରେ ପହଞ୍ଚିବ ବୋଲି ଲେଖାଯାଏ । ଏହିଭଳି ଲେଖିବା ପୂର୍ବରୁ ତାରି ପାଖରେ ହିଁ ପହଞ୍ଚେ, ଯାହାଦ୍ୱାରା ପ୍ରେରିତ ହୋଇଅଛି, ମାତ୍ର ସେ ସେହି ଚିଠିକୁ ପାଇ ତାର ବୋଲି ବୁଝେନାହିଁ, ନିଜ ପାଖରେ ରଖେନାହିଁ । ତାକୁ ନେଇ ସେହି ଚିଠିକୁ ଦେଇଦିଏ, ଯାହାପାଇଁ ତାହା ପ୍ରେରିତ ହୋଇଅଛି । ଏହିପରି ଭାବରେ

ଭଗବତ୍ ଭାବନାକୁ ହୃଦୟରେ ରଖି ଯେଉଁ ଦେବତା ନାମ ନେଇ ହବ ଦେଲେ ମଧ୍ୟ ପହଞ୍ଚିବ ଭଗବାନଙ୍କ ପାଖରେ । ଅନ୍ୟ ଦେବତାମାନଙ୍କ କଥା ମଧ୍ୟ ସେହିଭଳି ବୁଝ । "ସୂର୍ଯ୍ୟାୟ ସ୍ୱାହା" । ସୂର୍ଯ୍ୟଙ୍କର କାର୍ଯ୍ୟ ହେଉଛି ପ୍ରକାଶ ଦେବା । ସୂର୍ଯ୍ୟଙ୍କୁ ପ୍ରକାଶ କେଉଁଠାରୁ ମିଳେ ? ଭଗବାନଙ୍କଠାରୁ । ତେଣୁ ସୂର୍ଯ୍ୟଙ୍କୁ ବିରାଟ ଭଗବାନଙ୍କର ନେତ୍ରବୋଲି କୁହାଯାଇଛି । ଯେତେବେଳେ ସୂର୍ଯ୍ୟଙ୍କୁ ଧ୍ୟାନ କରି ମନ୍ତ୍ର ପଢ଼ି ହବ ଦେବାକୁ କୁହାଯାଏ, ଏହି ଧ୍ୟାନ କରାଯାଏ ଯେ ଭଗବାନଙ୍କ ନେତ୍ରପରି ଯେଉଁ ସୂର୍ଯ୍ୟ ଅଟନ୍ତି, ତାଙ୍କୁ ଏହି ଆହୂତ ମିଳୁ । ଏହି ଭାବନାରେ କରାଯାଉଥିବା କର୍ମ ଅନୈତିକ କର୍ମ ଅଟେ । କେତେକ କର୍ମ ତାହାକୁ କହନ୍ତି ଯେ ଅଳ୍ପ ଦେଇ ବହୁତ ଫଳର ଆଶାରେ କରାଯାଏ । ଏହାଦ୍ୱାରା ମୋର ସମସ୍ତ କାମନା ଜନ୍ମ-ଜନ୍ମାନ୍ତରରେ ସଫଳ ହେଉ । ସଂସାରେ ଫଳଲାଭ ଇଚ୍ଛାରେ ଏହି ପ୍ରକାର କରା-ଯାଇଥିବା କର୍ମକୁ ସକାମ କର୍ମ କୁହାଯାଏ । ଏହି କର୍ମରେ ସଂସାର ବନ୍ଧନ ଦୃଢ଼ ହୁଏ । ନିଷ୍କାମ କର୍ମରେ ଅନ୍ତଃକରଣ ଶୁଦ୍ଧି ହୁଏ । ଶୁଦ୍ଧ ହୋଇଥିବା ଅନ୍ତଃ-କରଣରେ ହଳଦିଆ ବସ୍ତ୍ରଧାରୀ, ବନରେ ବିହାର କରୁଥିବା, ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥିବା ମୂର୍ତ୍ତି, ଶ୍ରୀବତ୍ସ ଚିହ୍ନର ମଝିରେ କୌସ୍ତୁଭମଣିକୁ ଚମକାଉ ଥିବା, ହୃଦୟର ଅନ୍ଧକାରକୁ ଦୂର କରି ପ୍ରକାଶିତ ହୁଅନ୍ତି । ଯେଉଁଠାରେ ସର୍ବବ୍ୟାପକ ପ୍ରଭୁ ପୁରାଣପୁରୁଷ ହୃଦୟରେ ଆବିର୍ଭୂତ ହୁଏ, ସେଠାରେ କହିବାକୁ କିଛି ରହେ ନାହିଁ । ଦିନକୁ ଦିନ ତାଙ୍କ ଚରଣାରବିନ୍ଦରେ ଭକ୍ତି ବଢ଼ିବାକୁ ଲାଗେ । ବଢ଼ୁଥିବା ଭକ୍ତି ସମସ୍ତ ଅଶୁଭମାନଙ୍କୁ, କର୍ମ ବନ୍ଧନକୁ କାଟି ଭକ୍ତକୁ ଭଗବାନଙ୍କ ନିକଟରେ ପହଞ୍ଚାଇ ଦିଏ । ହେ ରାଜନ ! ଏହି ଭାବନାରେ ଭରତ ଯାଗଯଜ୍ଞ ଇତ୍ୟାଦି କରୁଥିଲେ ।

ଏହିପରି ଭାବରେ ଭରତ ନିଷ୍କାମ କର୍ମ କରି ଦଶହଜାର ବର୍ଷ ସମସ୍ତ ଏହି ପୃଥିବୀକୁ ପାଳନ କରିବା ପରେ ବୁଝିଲେ ଯେ ରାଜ୍ୟ ଭୋଗ କରିବା ନିମିତ୍ତଥିବା ପାରବ୍ଧ କାର୍ଯ୍ୟ ବର୍ତ୍ତମାନ ଶେଷ । ତାଙ୍କର ରାଜ୍ୟ-ଭୋଗରେ ଆଗରୁ ତ ଆସକ୍ତି ନ ଥିଲା । ପାରବ୍ଧ କର୍ମ କେବଳ ଭୋଗ ଦ୍ୱାରା କ୍ଷୟ ହୁଏ, ତେଣୁ ସେ ରାଜ୍ୟ ଭୋଗକରିବାକୁ ଲାଗିଥିଲେ । ଯେତେବେଳେ ସେ ପ୍ରାରବ୍ଧ ଭୋଗରୁ ମୁକ୍ତ ହୋଇଗଲେ, ସେ ଗୃହ ତ୍ୟାଗକରି ବନକୁ ଯାଇଁ ତପସ୍ୟା କରିବାକୁ ସ୍ଥିର କଲେ ।

## ଛପ୍ପୟ

"ଅଗ୍ନିହୋତ୍ର ନିତ କରେଂ ଦର୍ଶ ଅରୁ ପୂର୍ଣ୍ଣମାସ ମଖ ।
ଚାତୁର୍ମାସ୍ୟ ଅନେକ କରେ ସମ ସମୁଝି ଦୁଃଖ ସୁଖ ।।
ସୋମଯଜ୍ଞ ପଶୁଯଜ୍ଞ ପ୍ରକୃତି ଅରୁ ବିକୃତି ଭେଦ ତେଂ ।
କରେ କ୍ରିୟା କେ ସହିତ ଶ୍ରାଦ୍ଧ ଅରୁ ବିଧି ବେଦତେଂ ।।
ସବ୍ ଅପରନ କୁଁ ଅଂଶ ଲଖି, ଅଂଶୀ ହରିକୁଁ ଜାନକେ ।
ଦେହିଁ ଯଜ୍ଞ କୋ ଭାଗ ନୃପ, ପ୍ରଭୁ ସ୍ୱରୂପ ସବ ମାନକେଂ ।।"



# ଭରତଙ୍କର ପୁଲହାଶ୍ରମରେ ତପସ୍ୟାରତ

"ପରୀରଜଃ ସବିତୁର୍ଜାତବେଦୋ
ଦେବସ୍ୟ ଭର୍ଗୋ ମନସେଦଂ ଜଜାନ ।
ସୁରେତସାଦଃ ପୁନରାବିଶ୍ୟ ଚଷ୍ଟେ
ହଂସଂ ଗୃଧ୍ରାଣଂ ନୃଷଦ୍ରିଙ୍ଗିରାମିମ ॥"
( ଭାଗବତ ୫-ସ୍କନ୍ଧ ୭-ଅଧ୍ୟାୟ ୧୪-ଶ୍ଲୋକ )

## ଛପ୍ପୟ

"ଭରତ ଭୂମିପତି ହରିତ ପୁରୀ ସବ କରେ ଯଜ୍ଞ କରି
ଭୋଗନ ତେଂ କର ପୁଣ୍ୟ ନାଶ ଆରାଧେ ଶ୍ରୀହରି ।
ରାଜ ଭୋଗ କୋ ଅନ୍ତ କରଶି ନୃପବନହି ସିଧାୟେ
ପାବନ ହରିହର କ୍ଷେତ୍ର, ପୁଲହ ଆଶ୍ରମ ମହଁ ଆୟେ ।
ମିଲେଂ ଗଣ୍ଡକୀ ଗଂଗ ଜହ, ତହଁ ଅରାଧେ ଈଶ କୁଁ
ତୁଲସୀଦଳ ଜଳ, ତେ ପୂଜେଂ ଜଗଦୀଶ କୁଁ ।"

ଜୀବର ଏକମାତ୍ର ପ୍ରଧାନ କର୍ତ୍ତବ୍ୟ ହେଉଛି କୃଷ୍ଣଙ୍କର କାର୍ଯ୍ୟ । କୃଷ୍ଣଙ୍କ କାର୍ଯ୍ୟ ବ୍ୟତୀତ ଅନ୍ୟ ଯାହା କିଛି ପୁରୁଷ କରେ, ସେ ନିଜ ହାତରେ ନିଜର ବନ୍ଧନ ପ୍ରସ୍ତୁତ କରେ । ସିଦ୍ଧାନ୍ତ କହୁଛି ଯେ ଠିକ ଠିକ ଭାବରେ କୃଷ୍ଣ କୁହ । କୃଷ୍ଣ ନାମ ଠାରୁ ଭିନ୍ନ ଅନ୍ୟ କୌଣସି କଥା କୁହ ନାହିଁ । କୃଷ୍ଣ ନୈବେଦ୍ୟ ବ୍ୟତୀତ ଅନ୍ୟ କୌଣସି ଅମୃତ ହେଲେ ମଧ୍ୟ ଖାଅ ନାହିଁ । କୃଷ୍ଣ କଥାକୁ ଛାଡି ଅନ୍ୟ କୌଣସି କଥା ଶୁଣ ନାହିଁ । ଭଗବନ୍ତ ପ୍ରତିମା ଏବଂ ଭାଗବତଙ୍କ ଛଡ଼ା ଅନ୍ୟ କିଛି ଦେଖ ନାହିଁ । କୃଷ୍ଣ ନିର୍ମାଲ୍ୟ ବ୍ୟତୀତ ଅନ୍ୟ କୌଣସି ପଦାର୍ଥକୁ ଶୁଙ୍ଘ ନାହିଁ ବା

ହୁର୍ଣ୍ଣ କରନାହିଁ । ସାରାଂଶ ଏହା ଯେ ଯାହାକିଛି କର, ଯାହା ଖାଅ, ଯାହା ପିଅ, ଯେଉଁ ଯଜ୍ଞ ଇତ୍ୟାଦି ଶୁଭକର୍ମ କର, ଯାହା ସୁବର୍ଣ୍ଣ, ଗାଈ, ଅନ୍ନ, ବସ୍ତ୍ର, ଧନ, ଧାନ, ଦାନକର ଶ୍ରୀକୃଷ୍ଣଙ୍କ ପ୍ରୀତି ନିମନ୍ତେ ହିଁ କର । ପ୍ରାରବ୍ଧ ହେତୁ ସଂସାରରେ ରହିକରି ତଦଣତା ସହି ସଂସାର ଭୋଗିବାକୁ ପଡିଲେ ମଧ୍ୟ ଦୀନ ଭାବରେ ତାଙ୍କୁ ପ୍ରାର୍ଥନା କର, ପ୍ରଭୋ ! ମୋତେ ଏହି କର୍ମରୁ ମୁକ୍ତ କରନ୍ତୁ, ମୋତେ ଦାସ ଭାବରେ ଗ୍ରହଣ କରନ୍ତୁ । ଦୀନହୀନକୁ ନିଜ ପାଦପଦ୍ମର କିଙ୍କର କରନ୍ତୁ । ଏହି ସଂସାରର ଭୋଗ ଯେତେ ଶୀଘ୍ର ଶରଧାରେ, ଯେତେ ଅଂଶରେ ତ୍ୟାଗ ହୋଇପାରେ ସବୁବେଳେ ଏହାଠାରୁ ମୁକ୍ତ ହେବାକୁ ଚେଷ୍ଟା କର, ଏଥିରେ ଜୀବର କଲ୍ୟାଣ ଅଛି, ଏହା ହିଁ ମୁକ୍ତିର ସରଳ ସୁଗମ ମାର୍ଗ, ଏହା ହିଁ ପ୍ରଭୁଙ୍କୁ ପାଇବାର ଏକମାତ୍ର ପୁଣ୍ୟ ପଥ ଅଟେ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଜ୍ଞାନଦୃଷ୍ଟିରେ ଯେତେବେଳେ ଭରତ ଏହା ବିଚାର କଲେ ଯେ ମୋର ରାଜ୍ୟ ଭୋଗର ପ୍ରାରବ୍ଧ ସମାପ୍ତ ହୋଇ ଆସିଲାଣି, "ବର୍ତ୍ତମାନ ମୋତେ ତପ୍ୟାରାଜ୍ୟ ପାଇଁ ପ୍ରଯତ୍ନ କରିବା ଆବଶ୍ୟକ । ଏହା ଭାବି ସେ ନିଜର ପାଞ୍ଚ ପୁତ୍ରମାନଙ୍କୁ ଡକାଇଲେ । ଧର୍ମର ମର୍ମ ବୁଝାଇଲେ, ନିଜେ ବଣକୁ ଯାଉଥିବା କଥା କହିଲେ । ଏହିପରି ଭାବରେ ପୁତ୍ରମାନଙ୍କୁ ବୁଝାଇ ସମସ୍ତ କଥା କହି ସେ ସମସ୍ତ ରାଜ୍ୟକୁ ତୃଣ ସଦୃଶ୍ୟ ତ୍ୟାଗକରି ଆଜ୍ଞାକାରୀ, ସୁଶୀଳ ସୁନ୍ଦର, ସୁକୁମାର, ମୃଦୁଭାଷୀ, ବିନୟଶୀଳ ପୁତ୍ରମାନଙ୍କ ଠାରୁ ମୋହ ତ୍ୟାଗକରି ପତ୍ନୀଙ୍କୁ ପୁତ୍ରମାନଙ୍କ ଦାୟିତ୍ୱ ଦେଇ ଘରୁ ବାହାରି ଗଲେ ।"

ମହାରାଜ ଭରତ ଉତ୍ତର ଦିଗକୁ ନଯାଇ ପୂର୍ବ ଦିଗକୁ ଯାତ୍ରା କଲେ । ଯେଉଁଠାରେ ଭଗବତୀ ଗଣ୍ଡକୀଙ୍କ ଜଳ ଶ୍ରେଷ୍ଠ ନଦୀ ଭଗବତୀ ଭାଗିରଥୀଙ୍କ ସହ ମିଳିତ ହୋଇଛନ୍ତି, ସେ ସ୍ଥାନରେ ପହଞ୍ଚିଲା ମାତ୍ରେ ତାଙ୍କର ମନ ଆପେ ଆପେ ଢଳି ଗଲା । ତଟନଦୀରେ ସେ ଭଗବାନ ଶାଳଗ୍ରାମଙ୍କର ଅନେକ ପ୍ରକାରର ଚକ୍ରଯୁକ୍ତ ପ୍ରସ୍ତରଙ୍କୁ ଦେଖିଲେ । ଶାଳଗ୍ରାମ ଶିଳା ଗୁଡିକର ଅନେକ ଭେଦ । ବହୁତ ଗୁଡ଼ିଏ ଶିଳା ଚକ୍ର ଆକାରର ଯାହାର ଦୁଇ ପାର୍ଶ୍ୱରେ ନାଭି ଚକ୍ର ବିଦ୍ୟମାନ । କେହି କେହି ଗୋଲ ଗୋଲ ଯାହାକୁ ହିରଣ୍ୟଗର୍ଭ କୁହାଯାଏ । ତାହାସବୁ ଗଣ୍ଡକୀ ନଦୀରୁ ଉପରୁ ପ୍ରବାହିତ ହୋଇ ଆସୁଥିଲେ । ଭରତ ଦେଖିଲେ ସେଠାରେ ଜଣେ ଋଷିଙ୍କର ଭଙ୍ଗାରୁଜା ଏକ ଆଶ୍ରମ ରହିଛି । ପଚାରିବାରୁ ଜାଣିଲେ ସେଠାରେ କେବେ ବ୍ରହ୍ମାପୁତ୍ର ପୁଲହ ତପସ୍ୟା କରୁଥିଲେ, ଏଥିପାଇଁ ତାହା ଏ ପର୍ଯ୍ୟନ୍ତ ପୁଲହାଶ୍ରମ ନାମରେ ପ୍ରସିଦ୍ଧ । ଭରତଙ୍କର ହୃଦୟ ସେହି ପବିତ୍ର ହରିହର କ୍ଷେତ୍ରକୁ ଆକୃଷ୍ଟ ହେଲା । ସେ ପୁଲହାଶ୍ରମର ଉପବନ ନିକଟରେ ଗୋଟିଏ ନିର୍ଜ୍ଜନ

ସ୍ଥାନ ଦେଖି ସେଠାରେ ରହିବାକୁ ଲାଗିଲେ । ସେ ଗୋଟିଏ ପର୍ଣ୍ଣକୁଡ଼ିଆ ପ୍ରସ୍ତୁତ କରି ଦେଲେ । ଭଗବାନ ଶାଳଗ୍ରାମଙ୍କର ସୁନ୍ଦର ସୁନ୍ଦର ମୂର୍ତ୍ତି ଆଣି ସେ ପୂଜା କଲେ ପୀଠ ଉପରେ ସେ ଗୁଡ଼ିକୁ ସ୍ଥାପନ କରି ଶ୍ରଦ୍ଧାଭକ୍ତି ସହ ତାଙ୍କର ସେବା କଲେ । ଯଦିଓ ସେ ସେ ପର୍ଯ୍ୟନ୍ତ ଥିଲେ ସମ୍ରାଟ । ଅନ୍ତଃପୁରରେ ସହସ୍ର ସହସ୍ର ଦାସଦାସୀଙ୍କ ବେଷ୍ଟନୀ ଭିତରେ ରହୁଥିଲେ, ନିଜ ହାତରେ କାମ କରିବାର ଅଭ୍ୟାସ ତାଙ୍କର ନଥିଲା ମାତ୍ର ଭଗବାନଙ୍କର ସେବା ନିମିତ୍ତ ସେ ନିଜେ ସମସ୍ତ ପଦାର୍ଥକୁ ଏକତ୍ରିତ କରୁଥିଲେ । ବଣକୁ ଯାଇ ସେ ସେଠାରୁ ସୁନ୍ଦର ସୁନ୍ଦର ଫୁଲ, କୋମଳ କୋମଳ ତୁଳସୀ ଭଗବାନଙ୍କ ପୂଜା ପାଇଁ ଆଣୁଥିଲେ । ନୈବେଦ୍ୟ ପାଇଁ ବୃକ୍ଷର ପାଚିଲା ଫଳ ଆଣୁଥିଲେ, କନ୍ଦମୂଳ ଖୋଳିକରି ଆଣୁଥିଲେ ନିଜ ହାତରେ ଗଣ୍ଡକୀ ନଦୀରୁ ଜଳ ଆଣୁଥିଲେ ସାରାଂଶ ହେଲା ଯେ ସେ ନିଜେ ସମସ୍ତ କାର୍ଯ୍ୟ କରୁଥିଲେ । ପ୍ରାତଃକାଳରୁ ଉଠି ସେ ବିଷ୍ଣୁ ନାମ ସ୍ମରଣ କରୁଥିଲେ, ଶୌଚ ଏବଂ ସ୍ନାନାଦି କାର୍ଯ୍ୟ ସମ୍ପନ୍ନ କରି ସନ୍ଧ୍ୟାବନ୍ଦନା କରୁଥିଲେ । ତତ୍ପରେ ସେ ଭଗବତ୍ ପରିଚର୍ଯ୍ୟାରେ ଲାଗି ଯାଉଥିଲେ, ଷୋଡ଼ଶ ଉପଚାର ନେଇ ପୂଜା କରୁଥିଲେ । କନ୍ଦମୂଳ, ଫଳ, ଫୁଲ, ଜଳ ଏବଂ ତୁଳସୀ ପତ୍ର ଇତ୍ୟାଦି ସମର୍ପିତ କରି ସଦାସର୍ବଦା ତାଙ୍କର ଧ୍ୟାନରେ ମଗ୍ନ ରହୁଥିଲେ । ଏହି ପ୍ରକାର ଭାବରେ ପ୍ରେମରେ ପୂଜାକରି ସେ ନିଜର ଅନ୍ତଃକରଣକୁ ଅଭିଳାଷାମାନଙ୍କରୁ ସମ୍ପୂର୍ଣ୍ଣ ମୁକ୍ତ କରି ଶାନ୍ତ ହୋଇଗଲେ । ଯେଉଁ ସମୟରେ ପ୍ରେମରେ ମଗ୍ନରହି ଭଗବାନଙ୍କର ସେବା ପୂଜା କରୁଥିଲେ ସେ ସମୟରେ ତାଙ୍କର ହୃଦୟ ଆନନ୍ଦରେ ପ୍ଲାବିତ ହୋଇ ଯାଉଥିଲା, ତାଙ୍କର ପ୍ରେମ ସମାଧି ହୋଇ ଯାଉଥିଲା । ସେ ପ୍ରତ୍ୟେକଦିନ ନିୟମ ଅନୁଯାୟୀ ଅବ୍ୟଗ୍ର ଭାବରେ ଶ୍ରଦ୍ଧାସହ ଈଶ୍ୱରଙ୍କ ପୂଜା କରୁଥିଲେ । ପ୍ରତ୍ୟେକ ଦିନ ଅନୁରାଗ ବୃଦ୍ଧି ପାଉଥିବା ହେତୁ ତାଙ୍କ ହୃଦୟର କଠୋର ଭାବ ନଷ୍ଟ ହୋଇ ଯାଇଥିଲା । ଅନ୍ତଃକରଣ ମହମଠାରୁ ଅଧିକ ଦ୍ରବୀଭୂତ ଏବଂ ଲହୁଣୀ ଠାରୁ ଅଧିକ କୋମଳ ହୋଇଥିଲା । ପ୍ରଭୁ ପ୍ରେମରେ ଯାହାଙ୍କର ହୃଦୟ ଅତ୍ୟନ୍ତ ଦ୍ରବୀଭୂତ ହୁଏ, ସେ ଭାବୁକ ଭକ୍ତ ଲୌକିକ ବ୍ୟବହାରର ଅଯୋଗ୍ୟ ହୋଇ ପଡ଼ନ୍ତି । ଯେଉଁଠାରେ ଭଗବାନଙ୍କର ଚର୍ଚ୍ଚା ପଡ଼େ, ସେଠାରେ ହୃଦୟରେ ଆନନ୍ଦର ଜୁଆର ଆସେ, ସମ୍ପୂର୍ଣ୍ଣ ଦେହରେ ରୋମାଞ୍ଚ ଜାତ ହୁଏ, ଆଖିରୁ ଝର ଝର ଲୋତକ ଝରିବାକୁ ଲାଗେ । ଏହିଭଳି ଅବସ୍ଥା ବଡ଼ ଭାଗ୍ୟ ହେତୁ ଏବଂ ଅନେକ ଜନ୍ମର ପୁଣ୍ୟଫଳ ହେତୁ ମିଳେ । ଭରତଙ୍କର ଏହିପରି ଦଶା ହୋଇଗଲା । କେବେ କେବେ ସେ ପ୍ରେମରେ ମଗ୍ନ ହୋଇ, ଏପରି ଅବସ୍ଥା ହୋଇ ଯାଉଥିଲେ, ତାଙ୍କର ସଂସାର ପ୍ରତି ଆଦୌ ଧ୍ୟାନ ରହୁ ନଥିଲା । କଣ୍ଠ ଗଦ୍ ଗଦ୍ ହୋଇ ଯାଉଥିଲା । ଚକ୍ଷୁରେ ଲୋତକ ପୂରି ଯାଉଥିବା ହେତୁ ଦୃଷ୍ଟି ବନ୍ଦ ହୋଇ ଯାଉଥିଲା, ଆଗରେ ଛିଡ଼ା ହୋଇଥିବା ପୁରୁଷକୁ ମଧ୍ୟ ଦେଖି ପାରୁ ନଥିଲେ ।

କିଛି ସମୟ ପରେ, ତାଙ୍କର ଅବସ୍ଥା ଆହୁରି ଉଚ୍ଚ ହେବାକୁ ଲାଗିଲା । ସେ ପୂଜା କରୁ କରୁ ନିଜକୁ ଭୁଲି ଯାଉଥିଲେ । ଅର୍ଘ୍ୟ ଦେଉଛନ୍ତି ଓ ଅର୍ଘ୍ୟ ଦେବାର ମାନକୁ ହାତରେ ନେଇ ବସିଛନ୍ତି, ଫୁଲ ଚଢ଼ାଇବା ପରବର୍ତ୍ତିରେ ପାଦ୍ୟ ଅର୍ଘ୍ୟ ଓ ଆଚମନ ଦିଅନ୍ତି । ଧ୍ୟାନରେ ଏପରି ନିମଗ୍ନ ହୋଇଯାନ୍ତି ପୂଜାର କ୍ରମକୁ ସମ୍ପୂର୍ଣ୍ଣ ରୂପେ ଭୁଲିଯାନ୍ତି ।”

ଏହା ଶୁଣି ରାଜା ପରୀକ୍ଷିତ ପଚାରିଲେ—“ପ୍ରଭୋ ! ବହୁତ କଥାକୁ ସ୍ମୃତିବର୍ଜିତ ଓ ପୁରୁଷ ମଧ୍ୟ ଭୁଲିଯାନ୍ତି, ସେମାନେ କ'ଣ ମହାତ୍ମା ?”

ଏହା ଶୁଣି ଶ୍ରୀ ଶୁକ କହୁଛନ୍ତି, ନା ମହାରାଜ ! ସେ ତମଗୁଣ ଯୋଗୁଁ ଅଧିକ କିଛି ମନେ ରଖି ପାରନ୍ତି ନାହିଁ । ଘୋର ତମଗୁଣ ଏବଂ ଘୋର ସତ୍ତ୍ୱଗୁଣର ସ୍ଥିତି ଦୂରରୁ ଦେଖିଲେ ପ୍ରାୟ ଏକାପରି ଲାଗେ । ତମୋଗୁଣ ଆଳସ୍ୟ ହେତୁ ନିଶ୍ଚେଷ୍ଟ ହୋଇ ପଡ଼ିରହେ, ସତ୍ତ୍ୱଗୁଣ ମଧ୍ୟ ନିଶ୍ଚେଷ୍ଟ ହୋଇଯାଏ । ଗୋଟିଏ ସ୍ଥିତି ଅଜ୍ଞାନ ଜନ୍ମ ହେବାବେଳେ ଅନ୍ୟଟି ଜ୍ଞାନଜନ୍ମ । ଜଡ଼ମତି ପୁରୁଷ ବୁଦ୍ଧିର ନ୍ୟୁନତା ହେତୁ ତମର ପ୍ରଭାବ ହେତୁ କଥାକୁ ଭୁଲିଯାଏ; ମାତ୍ର ଭରତଙ୍କ ପରି ଈଶ୍ୱରଙ୍କ ଭକ୍ତ ନିଜର ପରମ ପ୍ରେମାସ୍ପଦ ଶ୍ରୀ ଶ୍ୟାମସୁନ୍ଦରଙ୍କର ଅରୁଣ ଚରଣ କମଳକୁ ନିରନ୍ତର ଧ୍ୟାନରେ ପାଇଥିବା, ଭକ୍ତି ଯୋଗଦ୍ୱାରା ପରମ ଆନନ୍ଦରେ ଦ୍ରବୀଭୂତ ହୃଦୟରୂପକ ଅଗାଧ ସରୋବରରେ ବୁଡ଼ି ନିମଗ୍ନ ରହିଗଲେ ବାହ୍ୟକ୍ରିୟା କଥା କାହାକୁ କହିବା, ନିଜକୁ ମଧ୍ୟ ଭୁଲିଯାନ୍ତି, ସେ ଆନନ୍ଦ ଅନୁଭବ କରି କରି ସେହିପରି ହୋଇଯାନ୍ତି । ଏଇଥିପାଇଁ ଭରତ ବାହ୍ୟ ପୂଜାକୁ ଭୁଲି କରି ପୂଜ୍ୟଙ୍କ ପାଦପଦ୍ମକୁ ଧ୍ୟାନ ରୂପକ ଆଚରଣରେ ମଗ୍ନ ହୋଇଗଲେ ।

ସେ ବଣରେ ରହିକରି ମୁନିବ୍ରତ ପାଳନ କରୁଥିଲେ । ରାଜକୀୟ ବସ୍ତ୍ରଭୂଷଣ ସେ ପରିତ୍ୟାଗ କରି ଦେଇଥିଲେ । ସେ କେବଳ ବଳକଳ ବସ୍ତ୍ର ପିନ୍ଧି କଳା ହରିଣର ମୃଗଚର୍ମ ଓଢ଼ାଇ ଦେଉଥିଲେ । ବଣରେ ମନକୁ ମନ ଜନ୍ମିଥିବା ଫଳକୁ ଆଣି ଭଗବାନଙ୍କୁ ଭୋଗ ଲଗାଇ ସେହି ନୈବେଦ୍ୟକୁ ଖାଉଥିଲେ । ତାଙ୍କର କଳାକଳା ଭ୍ରମର ସଦୃଶ୍ୟ ବାଳରେ ତେଲ ଇତ୍ୟାଦି ନ ଲଗାଇବା ଫଳରେ ତାହା ଚକଟା ହୋଇ ଜଟାରେ ପରିଣତ ହୋଇ ଯାଇଥିଲା । ତାଙ୍କର ତେଜସ୍ୱୀ ମୁଖମଣ୍ଡଳ ଉପରେ ଜଟାଗୁଡ଼ିକ ବନ୍ଧ ହୋଇ ଲଟକିଥିବା ହେତୁ ଏପରି ଜଣା ଯାଉଥିଲା ଯେପରି ଚନ୍ଦ୍ରମାଙ୍କ ଉପରେ ଅମୃତ ପାନ କରିବାକୁ କଳାସାପ ଚଢ଼ିଅଛି । ସୂର୍ଯ୍ୟ ମଣ୍ଡଳ ଉଦୟ ହେବା ମାତେ ସୂର୍ଯ୍ୟ ସମ୍ବନ୍ଧିତ ଶ୍ଳୋକମାନଙ୍କୁ ଆବୃତ୍ତି କରି ହିରଣ୍ମୟ ପୁରୁଷୋତ୍ତମ ଭଗବାନ ସୂର୍ଯ୍ୟନାରାୟଣଙ୍କ କାମନାରେ ଠିଆ ହୋଇ

ତାଙ୍କର ପ୍ରାର୍ଥନା କରି ତାଙ୍କର ଶରଣରେ ପଶି ତାଙ୍କର ଗୁଣଗାନ କରନ୍ତି, ତାଙ୍କର ମହିମା କହନ୍ତି । ଏହିପରି ଭାବରେ ତେଜ ସ୍ୱରୂପ ନାରାୟଣଙ୍କୁ ଧ୍ୟାନ କରି କରି ସେ ବନବାସରେ ବହୁଦିନ ଅତିବାହିତ କଲେ ।

## ଛପ୍‌ପୟ

"ପୂଜା ତେଂ ଅନୁରାଗ ହୃଦୟମହିଁ ବଢ଼ୟୋ ପ୍ରବଲ ଅତି ।
ପ୍ରିୟ ଡମେକ ପାଦପଦ୍ମ ମାଁହିଁ ଭିରହୀ ଉନକୀ ମତି ।।
ପୁରୟୋ ପୟ ଆନନ୍ଦ ହୃଦୟ ସରବୁଦ୍ଧି ହୁବାଇଁ ।
ଭୟେ ପ୍ରେମ ମହିଁ ମଗ୍ନ ବାହ୍ୟ ପୂଜା ବିସରାଇଁ ।।
କୁଟିଲ ଅଲକ ଲଟ ବନିଗୟେ, ଜଟାଜୂଟ କୋ ମୁକୁଟ ଶିର ।
ଭକ୍ତରାଜ ବନି ଭ୍ରାଜହୀ, କୟୋ କଷ୍ଟ ମହିଁ ଚିତ୍ତ ଥିର ।।"



# ଭରତ ଏବଂ ମୃଗଶାବକ

"ନିତ୍ୟ ଦଦାତି କାମସ୍ୟଚ୍ଛିଦ୍ରଂ ତମନୁ ଯେଽରୟଃ ।
ଯୋଗିନଃ କୃତମୈତ୍ରସ୍ୟ ପତ୍ୟୁର୍ଜାୟେବ ପୁଂଶ୍ଚଳୀ ॥"

( ଭାଗବତ ୫ମ ସ୍କନ୍ଧ ୬ ଅଧ୍ୟାୟ ୪ ଶ୍ଳୋକ )

## ଛପ୍ପୟ

ଏସେ ପ୍ରଜା ଭରତ ବିତାୟେ ନୃପ ବହୁ ବତ୍ସର ।
କରେଁ ନିୟମ ବ୍ରତ ନିତ୍ୟ ରହେଁ ପ୍ରଜା ମହଁ ତତ୍ପର ॥
ଇକ ଦିନ ମଜ୍ଜନ ହେତୁ ଭରତ ସରିତା ତଟ ଆୟେ ।
ପଢ଼େ ବେଦ କେ ମନ୍ତ୍ର ଗଣ୍ଡକୀ ଜଲ ମହଁ ନ୍ହାୟେ ॥
ସନ୍ଧ୍ୟା କରି ନୃପ ଜପ କରହିଁ, କୂଲଛଟା ମନ ଭାବନୀ ।
ସୁନୀ ସିଂହଧ୍ୱନୀ ମୃଗୀ ଇକ, ପାର ନିହାରୀ ଗର୍ଭିଣୀ ॥

ଏହି ମନରେ ଅନେକ ଜନ୍ମର ସଂସ୍କାର ପୂରି ରହିଛି, ତାହାର ସମ୍ପର୍କ ଜାଲସଦୃଶ । କେଉଁ କାଳରେ କେଉଁ ସମ୍ବନ୍ଧ ଜାଗ୍ରତ ହୋଇ ଉଠିବ, ଏହାର କିଛି ନିଶ୍ଚୟ ନାହିଁ । ଯେଉଁ ଲୋକ ପ୍ରାସାଦ ତ୍ୟାଗ କରିଛି, ସେ ଶେଷରେ କୁଡ଼ିଆ ପାଇଁ ଲଢ଼େଇ କରେ । ଯାହା ଘରେ ପତିବ୍ରତା, ସୁଶୀଳା, ସତ୍‌କୁଳପ୍ରସୂତା ପତିପରାୟଣା ପତ୍ନୀ ଅଛନ୍ତି, ତାଙ୍କୁ ତ୍ୟାଗ କରି ପୁଂଶ୍ଚଳ ବେଶ୍ୟାର ଫାନ୍ଦରେ ପଡ଼ିଯାନ୍ତି, ଏହା ଦୈବ ବିଡ଼ମ୍ବନା ବ୍ୟତୀତ ଅନ୍ୟ କଣ ହୋଇପାରେ ? ଜୀବ ଏଠି ପ୍ରାରବ୍ଧରେ ଅବଶ ହୋଇଯାଏ । ଯେଉଁ ମନ କାଲି ପର୍ଯ୍ୟନ୍ତ ଯେଉଁ ବସ୍ତୁକୁ ହେୟଜ୍ଞାନ କରୁଥିଲା, ତାହା ଆଜି ସଂସ୍କାରର ଅଧୀନ ହୋଇ ସେଥିରେ ପ୍ରିୟତ୍ୱ ଏବଂ ନିଜତ୍ୱର ଭାବନା ଉଦ୍ରେକ କରାଏ । ଏହିହେତୁ ନିଶ୍ଚିତ ଭାବରେ କୁହାଯାଏ

ନାହିଁ ଯେ ଆମ ନିଜ ମନ ନିଜ ଅଧୀନରେ । ବର୍ତ୍ତମାନ ଆମର ସାଧନାର ଆବଶ୍ୟକତା ନାହିଁ । ସିଦ୍ଧାନ୍ତ ଅଟେ ଯେ ଜୀବନ ପର୍ଯ୍ୟନ୍ତ ମନର ବିଶ୍ୱାସ କରିବ ନାହିଁ, ସଦା ସର୍ବଦା ଏହା ଉପରେ ଅଙ୍କୁଶ ଲଗାଇ ରଖିଥିବ ।

ଜୀବନ ଥିବା ପର୍ଯ୍ୟନ୍ତ ମନକୁ ବିଶ୍ୱାସ କରିବ ନାହିଁ, ସଦାସର୍ବଦା ଏହା ଉପରେ ଅଙ୍କୁଶ ରଖିଥିବ । ଯେଉଁଦିନ ଟିକିଏ ତାର ଦଉଡ଼ି ଢିଲା କରିଦେବ, ସେ ନାଚ କୁଦିବାକୁ ଆରମ୍ଭ କରିଦେବ । ଅନିତ୍ୟର ନିତ୍ୟ ଅପ୍ରିୟରେ ପ୍ରିୟ ପରତ୍ୱରେ ନିଜତ୍ୱ ଭାବନା କରିବାକୁ ଲାଗିବ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ମହାରାଜ ଭରତ ବାନପ୍ରସ୍ଥରେ ରହିକରି ନାନା ନିୟମର ପାଳନ କରି, ଭଗବତ୍ ପରିଚର୍ଯ୍ୟାରେ ନିମଗ୍ନ ରହିବା ଦ୍ୱାରା ତାଙ୍କର ବର୍ଦ୍ଧିତ ଉଚ୍ଚାବସ୍ଥା ପ୍ରାପ୍ତ ହେଲା, ତାଙ୍କର ଜଗତ ସମ୍ପୂର୍ଣ୍ଣ ବିସ୍ମୃତ ହୋଇଗଲା ।"

ଗୋଟିଏ ଦିନର ଘଟଣା, ମହାରାଜ ଭରତ ହାତରେ ଜଳପାତ୍ର ନେଇ କାଖରେ କୁଶାସନ, ମୃଗଚର୍ମ ଓ ବକ୍‌କଳ ଧାରଣ କରି ଗଣ୍ଡକୀରେ ପ୍ରାତଃ ସ୍ନାନ କରିବାକୁ ଗଲେ । ସୂର୍ଯ୍ୟୋଦୟ ସମୟ ହୋଇଥିଲା । ବୃକ୍ଷ ଉପରେ ବସି ପକ୍ଷୀମାନେ ଚେଁ ଚାଁ କରୁଥିଲେ । ଭଗବାନ ଭୁବନଭାସ୍କର ନିଜର ସାରଥିଙ୍କୁ ଆଗରେ ପଠାଇ ଦେଇ ନିଜର ଆଗମନର ଘୋଷଣା କରୁଥିଲେ । ଗଣ୍ଡକୀର ଜଳ ମନ୍ଥର ଗତିରେ ଗଙ୍ଗାଙ୍କ ଆଡ଼କୁ ପ୍ରବାହିତ ହେଉଥିଲା । ଏହିପରି ଶାନ୍ତ ମୁହୂର୍ତ୍ତରେ ରାଜର୍ଷି ଭରତ ନଦୀ କୂଳରେ ପହଞ୍ଚିଲେ । ଗଣ୍ଡକୀର ଘାଟ ନିକଟରେ ଆପଣା ବକ୍‌କଳ ରଖିଦେଇ ସେ ସ୍ନାନ ସମ୍ବନ୍ଧୀୟ ମନ୍ତ୍ର ପଢ଼ିବାକୁ ଲାଗିଲେ, ପୁନର୍ବାର ସଂକଳ୍ପ କରି ସେ ମୃତ୍ତିକା ଲେପନ କଲେ ଏବଂ ବିଧିପୂର୍ବକ ସ୍ନାନ କଲେ । ସ୍ନାନ ସମାପନ କରି ସେ ପ୍ରାତଃ-କାଳର ସାଧ୍ୟ ଅର୍ଘ୍ୟ ଅର୍ପଣ କଲେ । ଏତିକିରେ ଆକାଶର ଚୂଡ଼ାମଣି ଭଗବାନ ମରୀଚମାଳୀ ଜଗତର ପ୍ରାଣୀମାନଙ୍କୁ ଦେଖିବାକୁ ଲାଗିଲେ । ଭରତ ଉପସ୍ଥାନ ଦ୍ୱାରା ସୂର୍ଯ୍ୟଙ୍କର ନମସ୍କାର କଲେ, ପୁନର୍ବାର ଜଳ ମଧ୍ୟରେ ଠିଆ ହୋଇ ତିନିମୁହୂର୍ତ୍ତ ପର୍ଯ୍ୟନ୍ତ ଏକାକ୍ଷର ପ୍ରଣବମନ୍ତ୍ର ଶାନ୍ତ ହୃଦୟରେ ଜପ କରିବାକୁ ଲାଗିଲେ । ସେ ଚକ୍ଷୁ ମୁଦ୍ରିତକରି ନଦୀ ମଧ୍ୟରେ ଠିଆହୋଇ ଭଗବାନଙ୍କ ଧ୍ୟାନରେ ତଲ୍ଲୀନ ହୋଇଗଲେ । ବ୍ରହ୍ମାଙ୍କର ବାଚକ ପ୍ରଣବ ଜପ କରି ସେ ତାଙ୍କ ଭାବନାରେ ଭାବିତ ହେଲେ । ସେ ସମୟରେ ତାଙ୍କର ଆଖି ଖୋଲିଗଲା । ଆଖି ଖୋଲିବା ମାତ୍ରେ ସେ ଦେଖିଲେ ଯେ ଗୋଟିଏ ହୃଷ୍ଟପୁଷ୍ଟ ସୁନ୍ଦର ହରିଣୀ ଏକା ଏକା ଠିଆହୋଇ ଚଞ୍ଚଳ ଦୃଷ୍ଟିରେ ଏଆଡ଼େ ସେଆଡ଼େ ଭୟଭୀତ ହୋଇ ଚାହୁଁଅଛି । ଶଙ୍କିତ ହୃଦୟରେ କିଛି ସମୟ ସେହି ସ୍ୱଭାବଭୀରୁ ମୃଗୁଣୀ କାନ ଲଗାଇ କିଛି ଶୁଣିବାକୁ ଚେଷ୍ଟା କଲା ଏବଂ ଶୁଣି ଆସ୍ତେ ଆସ୍ତେ ନଦୀର ନିକଟକୁ ଆସି ସୁସ୍ୱାଦୁ ଜଳ ପାନ

କରିବାକୁ ଲାଗିଲା । ଜଣା ଯାଉଥିଲା ଯେପରି ସେ ବହୁବାଟର ତୃଷା ଥିଲା, କୌଣସି ଅଘଟିତ ଘଟଣା ହେତୁ ସେ ନିଜର ଦଳଠାରୁ ବିଚ୍ଛିନ୍ନ ହୋଇ ଯାଇଥିଲା । ଗଣ୍ଡକୀର ମଧୁର ଜଳକୁ ସେ ପେଟ ପୂରାଇ ପିଇଲା । ଏତେ ଅଧିକ ଜଳ ପିଇବା ହେତୁ ତାର ଉଭୟ କାଖ ଫୁଲି ନଥିଲା ବରଂ ଆବଶ୍ୟକତା ଠାରୁ ମୋଟା ଦେଖା ଯାଉଥିଲା । ତାର ବଢ଼ିଥିବା ପେଟରୁ ଅନୁମାନ କରି ଯାଉଥିଲା ସେ ଗର୍ଭିଣୀ ଏବଂ ଶୀଘ୍ର ପ୍ରସବ କରିବାକୁ ଯାଉଛି । ଏହିପରି ବଡ଼ବଡ଼ ଚଞ୍ଚଳ ଚକ୍ଷୁଥିବା ଗର୍ଭିଣୀ ହରିଣୀକୁ ରାଜର୍ଷି ଭରତ ଏକ ଧ୍ୟାନରେ ଗ୍ରହି ରହିଲେ । ମୁଖରୁ ଏକାକ୍ଷର ମନ୍ତ୍ର ଉଚ୍ଚାରଣ ହେଉଥିଲା ଏବଂ ଦୃଷ୍ଟି ସେହି ମୃଗୁଣୀ ଉପରେ ନିବଦ୍ଧ ଥିଲା । ଥରେ ପାଣି ପିଇସାରି ଇତସ୍ତତଃ ଗ୍ରହି ସେ ପୁଣି ପାଣି ପିଇବାକୁ ଲାଗିଗଲା । ସେ ସମୟରେ ହଠାତ୍ ଦଶଦିଗକୁ କମ୍ପାଇ ସିଂହର ଭୟାନକ ରଡ଼ି ଶୁଣାଗଲା । ମୃଗବାଳା ସ୍ୱଭାବରେ ତ ଥିଲା ଭୀରୁ, ଦ୍ୱିତୀୟତଃ ସେ ଥିଲା ଏକାକୀନୀ । ହଠାତ୍ ସିଂହର ଗର୍ଜନ ଶୁଣି ସେ ଚମକି ଉଠିଲା, ଭୟଭୀତ ହୋଇଗଲା, କିଂକର୍ତ୍ତବ୍ୟ ବିମୂଢ଼ ହେଲା । ତାକୁ ଏପରି ଜଣାଗଲା ଯେପରି ସିଂହ ତାର ମୁଣ୍ଡ ଉପରେ ଆସି ବସିଛି । ଆତ୍ମରକ୍ଷାର କୌଣସି ଉପାୟ ନଦେଖି ସେ ନିଜର ସମ୍ପୂର୍ଣ୍ଣ ବଳ ଖର୍ଚ୍ଚ କରି ଏକ ଲମ୍ଫ ପ୍ରଦାନ କଲା । ସେ ଭାବିଥିଲା ଲମ୍ଫ ମାରି ଗଣ୍ଡକୀ ଆରପାର୍ଶ୍ୱରେ ପହଞ୍ଚିଗଲେ ସିଂହ ଭୟରୁ ରକ୍ଷା ମିଳିବ । ସିଂହ ସେପାରି ପର୍ଯ୍ୟନ୍ତ ଅନୁଧାବନ କରିବ ନାହିଁ, ଯେତେବେଳେ ପ୍ରାଣୀର ପ୍ରାଣରକ୍ଷାର ସମସ୍ୟା ଆସେ, ସେ ନିଜର ସମ୍ପୂର୍ଣ୍ଣ ଶକ୍ତି ଲଗାଇ ଯାହାକିଛି ସଞ୍ଚିତ ବଳକୁ ବିନିଯୋଗ କରି ଜୀବନରକ୍ଷା କରିବା ପାଇଁ ଚେଷ୍ଟା କରେ । ହରିଣୀ ସମ୍ପୂର୍ଣ୍ଣ ବଳ ଲଗାଇ ଡେ଼ଇଁ ପଡ଼ିଲା ସତ, କିନ୍ତୁ ଡେ଼ଇଁବା ଦ୍ୱାରା ତାର ଗର୍ଭସ୍ଥ ଶିଶୁ ନିଜ ସ୍ଥାନରୁ ଚ୍ୟୁତ ହେଲା । ସ୍ଥାନରୁ ଚ୍ୟୁତ ହୋଇ ଯୋନିଦ୍ୱାର ଦେଇ ବାହାରି ମର୍ତ୍ତ୍ୟନଈରେ ପାଣିରେ ପଡ଼ିଗଲା । ହରିଣୀ ନିଜର ସମ୍ପୂର୍ଣ୍ଣ ବଳ ବିନିଯୋଗ କରିଥିଲା ଅତଏବ ଗର୍ଭପାତ ହେତୁ ସେ ମୂର୍ଚ୍ଛିତା ହୋଇ ସେହି ମୂର୍ଚ୍ଛିତାବସ୍ଥାରେ ପର୍ବତଗୁମ୍ଫାର ଏକ ପାଷାଣଖଣ୍ଡରେ ଜୋରରେ ପଡ଼ିଗଲା ଏବଂ ପଡ଼ିବାମାତ୍ରେ ମରିଗଲା ।

ରାଜର୍ଷି ଭରତ ଏହି ସବୁ ଘଟଣା ନିଜ ଆଖିରେ ଦେଖୁଥିଲେ । ମରି-ଯାଇଥିବା ହରିଣୀକୁ ସେ ଦେଖି ନଥିଲେ, ମାତ୍ର ନଈର ତୀକ୍ଷ୍ଣ ପ୍ରବାହରେ ପ୍ରବାହିତ ସେହି ମୃଗଶାବକଟିକୁ ଦେଖିଲେ । ଦେଖିବା ମାତ୍ରେ ତାଙ୍କ ହୃଦୟରେ ଦୟା ଆସିଲା । ଶୀଘ୍ର ଶୀଘ୍ର କୌଣସି କଥା ଚିନ୍ତା ନକରି ସେ ଆଗକୁ ମାଡ଼ିଗଲେ ଏବଂ ବହି ଯାଉଥିବା ଶିଶୁଟିକୁ ଦଉଡ଼ିପଡ଼ି ଧରି ପକାଇଲେ । ନିରୀହ ମୃଗଶିଶୁଟି ତାର ରକ୍ଷକ ରାଜର୍ଷିଙ୍କ ଦୟାର୍ଦ୍ରଦୃଷ୍ଟିକୁ ନିବଡ଼ତାର ସହ ଗ୍ରହିବାକୁ ଲାଗିଲା ।

ସେହି ଅନାଥ ପିଲାଟିର ଭୟଭୀତ କାତର ଦୃଷ୍ଟି ଦେଖିକରି ଭରତଙ୍କର ହୃଦୟ ଦୟାରେ ପୂର୍ଣ୍ଣ ହୋଇଗଲା, ସେ ନିଜର ବଲ୍‌କଲରେ ପିଲାଟିର ଶରୀରକୁ ପୋଛି-ଦେଇ, ତା ମାଆକୁ ଖୋଜିବାକୁ ଲାଗିଲେ । ସମ୍ମୁଖରେ ମୃତ ଅବସ୍ଥାରେ ପଡ଼ିଥିବା ହରିଣୀଟିକୁ ଦେଖିଲେ । ବର୍ତ୍ତମାନ ରାଜର୍ଷି ବିଷମ ଚିନ୍ତାରେ ଉଦ୍‌ବିଗ୍ନ ହେଲେ । ଭଗବାନ ମୋତେ ଏହି ବାଳକଟିକୁ ଦୀନହୀନ ଅବସ୍ଥାରେ ସମର୍ପଣ କରିଅଛନ୍ତି । ବର୍ତ୍ତମାନ ମୁଁ ଏହାକୁ କାହା ହାତରେ ସମର୍ପଣ କରିବି । ଯଦି ଏଠାରେ ଏକାକୀ ଛାଡ଼ିଦେବି, ତେବେ ସିଂହ ବ୍ୟାଘ୍ର ଖାଇଯିବେ, ସେମାନଙ୍କଠାରୁ କୌଣସି ଉପାୟରେ ବଞ୍ଚିଗଲେ ବ୍ୟାଧ ଧରି ନେଇଯିବ ଏବଂ କାଟିକରି ବନ୍ଦୀ କରିଦେବ । କଣ କରିବି ଏହାର ରକ୍ଷା ଗୋଟିଏ ମାତ୍ର ଉପାୟ ଅଛି, ଏହାକୁ ଆଶ୍ରମକୁ ନେଇଯିବି ବଡ ହୋଇଗଲେ ଛାଡ଼ି ଦେବି । ଏହି ଅରଣ୍ୟରେ ମୁଁ ହିଁ ତାର ଶରଣ । ଏହାର ପାଳନ ପୋଷଣ ମୋତେ ଆତ୍ମୀୟ ସ୍ୱଜନଙ୍କ ପରି କରିବାକୁ ହେବ । ପିଲାମାନେ ତ ସ୍ୱଭାବରେ ଆନନ୍ଦବର୍ଦ୍ଧକ, ତାଉପରେ ଏ ଥିଲା ଦୁଃଖୀ, ବିପତ୍ତିରେ ପଡ଼ିଥିଲା, ସଦ୍ୟଜାତ ମୃଗଶିଶୁ ଥିଲା, ଭରତ ତାକୁ ଅତ୍ୟନ୍ତ ସ୍ନେହ ସହକାରେ ସମ୍ଭାଳି ନିଜର ଆଶ୍ରମକୁ ନେଇଗଲେ । ଆଶ୍ରମକୁ ଯାଇ ଜଳପାତ୍ର ରଖିଦେଲେ । ବଲ୍‌କଲକୁ ଫିଙ୍ଗିଦେଲେ । କୋଳରୁ ପିଲାଟିକୁ ଓହ୍ଲାଇଲେ । ଖଟରେ ବସାଇ ତାର ଶରୀରକୁ ଚୁମ୍ବନ କଲେ । ହାତରେ ଧିରେ ଧିରେ ସାଉଁଳିଲେ ଏବଂ ପାଖରେ ଥିବା କଚି କୋମଳ କୋମଳ ଦୁବଘାସ ଆଣି ତା ମୁହଁରେ ଦେବାକୁ ଲାଗିଲେ । ସେହି ମୃଗଶିଶୁଟି ଜିଭରେ ସେହି ତୃଣକୁ ଚାଟିଲା ଏବଂ ନିଶ୍ୱାସନ କରିଦେଲା । ଭରତ ତାଙ୍କ କୋଠରୀର ଗୋଟିଏ କୋଣରେ ଶୁଖିଲା ଘାସ ଉପରେ ତାକୁ ବସାଇ ଦେଲେ । ଯେତେବେଳେ ପାଣି ପିଆଇଲେ ସେ ପିଇଦେଲା ।

ଦ୍ୱିତୀୟ ଦିନ ପୁଣି ଭରତ ଘାସ ଖୁଆଇଲେ ସେ ଖାଇଦେଲା । ବର୍ତ୍ତମାନ ସେ ଘାସ ଖାଇବାକୁ ଆରମ୍ଭ କରିଦେଲା । ଦୁଇ ଚାରିଦିନରେ ଏଆଡ଼େ ସେଆଡ଼େ ବୁଲି ତାର ଛୋଟ ଛୋଟ ଦାନ୍ତରେ ଘାସକୁ ଛିଣ୍ଡାଇ କରି ଖାଇବାକୁ ଲାଗିଲା । ବର୍ତ୍ତମାନ ଭରତ ବଡ ଆନନ୍ଦ ଅନୁଭବ କଲେ । ତାଙ୍କୁ ଏହି ଶାନ୍ତ ଏକାନ୍ତ ଅରଣ୍ୟ ମଧ୍ୟରେ ସାଧାସିଧା ସାଥିଟିଏ ମିଳିଗଲା, ଖେଳିବା ପାଇଁ ସଜୀବ ପୁତୁଳି ଖେଳନାଟିଏ ମିଳିଗଲା । ସେ ତାକୁ କୋଳରେ ନେଇ ଖେଳିବାକୁ ଲାଗିଗଲେ ।

ମନ ତ ଗୋଟିଏ, ତାକୁ ଭଗବାନଙ୍କ ଚିନ୍ତାରେ ଲଗାଅ କିମ୍ବା ମନୋ-ରଞ୍ଜନ ପାଇଁ ବା ଆତ୍ମୀୟ ଲୋକମାନଙ୍କର ଭରଣପୋଷଣ ନିମିତ୍ତ, ସେ ସେହି ଚିନ୍ତାରେ ରହିଯିବ । ପ୍ରଥମରୁ ଭରତ ଉଠିବାମାତ୍ରେ ଭଜନ, ପୂଜନ ଭଗବତ ସ୍ମରଣ, ଜପ, ସମାଧିର ଚିନ୍ତା ହେଉଥିଲା, ବର୍ତ୍ତମାନ ଉଠିବାମାତ୍ରେ ସେହି

ମୃଗଶିଶୁର ସୁବିଧା ଆଡ଼କୁ ମନ ଚାଲିଗଲା । ସେ କାହିଁକି ଦୁର୍ବଳ ହେଉଛି । ସେ କିପରି ସୁସ୍ଥ ରହିବ, ତା ପ୍ରତି ଏତେ ପ୍ରେମଭାବ ପ୍ରଦର୍ଶନ କରାଯିବା ଉଚିତ୍ ଯାହା ଫଳରେ ସେ ନିଜର ମା'କୁ ସ୍ମରଣ କରିବ ନାହିଁ । ଏହି ପ୍ରାଣୀଟି କାହା ପ୍ରେମର ସାହଚର୍ଯ୍ୟରେ ବଞ୍ଚିବ । ଏହି ଅନାଥ ବାଳକଟିକୁ ଜନ୍ମ ଠାରୁ କାହାରି ପ୍ରେମ ମିଳିନାହିଁ । ତେଣୁ ମୁଁ ତାକୁ ପ୍ରେମରେ ବୁଡ଼ାଇ ଦେବି । ଏହି ଅରଣ୍ୟରେ ଭଗବାନ ମୋ ପାଇଁ ଗୋଟିଏ ସାଙ୍ଗ ଖୋଜି ଦେଇଛନ୍ତି । ଏହାପାଇଁ ମୁଁ ମୋର ହୃଦୟର ଦ୍ୱାରକୁ ଉନ୍ମୁକ୍ତ କରିଦେବି । ଏହା ଭାବି ସେ ତାର ମୁହଁକୁ ଚୁମ୍ବନ ଦିଅନ୍ତି, ତାର ମୁଖମଣ୍ଡଳକୁ ଆସ୍ତେ ଆସ୍ତେ ସାଉଁଳନ୍ତି, ତାର ଶରୀରରେ ହାତ ବୁଲାନ୍ତି । କଅଁଳିଆ ସବୁଜ ଦୁବଘାସ ଆଣି ନିଜ ହାତରେ ଖୁଆନ୍ତି । ଏବେ ତାର ଛୋଟ ଛୋଟ ସିଙ୍ଗ ଉଠି ଆସୁଥିଲା, ଏଥିପାଇଁ ସେ ଭରତଙ୍କୁ ଭୁଷୁଥିଲା, ତାଙ୍କର କୋଳରେ ନିଜର ମୁହଁ ରଖି ଦେଉଥିଲା । ବନସ୍ଥଳୀ ପୁଚ୍ଛ ପରି ତାଙ୍କର ପଛେ ପଛେ ବୁଲୁଥିଲା, ପ୍ରାଣୀକୁ ଯାହାଠାରୁ ପ୍ରେମ ମିଳୁଥିଲା, ତାରି ହାତରେ ବନ୍ଦୀ ହେବାକୁ ସେ ପସନ୍ଦ କରେ । ଏହି ପ୍ରକାର ଭାବରେ ଭରତ ସେହି ହରିଣୀ ପିଲାର ମୋହରେ ପଡ଼ିଯାଇଁ ଭଗବତ୍ ଭଜନକୁ ଗୌଣ ଭାବିବାକୁ ଲାଗିଲେ । ହରିଣୀଟିର ଲାଳନପାଳନ ତାଙ୍କର ମୁଖ୍ୟ କର୍ତ୍ତବ୍ୟ ହୋଇଗଲା । ବର୍ତ୍ତମାନ ପର୍ଯ୍ୟନ୍ତ ଏକଶହ ମାଳା ଜପ କରୁଥିଲେ, କାହିଁକିରେ ପଚିଶରୁ ଦଶ, ପାଞ୍ଚ ହୋଇ ମାଳାଟିକୁ ସମ୍ପୂର୍ଣ୍ଣ ଭୁଲିଗଲେ । ଯମ ନିୟମ ସବୁ ଭୁଲିଗଲେ । ହାୟ ମୋର ପୁଅ-ହାୟ ମୋର ମୃଗ ଏହା କରୁ କରୁ ତାଙ୍କର ସମୟ ବିତିବାକୁ ଲାଗିଗଲା ।

ଏହା ଶୁଣି କରି ଶୌନକ କହିଲେ—"ସୂତ ! ହରିଣ ପିଲାଟିର ପଛରେ ଭରତ କାହିଁକି ଯମ ନିୟମକୁ ତ୍ୟାଗକଲେ । ଆଶ୍ରମରେ ତ ପଶୁପକ୍ଷୀ ରହୁଥିବେ ସେହିପରି ହରିଣ ପିଲାଟି ଥାଆନ୍ତା । ତା ପାଇଁ ଭଜନ, ପୂଜନ ଛାଡ଼ିବାର କ'ଣ ଆବଶ୍ୟକତା ଥିଲା ?"

ଏହା ଶୁଣି ହସି ହସି ସୂତ କହିଲେ—"ଭଗବନ ! ଜୀବର ଗୋଟିଏ ସ୍ଥିତି ରହେନାହିଁ, ହୁଏତ ସେ ଉନ୍ନତ ପଥରେ ଅଗ୍ରସର ହୁଏ ବା ପଡ଼ିଯାଇ ନିଜ ସ୍ଥାନକୁ ଅପସର ହୁଏ । ନିୟମକୁ କଠୋର ଭାବରେ ପାଳନ କଲେ ଉନ୍ନତ ହୁଏ । ଯେଉଁଠାରେ ନିୟମକୁ ଢିଲାକରି ଦିଆଯାଏ, ସେଠାରେ ନିୟମର କୌଣସି ମୂଲ୍ୟ ରହେ ନାହିଁ । ମନକୁ କୌଣସି ବାହାନା ଆବଶ୍ୟକ, ସଂସାର ପ୍ରବାହରେ ବହିଯିବା ପାଇଁ ତାର ଜନ୍ମ ଜନ୍ମାନ୍ତରର ସ୍ୱଭାବ ହେତୁ ଶିଖାଇବାର କୌଣସି ଆବଶ୍ୟକତା ରହେ ନାହିଁ । ଭଗବାନଙ୍କ ଆଡ଼କୁ ତାକୁ ବଳପୂର୍ବକ ଉପରକୁ ଆଣିବାକୁ ପଡ଼େ ସହିତ, କଠିନତାର ସହିତ ଲଗାଇବାକୁ ପଡ଼େ । ଯେପରି ତଳେ ଥିବା ପୃଥିବୀରେ ଜଳ ଆପଣା ଛାଏଁ

ବଢ଼ିବାକୁ ଲାଗେ । ଉଚ୍ଚ ଭୂମିରେ ପାଣିର ସହିତ ରହାଯାଏ । ମାତ୍ର ଯେଉଁଠି ଟିକିଏ ନିୟମ ଢିଲା ହୋଇଯାଏ, ପୁଣି ନିମ୍ନସ୍ଥାନକୁ ଗଡ଼ିବାକୁ ଲାଗେ । ଯେ ନିଜର ବସ୍ତ୍ରର ପରିଷ୍କାର ପରିଚ୍ଛନ୍ନତା ପ୍ରତି ସଦାସର୍ବଦା ଧ୍ୟାନରଖେ, ମଇଳା ନହେବା ପାଇଁ ନିରନ୍ତର ଚେଷ୍ଟାକରେ, ସେ ବସ୍ତ୍ରକୁ ସ୍ୱଚ୍ଛ ରଖିପାରେ । କିନ୍ତୁ ଅଳ୍ପ ମଇଳା ହେଲେ ଏବଂ ତାର ଉପେକ୍ଷା କରାଗଲେ, ତେବେ ସମ୍ପୂର୍ଣ୍ଣ ପରିଷ୍କାରକୁ ଉପେକ୍ଷା କରାଯାଏ । ଭାବେ-ମଇଳାତ ହୋଇଗଲା, ବର୍ତ୍ତମାନ ଆଉ କ'ଣ ଅବସର ମିଳିଲେ ଧୋଇ ନେବା । ଏହି ବିଷୟ ହେତୁ ସେ ସମ୍ପୂର୍ଣ୍ଣ ମଇଳା ସ୍ଥାନରେ ମଧ୍ୟ ବସିଯାଏ । ପରେ ନିୟମକୁ ତ୍ୟାଗକଲେ ମଣିଷ ଆସ୍ତେ ଆସ୍ତେ ପତନ ଦିଗକୁ ଅଗ୍ରସର ହୁଏ, ଏ ବିଷୟରେ ଆପଣଙ୍କୁ ଗୋଟିଏ ଦୃଷ୍ଟାନ୍ତ ଦେଉଛି ।'

କୌଣସି ଜଣେ ବ୍ୟକ୍ତି କୌଣସି ସନ୍ନ୍ୟାସୀଙ୍କୁ ମାଂସ ଖାଉଥିବାର ଦେଖିଲା । ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଭାବରେ ପଚାରିଲା -"ଅରେ, ସାଧୁବାବା ! ତୁମେ ସନ୍ୟାସୀ ହୋଇକରି ମାଂସ ଖାଉଅଛ ?''

ସେ ନିତାନ୍ତ ଉପେକ୍ଷା ସ୍ୱରରେ କହିଲା, "ହଁ, ଭାଇ ! ଖାଉଛି ତ, ମାତ୍ର ମାଂସର ସ୍ୱାଦ କେବଳ ମଦ ସହିତ । ମଦ ବ୍ୟତୀତ ମାଂସରେ ଏତେ ଆନନ୍ଦ ଆସୁନାହିଁ ।" ସେହି ବ୍ୟକ୍ତିଟି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲା—"ତେବେ କ'ଣ ଦେବତା ! ଆପଣ ମଦ୍ୟପାନ ମଧ୍ୟ କରୁଛନ୍ତି ?

ସେହି ସାଧୁଟି ଦୁଃଖିତ ହୋଇ କହିଲା; ମୁଁ ତ ମଦ୍ୟପାନ କରେନାହିଁ । ଏକାକୀ ଆନନ୍ଦ ଅସେନାହିଁ । ହଁ, ଯେତେବେଳେ ବେଶ୍ୟାମାନଙ୍କ ପାଖକୁଯାଏ, ସେତେବେଳେ ସମସ୍ତଙ୍କ ସହିତ ମିଶି ପିଇବାକୁ ଅତ୍ୟନ୍ତ ସୁଖଲାଗେ ।"

ସେହି ବ୍ୟକ୍ତିଟି ମୁଣ୍ଡ ହଲାଇ କହିଲେ—"ନିର୍ଲଜତାର ମଧ୍ୟ ଶୋଭାଥାଏ ବାବାଜୀ ମହାରାଜ । ଆପଣଙ୍କଠାରୁ କୌଣସି କୁକର୍ମ ଛାଡ଼ିଛି କି ନାହିଁ । ମାତ୍ର ମୋତେ ଏଇକଥା ପାଇଁ ଆଶ୍ଚର୍ଯ୍ୟ ଲାଗୁଛି ଯେ ବେଶ୍ୟାମାନେ ବିନା ପଇସାରେ କଥାବାର୍ତ୍ତା କରନ୍ତି ନାହିଁ, ସେମାନଙ୍କୁ ଟଙ୍କା ଦେବାକୁ ଆପଣ ପଇସା କେଉଁଠାରୁ ପାଉଛନ୍ତି ?

ସାଧୁ ଦୀର୍ଘ ନିଶ୍ୱାସ ପକାଇ କହିଲେ—"ଭାଇ ' ମୁଁ ଚାକିରୀ କରୁନାହିଁ କି ବେପାର କରୁନାହିଁ । ବ୍ୟବସାୟ ମଧ୍ୟ କରୁନାହିଁ । ଟଙ୍କା ପଇସାର ଆବଶ୍ୟକତା ହେତୁ ମୁଁ ଚୋରି କରୁଛି, ଜୁଆ ଖେଳୁଛି, ଯେଉଁଠୁ ଯେଉଁ ଦ୍ରବ୍ୟ ମିଳେ, ସେଥିରେ ନିଜର ବାସନାକୁ ପୂର୍ତ୍ତି କରୁଅଛି ।"

ସେହି ବ୍ୟକ୍ତି ଘୃଣାଭାବରେ କହିଲା, "ଛି, ଛି, ରାମ, ରାମ ! ସାଧୁ ବେଶରେ ରହି ଚେଷ୍ଟା କରୁଛ । ଏତେ ପାପ କରୁଛ ?

ଦୁଃଖରେ ସାଧୁ କହିଲେ—"ଭାଇ ! ଯିଏ ଥରେ ନିଜର ସଦାଚାର ନଷ୍ଟ କରିଦିଏ, ତାହାର ଆଉ କେଉଁ ଗତି ହୁଏ ?"

ସୂତ କହିଲେ—"ମୁନିମାନେ ! ନିୟମ ଯେ ପର୍ଯ୍ୟନ୍ତ ଦୃଢ଼ତାର ସହ ପାଳନ କରାହୁଏ, ସେ ପର୍ଯ୍ୟନ୍ତ ତାହାର ରକ୍ଷା କରାଯାଏ । ଯେତେବେଳେ ଶିଥିଳତା ଆସେ, ଶେଷ ହୋଇଯାଏ । ଜଣେ ବୈଷ୍ଣବ ଥିଲା । ସେତେବେଳେ ମାତା ପିତାର ସଂସ୍କାର ହେତୁ ତାଙ୍କର ମାଂସତ୍ୟାଗ ଥିଲା ଅତ୍ୟନ୍ତ ଦୃଢ଼ । ତାଙ୍କର ଗୋଟିଏ ସାଙ୍ଗଥିଲା ମାଂସାହାରୀ । ସେ ମାଂସର ବହୁତ ପ୍ରଶଂସା କରୁଥିଲା । ସେ ତାକୁ ବହୁତ ଗାଳି ଦେଉଥିଲା । କୌଣସିଦିନ ସେ ଲୁଚିଲୁଚିକରି ଶାଗରେ ମାଂସରସ ମିଶାଇକରି ତାକୁ ଭୁଲାଇକରି ଖୋଇଦେଲା । ବର୍ତ୍ତମାନ ତାର ଜିହ୍ୱାକୁ ବହୁତ ସ୍ୱାଦ ଲାଗିଲା । ଦିନେ ମାଂସରସ ବ୍ୟତୀତ ଶାଗ ଦେଲା । ଏତେ ସ୍ୱାଦିଷ୍ଟ ନହେବା ହେତୁ ବୈଷ୍ଣବ ପଚାରିଲା—"କାହିଁକି ଭାଇ ! ଆଜି ଶାଗରେ ଏତେ ସ୍ୱାଦ ନାହିଁ ।" ସେ ହସିହସି କହିଲା—"ଏପର୍ଯ୍ୟନ୍ତ ମୁଁ ମାଂସ ମିଶାଇ ଶାଗ ତିଆରି କରୁଥିଲି । ଏହା ଶୁଣିକରି ମୋହଦ୍ୱାରା ବଶୀଭୂତ ହୋଇ ସେ କହିଲା, "ବର୍ତ୍ତମାନ ତ ଭ୍ରଷ୍ଟ ହୋଇଗଲି । ଥରେ ଖାଇଲେ ଯାହା ସବୁବେଳେ ଖାଇଲେ ସେୟା, ଆଜିଠାରୁ ମୁଁ ମଧ୍ୟ ଖାଇବାକୁ ଲାଗିବି । "ଏହି ପ୍ରକାର ଭାବରେ, ସେ ମଧ୍ୟ ମାଂସାହାରୀ ହୋଇଗଲା । ତେଣୁ ମୁନିମାନେ ! ନିୟମ ଏବଂ ବ୍ରତରେ ଢିଲାକଲେ, ତା'ର ରକ୍ଷା ହୋଇପାରେ ନାହିଁ । ଭରତ ସେହି ହରିଣ ଛୁଆର ମୋହରେ ପଡିଯାଇ, ନିଜର ସମସ୍ତ ନିୟମବ୍ରତ ତ୍ୟାଗକରିଦେଲେ । ସେ ବର୍ତ୍ତମାନ ସବୁ ସର୍ବଦା ତାହାର ଖାଇବା ପିଇବା କଥା ଚିନ୍ତା କରିବାକୁ ଲାଗିଲେ । ଦୂରରୁ ଶାଗୁଆ ଶାଗୁଆ ଘାସ ଆଣନ୍ତି, ତାକୁ ନିଜ ସାଙ୍ଗରେ ନେଇଯାଆନ୍ତି ବସିକରି ଖୁଆନ୍ତି । ସେ ନଖାଇଲେ ସ୍ନେହରେ ଧରି କୋମଳ କୋମଳ ଘାସ ତା ମୁହଁରେ ଦିଅନ୍ତି । ଗଣ୍ଡକୀକୁ ନେଇ ଯାଇଁ ତାକୁ ପବିତ୍ରଗଙ୍ଗା ଗାଧୋଇ ଦିଅନ୍ତି । ବଲ୍‌କଲ ବସ୍ତ୍ରରେ ତାହାର ଶରୀରକୁ ପୋଛି ପରିଷ୍କାର କରନ୍ତି ଏବଂ ନିଜ ସାଙ୍ଗରେ ଧରି କୁଟୀରକୁ ଆସନ୍ତି । ବଡ ବଡ଼ ଗଛର ମୋଟା ମୋଟା ଶାଖାମାନଙ୍କୁ କାଟି ତାକୁ ଗଡ ଗଡ଼ କରି ସେ ବାଡ଼ ପ୍ରସ୍ତୁତ କଲେ । ସେ ଘାସରେ ତାକୁ ଆଚ୍ଛାଦିତ କଲେ । ତା ଉପରେ ପଥର ରଖି ଏପରି ସୁଦୃଢ଼ କରିଦେଲେ ଯେ କୌଣସି ସିଂହ ବ୍ୟାଘ ଆସି ମୋର ସନ୍ତାନଟିକୁ କଷ୍ଟ ନଦେଉ । ଏତେଗୁଡ଼ିଏ କଥା କରି ସାରିବା ପରେ ମଧ୍ୟ ରାତିରେ କେତେଥର ଉଠି ସେ ଦେଖୁଥିଲେ । ଯେତେବେଳେ ତାକୁ ସକୁଶଳ ଥାଇ ଥାକୁଲ

କରୁଥିବାର ଦେଖୁଥିଲେ, ସେ ଆନନ୍ଦରେ ଉତ୍ଫୁଲ୍ଲିତ ହୋଇ ଯାଉଥିଲେ, ତାକୁ ଡାକି କହୁଥିଲେ—"ଆରେ, ତୁ ଏପର୍ଯ୍ୟନ୍ତ ଶୋଇଁ ନାହୁଁ ? ଶୋଇଯାଅ ପୁଅ ? ଶୋଇ ଯା ।" ଏହା କହି ତାକୁ ଶୋଇ ପକାଉଥିଲେ । ବନସାରା ତାକୁ ଶ୍ରଦ୍ଧା କରୁଥିଲେ । ତାର ମୁହଁକୁ ବାରମ୍ବାର ଚୁମ୍ବନ କରୁଥିଲେ, ଚପି ଦେଉଥିଲେ । ଏହି ସବୁ କାମ ଯୋଗୁଁ ଭଗବାନଙ୍କ ସେବା କରିବା ନିମିତ୍ତ ତାଙ୍କୁ ଫୁରୁସତ୍ ମିଳୁନଥିଲା । ବର୍ତ୍ତମାନ ତାକୁ ପାଇଁ ସେବନୀୟ, ପୂଜନୀୟ ଏହି ମୃଗଶିଶୁଟି ହୋଇ ଯାଇଥିଲା ।"

ଶ୍ରୀ ଶୁକଦେବ କହୁଛନ୍ତି—"ରାଜନ୍ ! ଅଧିକ କ'ଣ କହିବି, ରାଜର୍ଷି ଭରତଙ୍କର ସେହି ମୃଗଶିଶୁ ପ୍ରତି ନିଜ ଔରସରୁ ଜାତ ପୁତ୍ର ପରି ଅଭିମାନ ହୋଇଗଲା । ବର୍ତ୍ତମାନ ସେ ତାକୁ ନିଜର ବୋଲି ଭାବିବାକୁ ଲାଗିଗଲେ ।

## ଛପ୍ପୟ

ହରିମହିଁ ଜୋ ମନ ଲଗୈ ହରିନମହିଁ ଫଁସୈ ଭାଗ୍ୟବଶ ।
କରେ ହରିନ ଜସ କାଜକଟରେ ଭୂପତି ହ ତସ ତସ ॥
ଗୃହଠୌ ତୁମେ ପ୍ୟାର କରେଁ ତନକୁଁ ଖୁଜଲାବେ ।
ପୁରକାରେଁ ତୃନ ଲାଇ ସ୍ୱୟଂ ନିଜ କରନି ଖବାବେ ॥
ଚଲତ ଫିରତ ସୋବତ ଉଠତ, ଛାୟା ସମ ରାଖେ ନିକଟ ।
ତଜି ସରବସ ମୃଗ ମୋହ ମହଁ, ଫଁସେ ନେହ ମହିମା ବିକଟ ॥

## ଭରତଙ୍କର ମୃଗଶିଶୁ ପ୍ରତି ମୋହ

**କାମୋ ମନ୍ୟୁର୍ମଦୋ ଲୋଭଃ ଶୋକମୋହ ଭୟାଦୟଃ ।**
**କର୍ମବନ୍ଧଶ୍ଚ ଯନ୍ମୂଲଃ ସ୍ୱୀକୁର୍ଯାତ୍କୋ ନୁ ତଦ୍ ବୁଧଃ ॥**

( ଭାଗବତ ୫ମ ସ୍କନ୍ଧ ୭ ଅଧ୍ୟାୟ ୫ଶ୍ଳୋକ )

### ଛପ୍ପୟ

ମୃଗ ଦହାଡ଼ ହର ମୃଗୀ ଭଇ ଭୟ ତେ ଅତ ଉନ୍ମତ ।
ମାର ଏକ ଛଲାଗ ନଦୀ କୁଁ ପାର ହୋନ ହିତ ॥
ଭୟେ ପେଟ ଶମ ଭୟୋ ନଦୀ ମହଁ ଗର୍ଭ ଗିରୟୋ ।
ପାର ଜାଇ ଗିରୀ ମରୀ ଭରତ ମୃଗଶିଶୁ ଅପନାୟୋ ॥
କରୁଣାବଶ ସଂଗଲେଗୟେ, ସୁତ ସମାନ ପାଳନ କରୟୋ
ମୋହ ମୋହଁ ତନ୍ମୟଭଏ, ହାଥ ହବନ କରତହୁଁ ଜରବୋ

ପ୍ରାରବ୍ଧ ମଣିଷ କେତେ କେଉଁଠି ବୁଲାଇବ, ଏହାର ଆଗରୁ କିଛି କହି ହେବ ନାହିଁ । କିଏ ଏ କଥାରେ ବିଶ୍ୱାସ କରିପାରେ ଯେ ତ୍ରୈଲୋକ୍ୟ ବିଜୟୀ ଅର୍ଜ୍ଜୁନଙ୍କୁ ଠେଙ୍ଗା ବଳରେ ଜଙ୍ଗଲର ଶବରମାନେ ଜିତିଗଲେ । ଶ୍ରୀକୃଷ୍ଣଙ୍କର ଉପଭୋଗ୍ୟା ରାଣୀମାନଙ୍କୁ ଦସ୍ୟୁମାନେ ବଳପୂର୍ବକ ଉଠାଇ ନେଇଗଲେ, କିନ୍ତୁ ଏହାପରି ହୋଇଥିଲା ଅର୍ଜୁନ ଏବଂ କୃଷ୍ଣଙ୍କ ପତ୍ନୀମାନେ ପାରବ୍ଧ ବଳରେ ନିଜ ନିଜର ଚମତ୍କାରିତା ଦେଖାଉଥିଲେ । ସେମାନଙ୍କ ମନରେ ଯେଉଁ ଅଳ୍ପ କିଛି ଅଭିମାନ ହୋଇଯାଇଥିଲା 'କାଳ' ସେହି ଅଭିମାନକୁ ମର୍ଦ୍ଦନ କରିଦେଲା । ଭାଗ୍ୟ ଅସମ୍ଭବ ଘଟଣାକୁ ସମ୍ଭବ କରିଦିଏ । ଦୈବ ଅଘଟଣକୁ ପ୍ରତ୍ୟକ୍ଷ ଘଟଣା କରି ଦେଖାଇଦିଏ । ଏଇଥିପାଇଁ ଦୈବକୁ ଦୁର୍ନିବାର ବୋଲି କୁହାଯାଏ । ଏଇଥିପାଇଁ ଦୈବକୁ ଦୁର୍ନିବାର ବୋଲି କୁହାଯାଏ ।

ଶ୍ରୀ ଶୁକଦେବ କହିଲେ – "ରାଜନ ! ମହାରାଜ ଭରତ ଏକାନ୍ତରେ ନିଶ୍ଚିନ୍ତ ହୋଇ ଭଜନ କରୁଥିଲେ । ଦୈବ ସେଠାରେ କାର୍ଯ୍ୟ ଉପରେ ମୃଗଶିଶୁ ହୋଇ ତାଙ୍କର ଯୋଗର ଅନ୍ତରାୟ ହୋଇ ଉପସ୍ଥିତ ହେଲା । ସେ ସମସ୍ତ ଜ୍ଞାନ ଧ୍ୟାନ ତ୍ୟାଗକରି ମୃଗଶାବକ ମୋହରେ ପଶିଗଲେ ।"

ରାଜା ପରୀକ୍ଷିତ ପଚାରିଲେ– "ଭଗବନ ! ଭରତ କୌଣସି ଖରାପ କାମ କରି ନଥିଲେ । ସେ ଦୟାପରାୟଣ ହୋଇ ନିଃସ୍ୱାର୍ଥ ଭାବରେ ପାଣିରେ ଭାସି ଯାଉଥିବା ମୃଗଶିଶୁକୁ ରକ୍ଷା କରିଥିଲେ । ପ୍ରତ୍ୟେକ ସହୃଦୟ ବ୍ୟକ୍ତିର କର୍ତ୍ତବ୍ୟ ହେଉଛି ଯେ, କୌଣସି ଜୀବକୁ ବିପତ୍ତିରେ ପଡ଼ିଥିବାର ଦେଖିଲେ ତାକୁ ଯଥାଶକ୍ତି ସାହାଯ୍ୟ କର, ପ୍ରାଣକୁ ବାଜି ଲଗାଇ ତାକୁ ବଞ୍ଚାଇବାକୁ ଚେଷ୍ଟା କର । ତେବେ ଆପଣ ତାକୁ ବାରମ୍ବାର ମୋହ କାହିଁକି କହୁଛନ୍ତି ! ଆମେ ତ ତାଙ୍କ ଆଖି ଆଗରେ ପିଲାଟି ଭାସି ଯିବାର ଦେଖିଥାନ୍ତେ । ଯଦି ମହାରାଜ ! ନିର୍ଦ୍ଦୟତାର ନାମ ବୈରାଗ୍ୟ ଅଟେ ତେବେ ଏଭଳି ବୈରାଗ୍ୟକୁ ଦୂରରୁ ପରିତ୍ୟାଗ କରିବା ଉଚିତ ।"

ଏହା ଶୁଣି ଅତ୍ୟନ୍ତ ଗମ୍ଭୀର ହୋଇ ଶ୍ରୀ ଶୁକ କହିଲେ – "ମହାରାଜ ! ଆପଣ ମୋର କହିବା ଅଭିପ୍ରାୟକୁ ବୁଝି ପାରିଲେ ନାହିଁ । ଦୟା ଏବଂ କୃପାରେ ପ୍ରଭେଦ ରହିଅଛି । ପ୍ରେମ ଏବଂ ମୋହରେ ମଧ୍ୟ ଭେଦ ଅଛି । ଦୟା ପ୍ରାଣୀ ମାତ୍ରକ ଉପରେ ସମାନ ଭାବରେ କରାଯାଏ । ଯେଉଁଠାରେ ଦୁଃଖ ଦେଖାଯାଏ, ତାକୁ ଦୁଃଖ ଦୂର କରିବା ପାଇଁ ଭାବନା ମନରେ ହୋଇଗଲେ, ତାକୁ ଦୟା କରାଯାଏ । ଯାହା ସହିତ କୌଣସି ସମ୍ବନ୍ଧ ଥାଏ, ନିଜର ଭାବଥାଏ ସେ ଲୋକର ଦୁଃଖରେ ଦୁଃଖି ହୋଇ ତାଙ୍କ ପାଇଁ ଯାହାକିଛି କରାଯାଏ, କୃପାର ବଶୀଭୂତ ହୋଇ କରାଗଲା ବୋଲି କୁହାଯାଏ । ଦୟା ସମଷ୍ଟି ରୂପରେ କୃପା ବ୍ୟଷ୍ଟି ରୂପରେ । ଅର୍ଜ୍ଜୁନ ଯୁଦ୍ଧ ସମୟରେ ଯେଉଁ କଥା କହିଥିଲେ, ତାହା ସିଦ୍ଧାନ୍ତ ଥିଲା, ସତ୍ୟ ଥିଲା, କିନ୍ତୁ କୃପାପୂର୍ବକ ପରିବାରର ଲୋକ ପ୍ରତି ମମତା ହେତୁ କହିଥିଲେ, ଅତଏବ ତାହା ଥିଲା ମୋହ । ଭଗବାନ ତାଙ୍କର ମୋହକୁ ଦୂରକଲେ, ପ୍ରତ୍ୟେକ ବାଳକକୁ ଦେଖି ପ୍ରେମ (ଶ୍ରଦ୍ଧା) ହେବା ସ୍ୱାଭାବିକ । ମାତ୍ର ତା ସହିତ ନିଜର ସମ୍ପର୍କ ସ୍ଥାପନ କରିବା ଏବଂ ସେହି ସମ୍ବନ୍ଧ ଭାବ ହେତୁ ଏକରେ ନିଜର ପ୍ରେମଭାବକୁ ସମର୍ପି କରିଦେବା ମୋହ ଅଟେ । ବନ୍ଧନର କାରଣ ଆସକ୍ତି । ବଗିଚାରେ ନାନା-ପ୍ରକାର ଫୁଲ ଫୁଟିଥାଏ । ତାହାକୁ ଦେଖି ହୃଦୟ ପ୍ରସନ୍ନ ହୁଏ, ଏହା ସ୍ୱାଭାବିକ । ମାତ୍ର ତହିଁରେ ଆସକ୍ତ ହୋଇ ତହିଁରୁ ଗୋଟିକୁ ପାଇବା ପାଇଁ ଚେଷ୍ଟା କରିବା, ଜଣକୁ ନିଜର କରିବା ଏବଂ ସେଥିରେ ସମ୍ବନ୍ଧ ସ୍ଥାପିତ କରିବା ମୋହ ଅଟେ ।"

ରାଜର୍ଷି ଭରତ ମୃଗର ପିଲାଟିକୁ ଜଳରୁ ବାହାର କଲେ, ତାହା ସେ ଠିକ କଲେ । କିନ୍ତୁ ତନ ପାଳିଲେ ଏବଂ ପୋଷିଲେ ଏହା ମଧ୍ୟ ଭଲକଥା, ମାତ୍ର ତା ସହିତ ସମ୍ବନ୍ଧ ପଣିଆ, ଅଭିମାନ କରି ସଦାସର୍ବଦା ତା ବିଷୟରେ ଚିନ୍ତା କରିବା, ଏହା ପ୍ରତ୍ୟକ୍ଷ ଭାବରେ ମୋହ ଅଟେ, ତପସ୍ୟାରେ ବିଘ୍ନ ଅଟେ । ରାଜର୍ଷିଙ୍କର ଏହା ଥିଲା ପତନ, ତାଙ୍କୁ ତାହା ତ୍ୟାଗ କରିବା ଉଚିତ ଥିଲା ।

ରାଜା ପଚାରିଲେ—"ଭଗବନ ! ବାହାରେ ଗୁଡ଼ି ଆସିଲେ ସେ ଯଦି ଚାଲି ଆସିଥାନ୍ତା ?"

ଶ୍ରୀ ଶୁକ ଗମ୍ଭୀର ହୋଇ କହିଲେ—"ମହାରାଜ ! ଏ କଥା ନୁହେଁ । ଜୀବ ସେଠାକୁ ଆସେ, ଯେଉଁଠାରେ ସେ ଦେଖେ ଆସକ୍ତି । ଯେଉଁଠାରେ ଆଦର ମିଳେ ପିଲା ତାହାର କୋଡ଼କୁ ଯାଏ, ସେଠାରେ ପଡ଼ିରହେ, ଆହୁରି ମଧ୍ୟ କେତେ ହରିଣ ଛୁଆ ସେଠାକୁ ଆସୁଥିବେ । ରାଜର୍ଷି ସେମାନଙ୍କୁ ଦେଖି ନ ଦେଖିଲା ପରି ନିଜର ଭଜନ ପୂଜନରେ ଲାଗିଥିବେ । ମାତ୍ର ସେହି ଗୋଟିଏ ହରିଣ ଶିଶୁକୁ ସେ ନିଜର ସନ୍ତାନଠାରୁ ଅଧିକ ଭଲ ପାଇବାକୁ ଲାଗିଥିଲେ ।"

କେବେ କେବେ ତାଙ୍କର ବିବେକ ତାଙ୍କୁ ଧିକ୍‌କାର କରୁଥିଲା ତୁମେ ଭଜନ ପୂଜନ କରିବାକୁ ଆସିଅଛ ଏବଂ ଏହି ହରିଣ ପିଲାର ଭ୍ରମରେ ପଡ଼ି ଯାଇଛ । ଏହା ଉପରେ ପ୍ରାରବ୍‌ଧ ହେତୁ ହୃଦୟରେ ଉତ୍ପନ୍ନ ହୋଇଥିବା ମୋହକୁ ନାନାପ୍ରକାର ଯୁକ୍ତିଦ୍ୱାରା ଖଣ୍ଡନ କରିବା ଉଚିତ ଥିଲା । ରାଜର୍ଷି ଭାବୁଥିଲେ—"ଦେଖ ! ଏହି ପିଲାର ପ୍ରାରବ୍‌ଧ କେତେ ମନ୍ଦ ଥିଲା । ଯେତେବେଳେ ସେ ଗର୍ଭରେ ଥିଲା, ସେତେବେଳେ ତାର ମା ନିଜର ସ୍ୱାମୀଠାରୁ ସୁହୃଦମାନଙ୍କ ଠାରୁ ବନ୍ଧୁବାନ୍ଧବ ଠାରୁ ଏବଂ ଦଳରୁ ବିଚ୍ଛିନ୍ନ ହୋଇଗଲା । ଏକାକୀ ତାର ମା'ତାକୁ ଗର୍ଭରେ ରଖି ବୁଲୁଥିଲା । ଭାଗ୍ୟବଳରେ ତାର ଜନ୍ମ ହେଲା ନଦୀ ଗର୍ଭରେ ସିଂହଭୟ ହେତୁ । ମୋର ସାମାନ୍ୟ ଦୃଷ୍ଟି ସେ ଅଡ଼କୁ ନ ଯାଇଥିଲେ, ତାର ସେ ସମୟରେ ହିଁ ମୃତ୍ୟୁ ହୋଇଥାନ୍ତା, ଜନ୍ମ ସମୟରୁ ତାର ମା ମରିଗଲା ଏବଂ ସେ ହୋଇଗଲା ଅସହାୟ । ଭଗବାନ ମୋତେ ପାଳନକର୍ତ୍ତା ଭାବେ ଏହାକୁ ଦେଲେ । ଯଦିଓ ଏହା ନିହାତି ଖୋଲା ପଶୁ ଅଟେ, ତଥାପି ମୋର ଶରଣରେ ଆସିଲା । ଶରଣାଗତର ରକ୍ଷା ପ୍ରାଣ ଦେଇ କରାଯାଏ । ମୁଁ ତ ସାମାନ୍ୟ ମନୁଷ୍ୟ ମାତ୍ର । ଗୋଟିଏ କପୋତର ସ୍ତ୍ରୀକୁ ବ୍ୟାଧଟିଏ ବାନ୍ଧି ନେଇଥିଲା । ରାତି ବେଳକୁ ସେହି ବ୍ୟାଧଟି ଆସି ଗଛତଳ ଆଶ୍ରୟ ନେଲା ଯେଉଁଠାରେ ପତ୍ନୀ ବିଚ୍ଛେଦ ଦୁଃଖରେ କପୋତଟି ବସିଥିଲା । ଶୀତ-ଦିନ ଥିଲା, ବର୍ଷା ହେଉଥିଲା, ବ୍ୟାଧକୁ ବହୁତ ଥଣ୍ଡା ଲାଗୁଥିଲା । କପୋତଟି

ଭାବିଲା—"ଯଦିଓ ଏ ମୋର ସ୍ତ୍ରୀକୁ ଧରି ନେଇଛୁ ଏବଂ ପ୍ରତ୍ୟେକ ଦିନ ଜୀବହିଂସା କରୁଅଛୁ ତଥାପି ସେ ମୋର ଆଶ୍ରୟକୁ ଆସିଛୁ, ଅତଏବ ଭାବରେ ଭଗବାନ ତାକୁ ପଠାଇଛନ୍ତି। ମୋତେ ଏହାର ରକ୍ଷା କରିବା ଉଚିତ, ଏହା ଚିନ୍ତାକରି ଶୁଖିଲା ଶୁଖିଲା କାଠ ଆଣିଲା, ଅଣ୍ଟରେ କେଉଁଠାରୁ ନିଆଁ ଆଣିଲା, ଅଗ୍ନି ପ୍ରସ୍ତୁତ କଲା ଏବଂ ତାର କ୍ଷୁଧା ଶାନ୍ତ କରିବା ପାଇଁ ନିଜକୁ ଅଗ୍ନିରେ ଆହୁତି ଦେଲା ଯେ ସେ ମୋତେ ଖାଇ କ୍ଷୁଧା ନିବାରଣ କରୁ। ଯେତେବେଳେ ପକ୍ଷୀ ନିଜର ପ୍ରାଣଦେଇ ବ୍ୟାଧକୁ ରକ୍ଷା କଲା, ମୁଁ ତ ମନୁଷ୍ୟ ଏହି ହରିଣ ପିଲାଟିକୁ କିପରି ଉପେକ୍ଷା କରିଥାନ୍ତି। ଶାସ୍ତ୍ରକାରମାନେ କହିଛନ୍ତି, ଶରଣାଗତର ରକ୍ଷାକରିବା ପାଇଁ ପୁରୁଷକୁ ତାର ବଡ ବଡ ସ୍ୱାର୍ଥକୁ ମଧ୍ୟ ପରିତ୍ୟାଗ କରିବା ଉଚିତ। ଭଜନ ପୂଜନ ପୁନର୍ବାର ହୋଇପାରେ, ଏହି ପିଲାଟି ମରିଗଲେ ପୁଣି କେମିତି ବଞ୍ଚିପାରିବ। ଏହି ପ୍ରକାର ଭାବେ ଅନେକ ଯୁକ୍ତି ଦ୍ୱାରା ମନକୁ ବୁଝାଇ ଭରତ ଅତ୍ୟନ୍ତ ମନୋଯୋଗ ସହକାରେ ତାହାର ଲାଳନ ପାଳନ ପୋଷଣ କରିବାକୁ ଲାଗିଲେ। ଭରତଙ୍କୁ ସେହି ପଲାଟି ସହିତ ଏତେବେଶୀ ଆସକ୍ତି ବଢ଼ିଗଲା ଯେ, ତାକୁ ମୁହୂର୍ତ୍ତିକ ପାଇଁ ନିଜ ଆଖିଆଗରୁ ଆଲଗା ହେବାର ଦେଖିପାରୁ ନଥିଲେ। ତାଙ୍କର ସ୍ନେହପାଶରେ ବନ୍ଦୀ ହୋଇ ସେ ତାହାର ଅଧୀନ ହୋଇଗଲେ। ଯେଉଁଠାରେ ବସୁଥିଲେ, ତାକୁ ପାଖରେ ବସାଉଥିଲେ, ଶୋଇଲେ ତାକୁ ପାଖରେ ଶୁଆଉଥିଲେ, ବୁଲିବାକୁ ଯାଉଥିଲେ ତାକୁ ସାଙ୍ଗରେ ଧରି ଯାଉଥିଲେ, ଖାଉଥିବା ବେଳେ ତାକୁ ସମ୍ମୁଖରେ ବସାଉ-ଥିଲେ। ଗୋଟିଏ ଗୁଣ୍ଡା ନିଜେ ଖାଇ ଅନ୍ୟଟି ତାକୁ ଖୁଆଉଥିଲେ। ଗାଧୋଇବାକୁ ଗଲାବେଳେ ତାକୁ ସାଙ୍ଗରେ ନେଇ ଯାଉଥିଲେ। ପ୍ରଥମେ ତାକୁ ଗାଧୋଇ ଦେଇ ପରେ ନିଜେ ଗାଧାଉଥିଲେ। କେବେ କେବେ କୁଶ, ସମିଧ, ପତ୍ର, ପୁଷ୍ପ, ଫଳ, ଫୁଲ ମୂଳ ଏବଂ କନ୍ଦ ଇତ୍ୟାଦି ଆଣିବାକୁ ଗଲାବେଳେ ତାକୁ ସାଙ୍ଗରେ ନେଇ ଯାଉଥିଲେ। ସେ ଭାବୁଥିଲେ—"ଏହା ନକଲେ ମୋ ପଛରେ କୌଣସି ସିଂହ ବ୍ୟାଘ୍ର ଆସି ଏହି ପିଲାଟିକୁ ଖାଇଯିବେ। ଏହାର ଯଦି କିଛି ଅନିଷ୍ଟ ହୋଇଯାଏ ତେବେ ମୋର ଜୀବନ ବ୍ୟର୍ଥ। ରାସ୍ତାରେ ଗଲାବେଳେ ତାକୁ ଆଉଁସି ଦିଅନ୍ତି, ଗେଲ କରି ଦିଅନ୍ତି, ଏବଂ କହନ୍ତି—"ଆରେ ରାଜକୁମାର! ତୁ ବଡ ସୁକୁମାର ଏତେ ବାଟ ଚାଲି ତୁ ନିଶ୍ଚୟ ଥକି ପଡ଼ିଥିବୁ। ଆ ପୁଅ! ତୋତେ କାନ୍ଧ ଉପରେ ବସାଇ ଦିଏ। ଏହା କହି ତାକୁ କାନ୍ଧ ଉପରେ ବସାଇ ଦିଅନ୍ତି ଏବଂ ବହୁତ ବାଟ କାନ୍ଧରେ ବସାଇ ନେଇଯାନ୍ତି। କେବେ କେବେ ତାକୁ ଛାତିରେ ଭିଡ଼ି ଧରନ୍ତି, କେବେ ତାର ମୁଖମଣ୍ଡଳକୁ କୋଳରେ ରଖି ତାର ମୁହଁକୁ ଖୋଲନ୍ତି ଏବଂ ପୁନର୍ବାର ବନ୍ଦ କରନ୍ତି। ଏହିପରି ଭାବରେ ତା ସାଙ୍ଗରେ ଖେଳି ତାକୁ ଆଶ୍ରମକୁ ଲେଉଟାଇ ଆଣନ୍ତି।

ଯଦିଓ ସେ ଭଜନ ଧ୍ୟାନ ସବୁ ଛାଡ଼ି ଦେଇଥିଲେ ତଥାପି କିଛି ସମୟ ମାଳା ନେଇ ଚୁପ୍‌ଚାପ ବସି ଯାଉଥିଲେ । ମାତ୍ର ଚିନ୍ତା ଲାଗି ରହୁଥିଲା ସେହି ମୃଗ ଶିଶୁଟି ନିକଟରେ । ବାରମ୍ବାର ତାକୁ ଲକ୍ଷ୍ୟକରି ଚାହୁଁଥିଲେ, ବସିଛି କି କେଉଁଠାକୁ ଚାଲି ଯାଇଛି । ଯଦି ଦେଖା ନଯାଏ ତେବେ ଝୁଲିମାଳା ରଖି ଦେଇ ମଝିରେ ଉଠିଯାଇ ଦେଖନ୍ତି, କେଉଁଠାକୁ ପଳାଇ ଯାଇନାହିଁତ । ତେତେବେଳେ ତାକୁ ଦୂରରେ ବସିଥିବାର ଦେଖନ୍ତି, ତେବେ ପାଖକୁ ଯାଇ କହନ୍ତି—"ପୁଅ, ଭଲ ତ, ଭଗବାନ ତୋର ମଙ୍ଗଳ କରନ୍ତୁ । ତୁ ମୋ ଦୃଷ୍ଟିରୁ ଦୂରରେ ଆସି କାହିଁକି ବସିଅଛୁ ? ଚାଲ, ମୋ ସାମନାରେ ବସ । ଏହା କହି ତାକୁ ନେଇ ଆସନ୍ତି, ବସିକରି ତାର ଦେହକୁ ସଲସଲ କରନ୍ତି ଏବଂ ନାନାପ୍ରକାର ପ୍ରେମ ପ୍ରଦର୍ଶନ କରନ୍ତି ।

ଶ୍ରୀ ଶୁକ କହିଲେ—"ମହାରାଜ ! ମୋହ ଏତେ ବଳବାନ ଯେ ଯାହାପ୍ରତି ହୋଇଯାଏ ହୃଦୟ ସମ୍ପୂର୍ଣ୍ଣରୂପେ ତାକୁ ସର୍ବସ୍ୱଭାବେ ଅନୁଭବ କରେ । ଏଇଥିପାଇଁ ସାଧୁମାନଙ୍କୁ କୌଣସି ସ୍ତ୍ରୀ, ପୁରୁଷ, ବାଳକ, ପଶୁ, ପକ୍ଷୀ ସହିତ ଆସକ୍ତି ବଢ଼ାଇ ମମତ୍ୱଭାବ ସୃଷ୍ଟି କରିବା ଉଚିତ ନୁହେଁ । ରାଜନ୍ ! ମୁଁ ବହୁତ ତ୍ୟାଗୀ, ବୈରାଗୀ ସାଧୁମାନଙ୍କୁ ଦେଖିଅଛି, ପ୍ରଥମେ କେହି ନିରାଶ୍ରୟ ସ୍ତ୍ରୀ ଲୋକକୁ ଆଶ୍ରୟ ଦିଅନ୍ତି, ପରେ ତାହାର ମାୟାରେ ପଶିଯାନ୍ତି । ନିକଟରେ ରହିବା ହେତୁ ଏବଂ ତାରପର ଅନୁକୂଳ ଆଚରଣ କରିବା ଦ୍ୱାରା ଅନୁରାଗ ହୋଇଯାଏ । ହୃଦୟ କାହାକୁ ପ୍ରେମ କରିବାକୁ ଛଟପଟ ହୁଏ । ଭଗବାନ ତ ଦେଖନ୍ତି ନାହିଁ, ଦେଖାଯାନ୍ତି ବହୁତ କଷ୍ଟ ସ୍ୱୀକାର କରି ପ୍ରଯତ୍ନ କଲେ । ଏଇଥିପାଇଁ ନିକଟରେ ରହୁଥିବା ଲୋକ ପ୍ରତି ଅନୁରାଗ ଆସକ୍ତି ଏବଂ ମୋହ ହୋଇଯାଏ । ତାର ଅନୁକୂଳ ଆଚରଣରେ ଆସକ୍ତ ନକରିବା, ବାରମ୍ବାର ସ୍ମରଣ କରିବା ଉଚିତ ଯେ ଯେତେବେଳେ ଆମେ ଶରୀରର ସମସ୍ତ ସମ୍ପର୍କକୁ ତ୍ୟାଗକରି ଚାଲିଆସିଲେ ତେବେ ଅନ୍ୟଠାରେ ପୁଣି କାହିଁକି ଆସକ୍ତି । ଯଦି ଏହି କଥାକୁ ସାଧକ ଭୁଲିଯାନ୍ତି, ତେବେ ଘରର ହେବା ନାହିଁକି ଘାଟର ହେବାନି, ସାଧୁ ହେବାନାହିଁକି ଗୃହସ୍ଥ । ବ୍ରାହ୍ମଣ ବା ବାମହାତ ହେବାନି, ବାବାଜୀ ବା ବାବୁଜୀ କିଛି ହେବାନାହିଁ । ଶରୀର ଭ୍ରଷ୍ଟ ହୋଇ ନଷ୍ଟ ହୋଇଯିବ । ଭରତ ସେହି ହରିଣ ପିଲାର ମୋହରେ ପଶି ଯୋଗ ମାର୍ଗରୁ ଚ୍ୟୁତ ହୋଇଗଲେ ସେ ସଂସାର ଚକ୍ର ଭିତରୁ ବାହାରୁ ବାହାରୁ ପୁଣି ସେଥିରେ ପଶିଗଲେ ।"

## ଛପ୍‌ପଯ୍ଟ

"ଔରସ ଆତ୍ମଜ ତନୁଜ ଧାର୍ମିକ ତ୍ୟାଗେ ନିଜ ସୁତ ।
ଜୋ ସବଇ ସୁକୁମାର ସୁଧଡ ସୁନ୍ଦର ସୁଶୀଲଯୁତ ।।
ତ୍ରୁନ ସମ ତ୍ୟାଗେୟା ରାଜ ସୁନ୍ଦରୀ ମହର୍ଷୀ ତ୍ୟାଗୀଂ ।
ରୂପବତୀ ଗୁଣବର୍ତୀ ମୃତକ ସମ ତେ ସବ ଲଗିଂ ।।
ଠଗେ ଭାଗ୍ୟ ନେ ଭରତଜୀ, ଚଢ଼ି ଊଂଚେ ନୀଚେ ଗିରେ ।
ମୂର୍ତ୍ତିମାନ ଦୁର୍ଭାଗ୍ୟ ମୃଗ, କେ ଚକ୍‌କର ମହିଁ ନୃପପରେ ।"



# ଭରତଙ୍କର ମୃଗବାଳକ ମୃତ୍ୟୁରେ ଦୁଃଖ

ରାଜନ୍ ମନୀଷିତଂ ସଧ୍ର୍ୟକ୍ ତବ ସ୍ୱାବଦ୍ୟମାର୍ଜନମ୍
ସିଦ୍ଧ୍ୟସିଦ୍ଧ୍ୟୋଃ ସମଂ କୁର୍ଯାଦ୍ଦୈବଂ ହି ଫଲସାଧନମ୍

(ଭାଗବତ ୧୦-ସ୍କନ୍ଧ ୬୭-ଅଧ୍ୟାୟ ୩୮-ଶ୍ଳୋକ)

## ଛପ୍ପୟ

ମୃଗ ଶାବକ ଇକ ଦିବସ ଦୂର ଚରିବେକୁଁ ଧାୟୋ
ସଘନ ବୀତେୟା ନହିଁ ଲୌଟି ଆଶ୍ରମ ମହଁ ଆୟୋ ।।
ବିକଲ ଭୟେ ଅତି ଭରତ ରୁଦନ କରି ଇତଉତ ଧାବେଂ ।
ଲୈ ଲୈ ବାକୋ ନାମ କରୁନ ସ୍ୱର ତାହି ବୁଲବେଁ ।।
ହାୟ ଅଭାଗୋ ହୌଂ ଲୁଟୟୋ, ଆଜୁ କହାଁ ମମ ସୁତ ଗୟୋ
କୋ କରି କୀଡା ଦେହୁ ସୁଖ, ଜଗ ବା ବିନ ସୂନୋ ଭୟୋ

ମନୁଷ୍ୟର ଯାହା ଉପରେ ଆସକ୍ତି ହୋଇଯାଏ, ତାହା ପାଇଁ ସବୁକିଛି କରିବାକୁ ସେ ପ୍ରସ୍ତୁତ ହୋଇଯାଏ । ଏହିଭଳି କେତେ ଉଦାହରଣ ପ୍ରତ୍ୟକ୍ଷ ଭାବରେ ଦେଖିବାକୁ ମିଳେ ଯେ ସାଧାରଣ ସ୍ତ୍ରୀ ଲୋକଙ୍କ ପାଇଁ ବଡ଼ ବଡ଼ ସମ୍ରାଟ୍‌ମାନେ ନିଜ ଇଚ୍ଛାରେ ରାଜ ସିଂହାସନକୁ ତ୍ୟାଗକରି ଦେଇଛନ୍ତି । କାହା କାହା ଉପରେ ଆସକ୍ତ ହୋଇ ବଡ ବଡ ମହାତ୍ମା ନିଜର ପ୍ରତିଷ୍ଠା ହରାଇ ଭ୍ରଷ୍ଟ ହୋଇଯାଇଛନ୍ତି । ମନ ଯାହା ସହିତ ମାନିଯାଏ, ତାହାଠାରୁ ଅଧିକ ସ୍ନେହପ୍ରଦ ସଂସାରରେ ଆଉ କେହି କେହି ଦେଖାଯାଏନି । ତାହା ନ ଦେଖିବା ପର୍ଯ୍ୟନ୍ତ

ଆଖି ପିଛୁଡ଼ା ପଡ଼େନାହିଁ, ତାର ସଙ୍ଗ ବ୍ୟତୀତ ସଂସାର ଶୂନ୍ୟ ଦେଖାଯାଏ, ଏହିପରି ଗୋଟିଏ ନୁହଁ ଅନେକ ଉଦାହରଣ ଅଛି ଯେ ଯାହାପ୍ରତି ଯାହାର ଆସକ୍ତି ବଢ଼ିଯାଏ, ତାହାର ମୋହବଶହେତୁ ସେ ଜୀବନ ମଧ୍ୟ ଦେଇଦିଏ । ତାହାର ପ୍ରତ୍ୟେକ କାର୍ଯ୍ୟ ହୃଦୟକୁ ଭଲଲାଗେ, ତାର ସ୍ମୃତିରେ ମିଠା ମିଠା ମାଦକତା ରହେ । ତାହାର ସମସ୍ତ କଥା ମିଶ୍ରିଠାରୁ ମଧ୍ୟ ଅଧିକ ମିଠାଲାଗେ ।

ଶ୍ରୀ ଶୁକଦେବ କହୁଛନ୍ତି— "ରାଜନ୍, ଯେତେବେଳେ ଭରତଙ୍କର ହୃଦୟ ହରିଣବାଳକ ପ୍ରତି ଅତ୍ୟନ୍ତ ଆସକ୍ତ ହୋଇଗଲା ସେତେବେଳେ ଦିନେ ଦୈବୀ ପ୍ରଭାବ ହେତୁ ହରିଣ ଛୁଆଟି କେଜାଣି ଆଉ ଫେରିଲା ନାହିଁ । କେଉଁଆଡ଼େ ଚାଲିଗଲା । ଭରତ ଆସନରୁ ଉଠି ଆଶ୍ରମର ଚାରିଆଡ଼େ ଦୃଷ୍ଟି ପକାଇଲେ, ମାତ୍ର ହରିଣପିଲାର ପତ୍ତା ମିଳିଲା ନାହିଁ । ତାଙ୍କର ମୁହଁ ଫିକା ପଡ଼ିଗଲା । ଦୌଡ଼ିକରି ଏଆଡ଼େ ସେଆଡ଼େ ଗଲେ, ଏଠାରେ ସେଠାରେ ଖୋଜିଲେ, ହରିଣ ରାଜକୁମାରର ପତ୍ତା କେଉଁଠାରେ ମିଳିଲା ନାହିଁ । ଶଙ୍କିତ ହୃଦୟରେ ଭରତ ଗଣ୍ଡକୀ ନିକଟକୁ ଗଲେ । ସେଠାରେ ମଧ୍ୟ ତାଙ୍କର ପିଲାକୁ ଦେଖିଲେ ନାହିଁ । କ୍ଷଣକ୍ଷଣକେ ତାଙ୍କର ଅଧିରତା ବଢ଼ିବାକୁ ଲାଗିଗଲା । ପିଲାକୁ ନଦେଖି ସେ ବ୍ୟଗ୍ର ହେବାକୁ ଲାଗିଲେ । ଚିତ୍ତ ଚଞ୍ଚଳ ହୋଇଉଠିଲା, ବୁଦ୍ଧିଜ୍ଞାନ ଲୋପ ପାଇଯାଇଥିଲା । ପ୍ରେମରେ ଅନିଷ୍ଟ ହେବାର ଶଙ୍କା ପ୍ରତ୍ୟେକ ମୁହୂର୍ତ୍ତରେ କଷ୍ଟ ଦିଏ । ବର୍ତ୍ତମାନ ମନ ଭିତରେ ଅନେକ ତର୍କବିତର୍କ ହେବାକୁ ଲାଗିଲା । କରୁଣା ହେତୁ ହରିଣ ବାଳକର ବିରହରେ ବ୍ୟାକୁଳ ହୋଇ ସେ ବଡ଼ ବିଚିତ୍ର ବିଚିତ୍ର କଥା ଚିନ୍ତା କରିବାକୁ ଲାଗିଲେ । ଧନ ନଷ୍ଟ ହେବା ହେତୁ କୃପଣ ଯେପରି ଦୁଃଖିତ ହୁଏ ଧନୀ ଯେପରି ନିଜର ସର୍ବଗୁଣ ସମ୍ପନ୍ନ ଏକମାତ୍ର ପୁତ୍ରର ମୃତ୍ୟୁରେ ଅଧିର ହୁଏ, ମାତୃସ୍ତନ ନିର୍ଭରଶୀଳ ବାଳକ ଯେପରି ମାତା ବିଚ୍ଛେଦରେ ବ୍ୟାକୁଳିତ ହୁଏ, ମାଛ ପାଣିରୁ ଅଲଗା ହେବାରୁ ଯେପରି ଛଟପଟ ହୁଏ, ସର୍ପ ମଣି ବ୍ୟତୀତ, ପ୍ରିୟା ପ୍ରିୟତମ ବ୍ୟତୀତ ଦୁଃଖିତ ହେବାପରି ରାଜର୍ଷି ସେହି ମୃଗବାଳକ ବ୍ୟତୀତ ଦୁଃଖିତ ହୋଇଗଲେ ।

ସେ ଭାବିଲେ—"ମୋର କିଛି ଭୁଲ ହୋଇଯାଇଛି ବୋଧହୁଏ, ତେଣୁ ସେ ମୋତେ ଛାଡ଼ି ଚାଲିଗଲା । କ'ଣ କାମ ଏମିତି ମୁଁ କରିଦେଲି (ସକାଳଠାରୁ ଦ୍ୱିପହର ପର୍ଯ୍ୟନ୍ତ କଥା ଚିନ୍ତାକରି ) ଓହୋ ! ଆଜି ସକାଳୁ ମୁଁ ତା ପାଇଁ ଘାସଆଣି ନଥିଲି, ପାଣି ପିଇବା ବେଳେ ମଧ୍ୟ ଡେରି କରିଥିଲି । ମୋର ଦୋଷ ଅଛି । ସେ ତ ନିସହାୟ ଶିଶୁଟି ବିଚରା ଦୀନ ଦୁଃଖି, ତାହାର ମା ମରିଯାଇଛି । ସେ ସବୁଆଡ଼ୁ ନିରାଶ୍ରୟ ହୋଇ ମୋର ଆଶ୍ରୟ ନେଇଥିଲା, ସେ ମୋତେ ବିଶ୍ୱାସ କରିଥିଲା । ମୁଁ ଏମିତି ବ୍ୟାଧହେଲି ଯେ ବିଶ୍ୱାସ ଜନ୍ମାଇ ତାକୁ କଷ୍ଟ ଦେଲି, ତା

ସମ୍ଭବତ ବିଶ୍ୱାସଘାତକତା କଲି । ଏହା ନୀଚ କାର୍ଯ୍ୟ କରିବାପରି ହେଲା, କିନ୍ତୁ ସେ ଥିଲା ସତ୍ପୁରୁଷପରି ସାଧୁ ସ୍ୱଭାବର ସାଦାସିଧା ବାଳକଟିଏ, ସେ ନିଶ୍ଚିତ ମୋତେ କ୍ଷମା କରିଦେବ । ସେ ମୋର ଅପରାଧକୁ ଦୃଷ୍ଟି ନଦେଇ ଲେଉଟି ଆସିବ (ପୁଣି ନିଜକୁ ନିଜେ ଚକିତହୋଇ କହିଲେ) ଫେରି ଆସିବ । ଫେରି ଆସିବ । କ'ଣ ସତରେ ଲେଉଟି ଆସିବ ? କ'ଣ ସତରେ ମୁଁ ଏହି ଆଖିରେ ମୋର ହରିଣ ରାଜକୁମାରକୁ ଆଶ୍ରମ ନିକଟରେ କୋମଳ ଦୂର୍ବାଦଳ ଖାଉଥିବାର ଦେଖିବି ? କ'ଣ ସତରେ ସେ ମୋତେ ତାର ଶ୍ରେଷ୍ଠ ଶ୍ରେଷ୍ଠ ଶିଙ୍ଗରେ ମୋର ଶରୀରରେ ମୁଣ୍ଡି ଆମାରି ମୋତେ କରୁ କୁତୁ କରିବ । ତାର ଶିଙ୍ଗର ସ୍ପର୍ଶ କେତେ ସୁନ୍ଦର, କୋମଳ ଏବଂ ମୃଦୁ ସେ କେତେ ଖସିଲେ ମୋର ଶରୀରରେ କୋଟିଯାଏ ।"

ସ୍ନେହଭରା ହୃଦୟ ଆଶଙ୍କାରେ ପୂରି ଯାଉଥିଲା, ଶେଷରେ ଭରତ ପୁଣି ଭାବିବାକୁ ଲାଗିଲେ—"ମୋର ବହୁ ଅପରାଧ ହୋଇଥାଉ ମାତ୍ର ତାର ଏତେ ସୁନ୍ଦର ଏବଂ ଭଦ୍ର ସ୍ୱଭାବ ଅଟେ ଯେ, ସେ କେବେହେଲେ ମୋତେ ସ୍ୱଇଚ୍ଛାରେ ତ୍ୟାଗକରି ପାରିବ ନାହିଁ ଯଦିଓ ସେ ପଶୁଯୋନିରେ ଜନ୍ମ ହୋଇଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ତା'ର ବାଲ୍ୟସୁଲଭ ଚପଳତା ଯାଇନଥିଲା । ହରିଣମାନେ ସ୍ୱଭାବରେ ଚପଳ, ତା ଉପରେ ସେ ଏପର୍ଯ୍ୟନ୍ତ ଥିଲା ପିଲା । କେବେ କେବେ ସେ ବାଳକ ସୁଲଭ ଚପଳତା ଦେଖି ନାଚେ, କ୍ରୋଧେ ସେତେବେଳେ ମୁଁ ତାକୁ ଗାଳିଦିଏ । ମୋର ଗାଳି ଶୁଣି ବିନମ୍ରୀ ସୁଶୀଳ ଋଷିକୁମାର ପରି ସେ ଉଦାସ ହୋଇ ମୋର ସମ୍ମୁଖରେ ଭୟଭୀତ ହୋଇ କାନ ତଳକୁ କରି ଚୁପ୍‌ଚାପ ଠିଆ ହୋଇଥାଏ, ସେତେବେଳେ ମୁଁ ତାର ମସ୍ତକକୁ ଚୁମ୍ବନ କରେ ଏବଂ ଶ୍ରଦ୍ଧାରେ କହେ—ପୁଅ ! ଦେଖ ଭଲ ପିଲା ଗଣ୍ଡଗୋଳ କରନ୍ତି ନାହିଁ । ଆଜି ଫଳ ଖାଇଯା, ସେ ମୋ କୋଳରେ ବସି ସେମାନଙ୍କ ଫଳ ଖାଇଦିଏ । ସେ ମୋତେ କେବେ ହେଲେ ଦୁଃଖ ଦେଇ ଯାଏନାହିଁ । ନିଶ୍ଚିତ ଭାବେ ତାକୁ କୌଣସି ବ୍ୟାଘ୍ର ଖାଇ ଯାଇଛି । ହାୟ ! ମୋର ପିଲାକୁ ଖାଇବା ସମୟରେ ସିଂହକୁ ଦୟା ଆସିଲା ନାହିଁ ! ଯେତେବେଳେ ସେ ତା'କୁ ପଞ୍ଜାରେ ଦବେଇକରି ମାରିଥିବ, ତେବେ ସେ କେତେ ଛଟପଟ ହୋଇ ନଥିବ । ଏହା ଭାବି ଭାବି ଭରତ କାନ୍ଦିବାକୁ ଲାଗିଲେ ।

ଶ୍ରୀ ଶୁକ କହିଲେ—"ରାଜନ ! ଆଶା ବଡ଼ ବଳବତୀ ଅଟେ, ମନୁଷ୍ୟ ଆଶାର ଭରସାରେ ବଞ୍ଚେ, ଭରତଙ୍କ ହୃଦୟରେ ପୁଣି ଆଶା ଜନ୍ମିଲା । ସେ ଭାବିବାକୁ ଲାଗିଲେ—କେହି ହୁଏତ ତାକୁ ମାରି ନଥିବେ, କୌଣସି ହରିଣ ଦଳ ସହିତ ଦୂରକୁ ଚାଲି ଯାଇଥିବ । ସନ୍ଧ୍ୟା ହେବା ମାତ୍ରେ ପୁଣି ଫେରିକରି ଆସିବ । (ଆସିବାର ଭାବନା ଉଦ୍ରେକ ହେବା ମାତ୍ରେ ତାଙ୍କର ହୃଦୟ ପୂର୍ଣ୍ଣ ହୋଇ

ଗଲ୍ଲ ଏବଂ ସେ ଭାବିବାକୁ ଲାଗିଲେ) ଆହା, ସେ ମୁହୂର୍ତ୍ତିଟି କେଡ଼େ ଶୁଭ ନହେବ ଯେତେବେଳେ ମୋଠାରୁ ବିଚ୍ଛିନ୍ନ ହୋଇଥିବା ବାଳକ ଆସି ମୋ ସହିତ ପୁଣି ମିଶିବ । ପୁଣି ଏଠାକୁ ଆସି ନିଜର ବାଲକ୍ରୀଡା ପ୍ରଦର୍ଶନ କରି ମୋର ମନକୁ ପ୍ରସନ୍ନ କରିବ । ତାର ପ୍ରତ୍ୟେକ କଥା କେତେ ସୁନ୍ଦର ଏବଂ ପ୍ରେମପୂର୍ଣ୍ଣ । ମୁଁ କେବେ କେବେ ତାକୁ ଭୁଲାଇବା ପାଇଁ ଚକ୍ଷୁ ଡ଼ୋଳା ଭିତରେ ଆଖି ବନ୍ଦକରି ଧ୍ୟାନରେ ବସିବାର ଢଙ୍ଗ କରେ । ଯଦିଓ ମନରେ ସେ ମୋର ରହିଥାଏ, ମାତ୍ର ଉପରକୁ ସମାଧିର ଭାବ । ସେ ପଛରୁ ଧିରେ ଧିରେ ଲୁଚି ଲୁଚି ଆସି ମୋର ଦେହରେ ମୁଣ୍ଡ ମାରେ ଏବଂ ତାର ବଡ଼ ବଡ଼ ପ୍ରେମପ୍ଲାବିତ ଆଖିରେ ବାରମ୍ବାର ମୋର ମୁହଁକୁ ଚାହେଁ । ଯେତେବେଳେ ମୁଁ ହସି ଉଠେ ସେ ମୋର ବକ୍ଷଳରେ ନିଜର ମୁହଁ ଲୁଚାଇ ଦିଏ । ମୋର କୋଳରେ ଲୋଟି ପଡେ । କେବେ କେବେ ପଶୁ ହୋଇ-ଥିବା ହେତୁ ଯଜ୍ଞ ସାମଗ୍ରୀକୁ ଭୁଲରେ ଶୁଙ୍ଘି ପକାଏ କିମ୍ବା ଶାଗୁଆ କୁଶକୁ ଚୋବାଇ ପକାଏ, ତେବେ ମୁଁ ତାକୁ ଧମକାଇ ଦିଏ, କ'ଣରେ ତୋର ଏତିକି ଜ୍ଞାନ ହେଉନାହିଁ, ଯଜ୍ଞ ସାମଗ୍ରୀ ଅଣ୍ଠେଇ ତାକୁ କାହିଁକି ଅଇଁଠା କରିଦେଲୁ । କୁଶକୁ କାହିଁକି ଅପବିତ୍ର କରିଦେଲୁ । ସେତେବେଳେ ସେ ଅପରାଧି ପରି ଡରିଯାଇ ମୋ ଠାରୁ ଦୂରହୋଇ ଯାଇ ଲଜ୍ଜାଭାବ ପ୍ରଦର୍ଶନ କରି ଉଦାସ ହୋଇଯାଏ । କେତେ ସୁଶୀଳ ଥିଲା, ସେହି ହରିଣ ପୁତ୍ରକ । ମୋ ଉପରେ ତାର କେତେ ମମତା ଥିଲା । ମୋତେ ସେ କେତେ ଚାହୁଁଥିଲା, ଯଦି କେଉଁଠାରେ ଆଜି ମୋର କଥା ଶୁଣୁଥାଉ, ତେବେ ଶୀଘ୍ର ଆସି ମୋପରି ଦୁଃଖୀକୁ ସୁଖୀ କର ।"

ହାୟ ! ଖରବେଳ ଗଡ଼ିଗଲା । ଭଗବାନ ସୂର୍ଯ୍ୟଦେବ ଦ୍ରୁତଗତିରେ ଅସ୍ତାଚଳ ଦଗରେ ଦୌଡ଼ିକରି ଯାଉଛନ୍ତି, ପଶ୍ଚିମଦିଗ ତାଙ୍କର ସ୍ୱାଗତ ସତ୍କାର ପାଇଁ ହୃଷ୍ଟ ହୋଇ ନିଜ ଅଙ୍ଗ ବସ୍ତ୍ର ଲୋହିତ ରଙ୍ଗରେ ରଞ୍ଜିତ କରିଛି, କ'ଣ ଏ ପର୍ଯ୍ୟନ୍ତ ମୋର ପିଲା ଆସିବ ନାହିଁ । କ'ଣ ସନ୍ଧ୍ୟାବେଳେ ଭାବ ସେ ଆଶ୍ରମକୁ ଲେଉଟି ଆସିବ ନାହିଁ ? ଆରେ, ମୁଁ ଏବେ ତାକୁ କେଉଁଠି ଖୋଜିବି । ସବୁଠାରେ ଖୋଜି ସାରିଲିଣି । ଯାଏ, ଦୂରଯାଏ ଯାଇ ଦେଖିଆସେ । ଏହିଭାବ ସେ ପୁନରାୟ ମୃଗପିଲାକୁ ଖୋଜିବା ପାଇଁ ବାହାରି ଗଲେ । ଆଗକୁ ଯାଇ କ'ଣ ଦେଖୁଛନ୍ତି ଯେ, ପୃଥିବୀ ଉପରେ ସେହି ହରିଣ ଖୁରର ଚିହ୍ନ ପଡ଼ିଛି । ତାକୁ ଦେଖି ରାଜର୍ଷି ବିକଳ ହୋଇ ସେହିଠାରେ ବସି ଯାଉଛନ୍ତି, ଭାବିବାକୁ ଲାଗିଯାନ୍ତି—"ଏହି ପୃଥିବୀ ଧନ୍ୟ ଯେ ଏହି ଅଳଅଳ ପୁଅର ପାଦ ଚିହ୍ନକୁ ଧାରଣ କରି ନିଜକୁ ଭାଗ୍ୟଶାଳୀ ଭାବରେ ସିଦ୍ଧ କରିଅଛି । ଶାସ୍ତ୍ରକାରମାନେ କହୁଛନ୍ତି, ଯେଉଁ ଭୂମିଉପରେ କୃଷ୍ଣ ମୃଗ ବିଚରଣ କରେ, ସେ ଭୂମିକୁ ଯଜ୍ଞଭୂମି କୁହାଯାଏ, ପରମ ପବିତ୍ର ତପୋଭୂମି ବୋଲି ମାନନ୍ତି ଅପବିତ୍ର ଦେଶରେ କୃଷ୍ଣମୃଗ ନାହାନ୍ତି ।

ଆଜି ଏହି ମୃଗର ପାଦ ଚିହ୍ନକୁ ଧାରଣ କରି ଏହି ପୃଥିବୀ ଭାଗ୍ୟବତୀ ହୋଇଗଲା । ଏହି ପୃଥିବୀ କେତେ ପରୋପକାରିଣୀ ଅଟେ । ଯାହା ଘରେ ଚୋରି ହୁଏ, ସେ ଚୋରର ପଦଚିହ୍ନକୁ ଅନୁସରଣ କରି ଖୋଜି ପକାଏ । ଆଜି ମୋର ମଧ୍ୟ ସର୍ବସ୍ୱ ଲୁଣ୍ଠନ ହୋଇ ଯାଇଛି । ମୁଁ ମଧ୍ୟ ଆଜି କାଙ୍ଗାଳୀ, ମୋର ସମ୍ପତ୍ତିକୁ ମଧ୍ୟ କାଳ ରୂପକ ଚୋର ମୋଠାରୁ ଛଡ଼ାଇ ନେଇଛି, ଏହି ପୃଥିବୀ ଦୟାକରି ତାକୁ ଖୋଜିବାରେ ସାହାଯ୍ୟ କରୁଛି, ମୋର ଧନ ଯେଉଁ ବାଟ ଦେଇ ଯାଇଛି ତାହାର ଠିକଣା ସେ କହି ଦେଉଛି ।

ଅଂଶୁମାଳୀ ଭଗବାନ୍ ଧନଙ୍କର ଦନ୍ଦସାମ୍ଭ ପରିଶ୍ରମ କରିବା ହେତୁ ପ୍ରିୟାର ଅରୁଣ ଅଞ୍ଚଳରେ ମୁହଁ ଢାଙ୍କି ଶୋଇ ଯାଇଛନ୍ତି । ଆକାଶକୁ ଏକାକୀ ଭାବି ନିଶାରାଜ ନିଜର ପ୍ରାଣେଶଙ୍କୁ ପ୍ରତୀକ୍ଷାକରି ଆସି ଉପସ୍ଥିତ ହୋଇଛନ୍ତି, ଏହି ସମୟରେ ହସି ହସି ତରୁଣୀଚନ୍ଦ୍ର ଉଦୟ ହେଲେଣି । ତାହାଙ୍କୁ ଦେଖି ଭରତ ଆନନ୍ଦିତ ହୋଇ ଉଠିଲେ । ତାଙ୍କର ଶରୀରରେ ମୃଗଚିହ୍ନ ଦେଖି ସେ ପ୍ରସନ୍ନତାରେ ଉତ୍ଫୁଲ୍ଲିତ ହୋଇ ଉଠିଲେ, ଅତ୍ୟନ୍ତ ଉଲ୍ଲସିତ ସ୍ୱରରେ କହିଲେ—"ଚନ୍ଦ୍ରଦେବ ! ତୁମେ ଧନ୍ୟ, ତୁମେ ବଡ଼ ପରୋପକାରୀ। ତୁମେ ସମସ୍ତଙ୍କୁ ସୁଗନ୍ଧ ଶୀତଳ ଏବଂ ଶାନ୍ତିକର କରିଛ । ତୁମେ ମୋର ପିଲାଟିକୁ ଲୁଚାଇ ଦେଇଛ । ତୁମେ ଠିକ କରିଛ; ବିଚରା ମାତୃହୀନା ଥିଲା, ବଣରେ ଏକା ଏକା ବୁଲୁଥିଲା; ତୁମେ ଦୟାପରବଶ ହୋଇ ତାକୁ ନିଜର କରି ନେଇଛ । ସାଧୁମାନଙ୍କର ସ୍ୱଭାବ ଏହିପରି; ଦେଖ ମୋର ମୃଗଶିଶୁକୁ ପଥଭୁଲା ଭାବି ପରୋପକାରୀ କାରଣରୁ ନିଜର କୋଳରେ ରଖି ଦେଇଛ ଏବଂ ପୁତ୍ର ସ୍ନେହରେ ଦୁଃଖିତ ମୁଁ ଭାଗ୍ୟହୀନ ଦୁଃଖାନଳରେ ଜଳି ଅଶାନ୍ତ ହୃଦୟରେ ମନ୍ଦମତିକୁ ନିଜର ଶୀତଳ, ଶାନ୍ତି ସ୍ନେହମୟୀ ଏବଂ ମୁଖପାଣି ସଦୃଶ୍ୟ ଅମୃତମୟ କିରଣ ଦ୍ୱାରା ଅମୃତ ସିଞ୍ଚିତକରି ସୁଖୀ ଏବଂ ଶାନ୍ତ କରୁଛ ।"

ଏହା ଶୁଣି ମହାରାଜ ପରୀକ୍ଷିତ କହିଲେ—"ପ୍ରଭୋ ! କ'ଣ ମନୁଷ୍ୟ ମୋହହେତୁ ଏଭଳି ବୋକା ହୋଇପାରେ ? ସାଧାରଣ ଲୋକଙ୍କ କଥା ଛାଡ଼ି ଦିଅନ୍ତୁ । ସେମାନେ ଅବିବେକ ହେତୁ ମୋହ ମମତାରେ ପଶି ରହନ୍ତି ମାତ୍ର ଏତେ ବଡ଼ ବିବେକୀ, ଜ୍ଞାନୀ, ଧ୍ୟାନୀ, ତେଜସ୍ୱୀ, ତପସ୍ୱୀ ଭରତ ଗୋଟିଏ ହରିଣ ପିଲା ପଛରେ ଏତେ ଅଧୀର କାହିଁକି ହେଲେ ?"

ଏହା ଶୁଣି ଦୁଃଖିତ ହୃଦୟରେ ଶ୍ରୀ ଶୁକ କହିଲେ—"ମହାରାଜ ! ଏ ବିଷୟରେ ମୁଁ ଏବେ କଣ କହିବି । ଏହା କୁହାଯାଇ ପାରେ ଯେ ତାଙ୍କର କୌଣସି ଅତ୍ୟନ୍ତ ଗର୍ହିତ ପ୍ରାରବ୍ଧ କର୍ମ ମୃଗରୂପରେ ବଣରେ ତାଙ୍କର ତପସ୍ୟାକୁ ବିଘ୍ନ

କରିବା ପାଇଁ ଆସି ଉପସ୍ଥିତ ହେଲେ । ନରେନ୍ଦ୍ର ପରମ ଧାର୍ମିକ, ସୁଶୀଳ ସଦାଚାର ନଜର ଜନ୍ମିତ ପୁତ୍ରମାନଙ୍କୁ ସେ ମୋକ୍ଷ ମାର୍ଗରେ ବିଘ୍ନଭାବି ତୃଣ ପରି ତ୍ୟାଗକରି ଚାଲି ଆସିଥିଲେ, ତାଙ୍କର ଅନ୍ୟ ଜାତିର ଗୋଟିଏ ପଶୁ ସନ୍ତତି ଏପରି ମୋହ କପରି ବା ହୋଇ ପାରିବ ? ଏହା ସବୁ ଦୈବର ବିଡ଼ମ୍ବନା ଅଟେ । ପ୍ରାରବ୍ଧ ଚକ୍ର ଅଟେ । ଭାଗ୍ୟର ଖେଳ । ଲଲାଟର ଦୁର୍ନିବାର ରେଖାର ଫଳ । ପୂର୍ବଜନ୍ମ କର୍ମର ପରିପକ୍ୱ ପରିମାଣ ଅଟେ । ମହାରାଜ ! ସେହି ମୃଗରେ ମୋହିତ ହୋଇ ଭରତ ସମସ୍ତ ଜ୍ଞାନ, ଧ୍ୟାନ, ସେବା, ସଂଯମ, ଯମ ନିୟମ ଇତ୍ୟାଦିକୁ ଭୁଲି ଗଲେ । ବର୍ତ୍ତମାନ ତାଙ୍କର ଏକମାତ୍ର ଜପ ଥିଲା, ହାୟ ମୋର ମୃଗଶାବକ । ହାୟ ମୋର ହରିଣ ରାଜକୁମାର ! ଏହା ଭାବି ଭାବି ସେ ବିକଳ ହୋଇଗଲେ, ମୂର୍ଚ୍ଛିତ ହୋଇ ତଳେ ପଡ଼ିଗଲେ ।"

## ଛପ୍‌ପୟ

"କୈସେ ତବକେ ଗୟେ କରିକ୍ୟୋ କାହୁ ନେ ଟୋନା
ଅତି ସୁଧୋ ଅତି ସରଲ ସୁଧର ଥୋ ମେରୋ ଛୋନା ।
କରିକେ କ୍ରୀଡ଼ା ମଧୁର ମୋଇ ମୃଗ ବାଲ ରିଝାବନ
ଚକିତ ଚିତ୍ତତେ ଆଇ ଅଙ୍ଗ ମେରେ ଲପଟାଡନ ।
ହାୟ ! କବହୁଁ ପୁନି ଆଇକେ, ଭୁବ ଯହଁ ।ଥୋ ଚରେଗୋ
ବା ଫ ରି କୈସେ ବାଲବତ, ମମ ସୁତ କ୍ରୀଡ଼ା କରେ ଗୋ ।"



# ଭରତଙ୍କର ମୃଗମୋହରେ ମୃତ୍ୟୁହୋଇ ମୃଗଶରୀରେ ଜନ୍ମ

"ଅହଂ ପୁରା ଭରତୋ ନାମ ରାଜା
ବିମୁକ୍ତ ଦୃଷ୍ଟଶ୍ରୁତ ସଙ୍ଗବନ୍ଧଃ ।
ଆରାଧନଂ ଭଗବତ ଇହମାନୋ
ମୃଗୋଽଭବଂ ମୃଗସଙ୍ଗାଦ୍ଧତାର୍ଥଃ ।।"

( ଭାଗବତ ୫-ସ୍କନ୍ଧ ୧୨-ଅଧ୍ୟାୟ ୧୪-ଶ୍ଳୋକ )

## ଛପ୍ପୟ

"ଇହି ବିଧି ବ୍ୟାକୁଳ ଭରତ ଫିରେ ବନ ମାରେ ମାରେ ।
ମିଲେ୍ୟା ନ ମୃଗ ବଚ୍ଚୁ ଖୋଜେ ବନରେ ଭଟକ୍ୟୋ ଦୁଖାରେ ।।
ଇତନେ ହି ମହଁ ଅନ୍ତକାଳ ନୃପ କୋ ନିୟରାୟୋ ।
ଭୂପ ମୃତ୍ୟୁ କେ ସମୟୁ ହରିନ ଫିର ଆଶ୍ରମ ଆୟୋ ।।
ଦଶା ଦେଖି ଶିଶୁ ସହମି କେ, ସୁତ ସମାନ ସେବତ ସତତ ।
ମୃଗ ଘଟକେ ଫିର ଦୁଃଖିତ ଅତ, ଭରତ ଧ୍ୟାନ ବାକୋ କରତ ।।"

ଏହି ଜଗତରେ ଏହି ମୋହ ଜାଲ ନଥିଲେ, ଜୀବର କେବେହେଲେ ପୁନରାଗମନ ପୁନର୍ଜନ୍ମ ହୁଅନ୍ତା ନାହିଁ । ମୋହବଶରେ ପ୍ରାଣୀକୁ ପୁନଃ ପୁନଃ ଜନ୍ମଧାରଣ କରିବାକୁ ପଡ଼େ । ମୋହବଶ କାରଣରୁ ଜୀବକୁ ଚଉରାଶୀ ନର୍କରେ ବିବଶ ହୋଇ ବୁଲିବାକୁ ପଡ଼େ । ମୋହ ଏହିପରି ମିଠା ଦୁଃଖ ସୁଖରେ ବନ୍ଧା ହୋଇଥିବା ବନ୍ଧନ ଅଟେ, ତାକୁ ଛିଣ୍ଡାଯାଇ ପାରେନା କିମ୍ବା ସ୍ୱଇଚ୍ଛାରେ ବନ୍ଧା

ଯାଇ ପାରେ ନାହିଁ । ଆମେ ମନ୍ତ୍ରମୁଗ୍ଧ ଭାବରେ କୌଣସି ପରିଣାମର ବିଚାର ନକରି ସେଥିରେ ବାନ୍ଧି ହୋଇ ପଡୁ ଏବଂ ପରେ ଅନୁତାପ କରୁ । ଏହାର ନାମ ହେଉଛି ମାୟା ଏବଂ ମୋହ କ୍ଷୟର ନାମ ମୋକ୍ଷ ଅଟେ । ଏହା ବନ୍ଧନ ଏବଂ ମୋକ୍ଷର ନିଶ୍ଚିତ ସିଦ୍ଧାନ୍ତ ଅଟେ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଭରତଙ୍କର ସେହି ହରିଣଟି ଯୁବକ ହୋଇ ଯାଇଥିଲା । କୌଣସି ହରିଣୀର ଫାନ୍ଦରେ ପଶିଯାଇ ନିଜର ପାଳକଙ୍କୁ ଭୁଲିଯାଇ ମୋହରେ ମଦମତ୍ତ ହୋଇ ତାର ପଛେ ପଛେ ଚାଲି ଯାଇଥିଲା । ସଂସାରରେ ପ୍ରେମ କ'ଣ ? ସବୁଠାରେ ସ୍ୱାର୍ଥ ହିଁ ପୂରି ରହିଛି । ଯେ ପର୍ଯ୍ୟନ୍ତ ପାଖରେ ଅର୍ଥ ଅଛି, ଯୌବନ ଅଛି, ସେ ପର୍ଯ୍ୟନ୍ତ ସବୁ ଉତ୍ତମ, ଯେଉଁଠି ପଇସା ସରିଯାଏ, ଯୁବାବସ୍ଥା ଶେଷ ହେଲା, କିଏ କାହାର ପତି, କିଏ କାହାର ପତ୍ନୀ ! ପିତା ଯେ ପର୍ଯ୍ୟନ୍ତ ପାଳେପୋଷେ ସେ ପର୍ଯ୍ୟନ୍ତ ସେ ଭଲ ଅଟେ । ଯେତେବେଳେ ସେ ଗାଳିମନ୍ଦ ଦେବା କାର୍ଯ୍ୟ କରେ, ସେ ଶତ୍ରୁ ପରି ଦେଖାଯାଏ । ଯୁବକପୁତ୍ର ବୃଦ୍ଧ ପିତାଙ୍କୁ ତ୍ୟାଗକରି ଘରୁ ବାହାରିଯାଏ । ଯେଉଁମାନଙ୍କ ମୃତ୍ୟୁରେ ଆମେ କାନ୍ଦୁ, ତାର ପ୍ରେମ ପାଇଁ ଆମେ କାନ୍ଦୁନା, ନିଜ ସ୍ୱାର୍ଥରେ ବ୍ୟାଘାତ ଘଟୁଥିବା ହେତୁ ଆମେ କାନ୍ଦଥାଉଁ । ମୋତେ ବର୍ତ୍ତମାନ କିଏ ରୋଜଗାର କରି ପୋଷିବ, କିଏ ମୋର ରକ୍ଷା କରିବ । ଏଇଥିପାଇଁ ଆମେ କାନ୍ଦୁଥାଉ ଯେଉଁ ପିତା ରକ୍ତକୁ ପାଣି କରି ନାନା ପ୍ରକାର ଦୁଃଖ ଉଠାଇ ପୁଅକୁ ପାଳେ,ସେହି ବୃଦ୍ଧ ପିତାଙ୍କୁ କୌଣସି ଅସାଧ୍ୟ ରୋଗଗ୍ରସ୍ତ ଦେଖିଦେଲେ ପୁତ୍ର ମଧ୍ୟ ତାର ମୁହଁ ବୁଲେଇ । ପିତାଙ୍କୁ ଅନାଥ ଶ୍ରମରେ ରଖାଇ ଦିଏ, କେଉଁଠି କେଉଁଠି ମଧ୍ୟ ମାରି ଦେବାର ପ୍ରଯତ୍ନ କରେ । ତଥାପି ମୋହବଶରେ ପିତା ପୁତ୍ରର ନାମ ହିଁ ସ୍ମରଣ କରେ । ମରିବା ପର୍ଯ୍ୟନ୍ତ ତାର ସୁଖକଥା ହିଁ ଚିନ୍ତାକରେ, ତାର ସମସ୍ତ ଧନ ତାଙ୍କୁ ହିଁ ସମର୍ପଣ କରେ । ହେ ମହାରାଜ ! ଏହା ହିଁ ମୋହର ମହିମା । ଭରତ ଯେଉଁ ହରିଣଟିକୁ ପୁତ୍ରଠାରୁ ବଳି ପାଳନ କରିଥିଲେ ସିଏ ଏକ ଅପରିଚିତା ସହ କାମନାର ବଶୀଭୂତ ହୋଇ ଚାଲିଗଲା । ଦୁଇ ଚାରିଦିନ ପର୍ଯ୍ୟନ୍ତ ସେ ତାଙ୍କର ସ୍ମରଣ ମଧ୍ୟ କଲାନାହିଁ । ଯେଉଁ ମୃଗଦଳରେ ସେହି ମୃଗୁଣୀ ଥିଲା, ଯେତେବେଳେ ସେହି ଦଳର ଦଳପତି ତାଙ୍କ ଦଳରେ ଗୋଟିଏ ନୂଆ ହରିଣକୁ ହରିଣୀ ସହିତ ଦେଖିଲେ ତାଙ୍କର ଈର୍ଷାହେଲା. କ୍ରୋଧ ଆସିଲା, ସେ ତାକୁ ଯୁଦ୍ଧ ପାଇଁ ଆହ୍ୱାନ ଦେଲା । ଧନ, ସମ୍ମାନ ଏବଂ ସ୍ତ୍ରୀ ପାଇଁ ଏହି ଜୀବ ପରସ୍ପର ମଧ୍ୟରେ ଲଢାଇ କରେ । ଅନ୍ୟଠାରେ ଦ୍ୱେଷ କରେ, ନିଜର ପରଲୋକକୁ ନଷ୍ଟ କରେ । ସେହି ବଡ ବଡ଼ ଲମ୍ବା ଶିଙ୍ଘବାଲା ହରିଣ ଶ୍ରେଷ୍ଠ ଶିଙ୍ଘବାଲା ଯୁବକ ହରିଣର ବଡ ଦୁର୍ଦ୍ଦଶା କଲା ଏବଂ ତାହାର ପେଟରେ ଶିଙ୍ଘ

ଭୁଷିଦେଲେ ? ତାହାର ଶରୀର କ୍ଷତବିକ୍ଷତ ହୋଇଗଲା, ଦୁଃଖରେ ତାର ପୁରୁଣା ସମୀର ମନେ ପଡ଼ିଗଲା । ସେ କ୍ଷତବିକ୍ଷତ ହୋଇ ନିଜର ଆଶ୍ରମ ଆଡ଼କୁ ଅଗ୍ରସର ହେଲା ।

ଫେରିଆସି, ହରିଣ ଯାହା ଦେଖିଲା, ସେଥିରେ ତାର ବଡ଼ ଗ୍ଲାନି ହେଲା । ଭରତ କଷ୍ଟ ନଖାଇ ନପିଇ ଦୁର୍ବଳ ଅବସ୍ଥାରେ ପଡ଼ିଥିଲେ । ମୃତ୍ୟୁର ଛାଇ ପ୍ରଭୃତି ତାଙ୍କ ଉପରେ ଆକ୍ରମଣ କରି ସାରିଥିଲା । ସେ ନିଶ୍ଚେଷ୍ଟ ହୋଇ ନିଜ ଜୀବନର ଅନ୍ତିମ ମୁହୂର୍ତ୍ତକୁ ଗଣିବାକୁ ଲାଗିଥିଲେ । ପୂର୍ବ ସ୍ୱଭାବ ଅନୁସାରେ ହରିଣ ନିଜର ଜନ୍ମଦାତାକୁ ଶୁଙ୍ଘିବା ପରେ ନିଜର କଳ୍ପିତ ପୁତ୍ର ପରି ତାଙ୍କର ମୁଣ୍ଡପାଖରେ ଉଦାସ ହୋଇ ବସି ପଡ଼ିଲା । ପଶୁ ହୋଇଥିଲେ ମଧ୍ୟ ସେ ବୁଝି ପାରୁଥିଲା ଯେ ବର୍ତ୍ତମାନ ତାର ପାଳକ ପିତାର ଅନ୍ତିମ ସମୟ ଆସିଗଲା ।

ଅନ୍ୟ ପକ୍ଷରେ ଭରତ ହଠାତ୍ ନିଜର ପୁତ୍ର ସମାନ ମୃଗଶିଶୁକୁ ତାଙ୍କ ମୁଣ୍ଡ ଉପରେ ଉଦାସ ଭାବରେ ବସିଥିବାର ଦେଖି କରୁଣାରେ ବଶୀଭୂତ ହୋଇ କାନ୍ଦିବାକୁ ଲାଗିଲେ । ତାଙ୍କର କଣ୍ଠ ମୋହଭାବ ହେତୁ ରୁଦ୍ଧ ହୋଇ ଯାଇଥିଲା, ତାଙ୍କର ଗଣ୍ଡୁଷ୍ଟ କାଳରେ ସେ ଘଟଣା ସ୍ମରଣକୁ ଆସିଲା । ଯେତେବେଳେ ତାର ମା ତାକୁ ପ୍ରସବ କରି ମରି ଯାଇଥିଲା । ସେହି ମରି ଯାଇଥିବା ମୃଗୀ ମୁହଁରେ କାରୁଣ୍ୟ ଦେଖା ଯାଉଥିଲା, ସେ ନିଜର ପୁତ୍ର ପାଇଁ କେତେ ଦୁଃଖିତ ହୋଇ ମରିଗଲା । ଏହି ହରିଣଟିକୁ ମୁଁ ଭୃତ୍ୟବତ୍ ପାଳନ କରିଥିଲି । ଭଲ ହେଲା, ଶେଷ ସମୟରେ ସେ ଆସି ମୋ ପାଖରେ ପହଞ୍ଚିଲା । ସେ ସେହି ମୃଗୀ ମାଆର ଅଂଶ । ସେ ନ୍ୟାସ୍ତତଃ ମୋତେ ଦେଇ ଯାଇଥିଲା । ମୃଗୀ ମାଆର ଏହି ପିଲାଟି କେତେ ଭାଗ୍ୟବାନ, ତାକୁ ଅରଣ୍ୟରେ କେତେ ସୁଖ ମିଳିଲା ।

ଏହି ପ୍ରକାର ଭାବରେ ରାଜନ ! ଏହି ମୃଗୀ ଏବଂ ତାର ପୁତ୍ର କଥା ଧ୍ୟାନସ୍ଥ ହୋଇ ରାଜର୍ଷି ଭରତ ତାଙ୍କର ଚକ୍ଷୁ ବନ୍ଦ କରୁ କରୁ ମୃଗଭାବ ହୃଦୟରେ ଧାରଣକରି ଏହି ଅସାର ସଂସାର ତ୍ୟାଗକଲେ । ସେ ଅତ୍ୟନ୍ତ ପ୍ରବଳ ବେଗଶାଳୀ କରାଳକାଳ ମଧ୍ୟରେ ଲୀନ ହୋଇଗଲେ । ତାଙ୍କର ପଞ୍ଚଭୌତିକ ଶରୀର ମୃତ ହୋଇଗଲା । ଶେଷରେ ମୃଗଧ୍ୟାନ କରିବା ହେତୁ କୌଣସି ମୃଗୀ ଗର୍ଭରେ ମୃଗଶାବକ ହୋଇ ପଶିଗଲେ । କିଛି ସମୟ ପରେ ସେହି ମୃଗ ମଧ୍ୟ ମରିଗଲା ଏବଂ ସେ ମଧ୍ୟ ସେହି ମୃଗୀ ଗର୍ଭରେ ପ୍ରବେଶ କଲା । ପ୍ରଥମେ ଭରତ ମୃଗସ୍ୱରୂପରେ ଜନ୍ମ ହେଲେ ଏବଂ ତାଙ୍କର ସେହି ସାଙ୍ଗ ହରିଣ ସେହି ମାତା ଗର୍ଭରୁ ପୁଣି ଜନ୍ମ ନେଲା ।"[୨]

ଏହା ଶୁଣି ଶୌନକ ସୂତଙ୍କୁ ପଚାରିଲେ—"ମହାଭାଗ ସୂତ ! ମୋର ଏକ ବଡ଼ ଶଙ୍କା ରହିଗଲା । ଭରତ ଶଙ୍ଖ ଶଙ୍ଖ-ଚକ୍ରଧର ଭଗବାନଙ୍କର ପୂଜା

ଆରାଧନା କଲେ ତେବେ ଏହାସବୁ ବ୍ୟର୍ଥ ହୋଇଗଲା ଏବଂ ବର୍ଷେ ଦୁଇବର୍ଷ ମୃଗ ସହିତ ସାଙ୍ଗହେବା ଫଳରେ ତାଙ୍କୁ ମୃଗ ଯୋନି ପ୍ରାପ୍ତ ହେଲା, ଏହା କିପରି କଥା ?"

ଏହା ଶୁଣି ଅତ୍ୟନ୍ତ ଗମ୍ଭୀର ସ୍ୱରରେ ସୂତ କହିଲେ—"ଭଗବନ୍ ! ପ୍ରତି ଜୀବର ସ୍ୱାଭାବିକ ପ୍ରବୃତି ଥାଏ । ବିଷୟରେ ଆସକ୍ତ ହେବା ଜୀବର ସହଜ ସ୍ୱଭାବ ଅଟେ । ଭଗବାନଙ୍କ ଆଡ଼କୁ ତାକୁ ବଡ କଷ୍ଟରେ, ଅନେକ ସାଧନା ଫଳରେ, ଅନେକ ଯୁକ୍ତି ଦ୍ୱାରା ଲଗାଇବାକୁ ପଡ଼େ । ଆପଣ ଦେଖିଲେ ନିଜେ ମଧ୍ୟ ଅନୁଭବ କରି ପାରିବେ । ଭଗବାନଙ୍କର ଛବି ପ୍ରତ୍ୟେକ ଦିନ ଦେଖୁଛନ୍ତି, ପ୍ରତ୍ୟେକ ଦିନ ତାଙ୍କର ମୂର୍ତ୍ତିକୁ ଧ୍ୟାନରେ ଧାରଣ କରୁଛନ୍ତି ତଥାପି ଚେଷ୍ଟାକରି ମଧ୍ୟ ତାଙ୍କର ଭାବମୟୀ ମୂର୍ତ୍ତୀ ହୃଦୟରେ ଅଙ୍କିତ ହୋଇ ପାରୁନାହିଁ. କେବେ ସ୍ୱପ୍ନରେ ମଧ୍ୟ ତାଙ୍କ ସ୍ୱରୂପ ଧ୍ୟାନରେ ଆସୁନାହିଁ । ଏହାର ଓଲଟା କୌଣସି ସ୍ତ୍ରୀ ଗୋଟିଏ ସୁନ୍ଦର ସୁଢଳ ପୁରୁଷକୁ କିମ୍ବା ପୁରୁଷ କୌଣସି ଲାବଣ୍ୟମୟୀ ସୁନ୍ଦରୀକୁ ଭୁଲରେ ଯଦି ଥରେ ଦେଖିଥାଏ, ଦେଖିବା ତ ଦୂରର କଥା, କେବଳ ଚିତ୍ରରେ ଦେଖିଥିଲେ ସେ ମନରେ ବଶୀଭୂତ ହୋଇଯାଏ । ଚେଷ୍ଟା କଲେ ମଧ୍ୟ ହୃଦୟରୁ ତାହା ପୃଥକ ହୁଏ ନାହିଁ । ଜାଗ୍ରତକଥା କ'ଣ କହିବା, ସ୍ୱପ୍ନରେ ମଧ୍ୟ ସେ ମନେ ପଡେ ଏବଂ କେବେ କେବେ ଚିତ୍ତ ଚଞ୍ଚଳ ହେଲେ ସ୍ୱପ୍ନଦୋଷ ମଧ୍ୟ ହୋଇଯାଏ । ସେ ସମ୍ପର୍କରେ ହୃଦୟ ଲଗାଇବା ପାଇଁ ଚେଷ୍ଟା କରିବାର କୌଣସି ଆବଶ୍ୟକତା ନାହିଁ । ମନ ଆପେ ଆପେ ସେ ଆଡେ ଚାଲିଯାଏ । ଗୁରୁକୁଳରେ ପ୍ରତ୍ୟେକ ଦିନ ନିୟମ ପୂର୍ବକ କେତେବର୍ଷ ପର୍ଯ୍ୟନ୍ତ ସାନ୍ଧ୍ୟ ଉପାସନା କରାଯାଏ । ତାହା କିନ୍ତୁ ଅଭ୍ୟାସରେ ପଡ଼େ ନାହିଁ । ମାତ୍ର ଧୂମପାନ ଇତ୍ୟାଦି ଛଅମାସ ଭିତରେ ଏଭଳି ଅଭ୍ୟସ୍ତ ହୋଇଯାଏ ଯେ ଅତ୍ୟନ୍ତ ଚେଷ୍ଟାକଲେ ମଧ୍ୟ ଛାଡ଼େ ନାହିଁ ।

ରୁଗଣ ଶରୀରକୁ ନିରୋଗ ରଖିବା ପାଇଁ ଗୁଣକାରୀ ଔଷଧର ଉତ୍କର୍ଷତାକୁ ଅତ୍ୟନ୍ତ କଷ୍ଟରେ ପିଅନ୍ତି; ମାତ୍ର ଅତ୍ୟନ୍ତ ଖରାପ ବୁଦ୍ଧିକୁ ନଷ୍ଟ କରି ଦେଉଥିବା ମଦକୁ ମଦ୍ୟପ ପୁରୁଷ କେତେ ପ୍ରେମ ଏବଂ ଉଲ୍ଲାସରେ ପିଏ । କୃଷ୍ଣକଥା ଶୁଣିବା ମାତ୍ରେ ଆଳସ୍ୟ ଆସେ, ଶରୀରରେ ଅବସନ୍ନତା ଦେଖାଯାଏ ଏବଂ ନିଦ ଆସିବାକୁ ଲାଗେ; ମାତ୍ର କାହାରି ନିନ୍ଦା କରିବା ଦରକାର ପଡ଼ିଲେ କେତେ ମନଯୋଗ ଦେଇ ଶୁଣନ୍ତି ଜଣା ପଡ଼େନାହିଁ, ସେ ସମୟରେ ନିଦ କେଉଁଆଡ଼େ ଛାଡ଼ି ପଳାଇ ଯାଏ, ଚିତ୍ତ ତନ୍ମୟ ହୋଇଯାଏ । ଇଚ୍ଛା ହୁଏ, ଏହିପରି ଅନାଦିକାଳ ପର୍ଯ୍ୟନ୍ତ ଶୁଣୁଥିବା । ଅର୍ଦ୍ଧ ରାତୀ ହେଉ ବା ପୁରା ରାତି ପାହିଯାଉ ମାତ୍ର ନିନ୍ଦା ଶୁଣିବାରେ ହୃଦୟ ପୂର୍ଣ୍ଣ ହୁଏନାହିଁ । ସେଥିରେ କିଛି ଦେବାକୁ ନେବାକୁ ପଡ଼େନାହିଁ, ମାତ୍ର

ମନର ସ୍ୱଭାବ ହେଉଛି ଲୋକନିନ୍ଦାରେ ପଶି ରହିବା । ଏହି ଜୀବ ଅନେକ ଯୋନିରେ ଭ୍ରମଣ କରୁଛି । ପ୍ରତ୍ୟେକ ଯୋନିରେ ମାଆ, ବାପ, ଭାଇ, ବନ୍ଧୁ, ସୁହୃଦ ରହିଛନ୍ତି । ଏମାନଙ୍କ ପ୍ରତି ଯଦି ବିଦ୍ୱେଷ ହୁଏ, ଏହି ଦ୍ୱେଷ ସହଜରେ ଦୂର ହୁଏନାହିଁ । ସେଥିରେ ବଶୀଭୂତ ହୋଇ ଜୀବର ପ୍ରାରବ୍ଧ ହେତୁ ଯାହା ସହିତ ସଙ୍ଗ ହୁଏ, ତାହା ସହିତ ମଧ୍ୟ ରାଗଦ୍ୱେଷ କରେ । ନିଜର ପ୍ରତିକୂଳ ଆଚରଣ କରୁଥିବା ଲୋକ ସହିତ ପ୍ରାୟତଃ ଦୋଷ ହୁଏ । କାରଣ ଜୀବ ବାରମ୍ବାର ମରେ ଏବଂ ବଞ୍ଚେ । ମହାରାଜ ! ରାଜର୍ଷି ଭରତଙ୍କୁ ମଧ୍ୟ ସଂସ୍କାର ହେତୁ ହରିଣ ହେବାକୁ ପଡ଼ିଲା ।

ଭଗବାନଙ୍କର ଭଜନ ବ୍ୟର୍ଥ ଯିବା କଥା ଯାହା କହିଲେ, ଭଗବାନଙ୍କ ଭଜନ କେବେ ବ୍ୟର୍ଥ ଯାଏନାହିଁ, କଲ୍ୟାଣ ନିମନ୍ତେ କରାଯାଇଥିବା କାର୍ଯ୍ୟ ଦୁର୍ଗତିକୁ ପ୍ରାପ୍ତ ହୁଏନି । ଯଦିଓ ଭରତଙ୍କୁ ମୃଗଶରୀର ପ୍ରାରବ୍ଧ ହେତୁ ପ୍ରାପ୍ତ ହେଲେ ମଧ୍ୟ କର୍ମ ଅନୁସାରେ ପ୍ରାପ୍ତ ହୋଇଥିଲା, ମାତ୍ର ଏବେ ମଧ୍ୟ ତାର ପୂର୍ବଜନ୍ମର ସ୍ମୃତି ଏକାଠି ରହିଥିଲା । ମୃଗ ହୋଇ ମଧ୍ୟ ସେ ଜାତିସ୍ମର ହେଲେ । ବର୍ତ୍ତମାନ ତାଙ୍କ ମନକୁ ଆସିଲା, "ଆରେ, ମୁଁ ତ ପ୍ରଥମେ ଚକ୍ରବର୍ତ୍ତୀ ରାଜା ଥିଲି ? ସମସ୍ତ ରାଜସିଂହାସନ, ଧନଧାନ୍ୟ, ସ୍ତ୍ରୀ, ପରିବାରକୁ ତ୍ୟାଗ କରି ଏଠାକୁ ଆସିଥିଲି । ଭାଗ୍ୟବଳରେ ଏକ ହରିଣ ପିଲା ସହିତ ମୋର ଯୋଗାଯୋଗ ହୋଇଗଲା । ତାହା ହେତୁ ମୋତେ ଏହି ମୃଗଶରୀର ଭୋଗ କରିବାକୁ ହେଉଛି । ଆରେ, ମୁଁ ତ ଭାଗ୍ୟ ଦ୍ୱାରା ଠକିଗଲି, ମୋତେ ମୃଗରୂପ ଭେଲିକି ଦେଖାଇ ଫସାଇ ଦେଲା, ମୋର ଆଗକୁ ଯିବାର ରାସ୍ତା ବନ୍ଦ କରିଦେଲା ।

ଶ୍ରୀ ଶୁକ କହିଲେ—"ରାଜନ୍ ! ଏହି ପ୍ରକାର ସେ ବହୁତ ବିଳାପ କରି ଯେ କୌଣସି ପ୍ରକାରରେ ନିଜର ଜୀବନ ବିତାଇବାକୁ ଲାଗିଲେ । ମହାରାଜ ! ଭଗବାନଙ୍କ ଦୟାରୁ ମୃଗ ଶରୀରରେ ତାଙ୍କର ବୋଧଶକ୍ତି ସମ୍ପୂର୍ଣ୍ଣ ରହିଲା ।

**ଛପ୍ପୟ**

**ବୁଦ୍ଧିହୁ କାଲ କରାଲ ପ୍ରବଲ ବଲଶାଲୀ ଆୟୋ ।**
**"ଦେହ ତ୍ୟାଗୀ କେ ଭରତ ଫେରି ପଶୁ କୋ ତପ ପାୟୋ ।**
**ଜାକୋ ଚିନ୍ତନ କରତ ଜୀବ ତ୍ୟାଗେ ଜା ତନକୁଁ**
**ଅପର ଜନ୍ମ ମହଁ ଯୋନି ମିଲେ ସୋଇ ଜବାନିକୁ ।**
**ଯୋଗଭ୍ରଷ୍ଟ ଭୂପତି ଭୟୋ, ମୃଗାସକ୍ତ ମନ ହୈ ଗୟୋ**
**ତାତେ ମୃଗକୀ ଯୋନି ମହଁ, ଭରତ ଜନ୍ମ ଫିରତେ ଭୟୋ ।**



# ଭରତଙ୍କ ମୃଗଶରୀର ତ୍ୟାଗ

"ଯଜ୍ଞାୟ ଧର୍ମ ପତୟେ ବିଧିନେ ପୁଣାୟ
ଯୋଗାୟ ସାଂଖ୍ୟ ଶିରସେ ପ୍ରକୃତୀଶ୍ୱରାୟଃ ।
ନାରାୟଣାୟ ହରୟେ ନମ ଇତ୍ୟୁଦାରମ୍
ହାସ୍ୟ ନ୍ମୃଗତ୍ୱମପି ଯଃ ସମୁଦାଜହାର ।।"

(ଭାଗବତ ୫-ସ୍କନ୍ଧ ୧୪-ଅଧ୍ୟାୟ ୪୫ଶ୍ଲୋକ)

## ଛପ୍ପୟ

"ବ୍ୟର୍ଥ ହୋଇ ନହିଁ ଭଜନ ତନକ ହୁ ଭୂଲେ ନାହିଁ ।
ପୂର୍ବ ଜନ୍ମ କୋ ବୃତ୍ତ ଭରତ ମୃଗ ତନକେ ମାହି ।।
କର ବହୁ ପଶ୍ଚାତ୍ତାପ ମାତୁ ହରିନ କୁ ତ୍ୟାଗୀ ।
କାଲଂଜର ଗିର ତ୍ୟାଗୀ ଭୟେ ଫିରତେ ବୈରାଗୀ ।।
ଗେ କରହିଁ ନହିଁ ଭୂଲଅବ, ନହିଁ ସଜୀବ ତୃନକୁଁ ଚରହିଁ ।
ସୁଖେ ପତ୍ତା ଖାଇକେ, ଋଷି ମୁନୀ ସମ ତପ ବ୍ରତ କରହିଁ ।।"

ବିସ୍ମୃତି ଦୁଃଖ ଏବଂ ପଶ୍ଚାତ୍ତାପକୁ କମ୍ କରିଦିଏ । ଯଦି ସଂସାରର ସମସ୍ତ ଦୁଃଖ, ସମସ୍ତ ଅପମାନ ଆମର ସଦାସର୍ବଦା ସ୍ମରଣ ରହେ ତେବେ ବଞ୍ଚିବା ଅସମ୍ଭବ ହୋଇଯିବ । ଭଗବାନ ବିସ୍ମୃତି ସୃଷ୍ଟି କରି ବହୁତ ଦୁଃଖରୁ ରକ୍ଷା କରିଦିଅନ୍ତି । ଜୀବ ଯେଉଁ ଯୋନିରେ ଜନ୍ମ ନେଲେ ମଧ୍ୟ ସେ ପୁରୁଣା କଥାକୁ ସମ୍ପୂର୍ଣ୍ଣ ଭୁଲିଯାଇ ଆନନ୍ଦ ଅନୁଭବ କରେ । କୌଣସି ରାଜାଙ୍କ ମୃତ୍ୟୁ ପୂର୍ବରୁ ଜଣାଯାଇଥିଲା ଯେ ସେ ପରବର୍ତ୍ତୀ ଜନ୍ମରେ ଘୁଷୁରି ଯୋନିରେ ଜନ୍ମଗ୍ରହଣ କରିବେ । ତେଣୁ ସେ

ନିଜର ପୁତ୍ରକୁ ଡ଼ାକି କହିଲେ—"ଦେଖ ପୁଅ ! ପ୍ରାରବ୍ଧ ହେତୁ ମୋତେ ଅମୁକ ସ୍ଥାନରେ ଘୁଷୁରି ହୋଇ ଜନ୍ମ ହେବାକୁ ପଡ଼ିବ । ମୋର ମୁଣ୍ଡରେ ଗୋଟିଏ ବଡ଼ ଧଳା ଚିହ୍ନ ଥିବ, ତୁ ଦେଖିବା ମାତ୍ରେ ମାରିଦେବୁ, ଯାହାଫଳରେ ସେହି ଘୃଣିତ ଯୋନିରେ ରହି ବିଷ୍ଠା, ଇତ୍ୟାଦି ଖାଇବାକୁ ପଡିବ ନାହିଁ, ଆଜ୍ଞାଧିନ ପୁତ୍ର କହିଲା—"ଭଲକଥା ପିତା ! ମୁଁ ସେହିଭଳି କରିବି ।" ସମୟକ୍ରମେ ରାଜା ଦେହତ୍ୟାଗ କଲେ ଏବଂ ଘୁଷୁରି ହୋଇଗଲେ । ତାଙ୍କର ପୁତ୍ରକୁ ପିତାଙ୍କ କଥା ସ୍ମରଣ ରହିଲା ନାହିଁ କିମ୍ବା ଗଣନା କରିବାରେ ବିଳମ୍ବ ହେଲା । ଏହି ସମୟ ଭିତରେ ସେହି ଘୁଷୁରି ବଡ଼ ହୋଇଗଲା, କୌଣସି ମାଈ ଘୁଷୁରି ସହିତ ତାର ସମ୍ପର୍କ ହୋଇଗଲା, ପିଲା ମଧ୍ୟ ହେଲେ । ଗୋଟିଏ ଦିନ ସେହି ରାଜାର ପୁଅ ସଂଯୋଗବଶତଃ ସେହି ଘୁଷୁରିକୁ ଘୁଷୁରାଣୀ ଏବଂ ପିଲାଙ୍କ ସହିତ ଜମିରେ ଅତି ଆନନ୍ଦରେ ମଳ ଖାଉଥିବାର ଦେଖିଲେ । ତାଙ୍କର ପିତାଙ୍କକଥା ମନେ ପଡ଼ିଗଲା । ସେ ତତ୍‌କ୍ଷଣାତ୍ ତୂଣୀରରୁ ବାଣ ବାହାର କଲେ । ଯେତେବେଳେ ସେ ଲକ୍ଷ୍ୟକରି ବାଣ ଛାଡ଼ିବାକୁ ବାହାରିଲେ, ଘୁଷୁରି ଅତ୍ୟନ୍ତ ଆକୁଳ ସ୍ୱରରେ କହିଲା-"ରାଜନ ! ବର୍ତ୍ତମାନ ଆପଣ ମୋତେ ମାରନ୍ତୁ ନାହିଁ । ବର୍ତ୍ତମାନ ମୁଁ ମୋର ଏହି ସ୍ତ୍ରୀ ଏବଂ ପିଲାମାନଙ୍କ ସହିତ ଆନନ୍ଦରେ ଅଛି, ବର୍ତ୍ତମାନ ମୋତେ ଏହି ଖାଦ୍ୟ ଅତ୍ୟନ୍ତ ସୁଖକର ଲାଗୁଛି । ବର୍ତ୍ତମାନ ମୋର ଏହି ଯୋନି ପ୍ରତି ଆସକ୍ତ ହୋଇଗଲାଣି । ବର୍ତ୍ତମାନ ମୁଁ ବିଷ୍ଠାରେ ହିଁ ସୁଖ ଅନୁଭବ କରୁଅଛି ।" ଏହି ପ୍ରକାର ଦଶା ସମସ୍ତ ପ୍ରାଣୀମାନଙ୍କର ହୋଇଥାଏ, ଯେ ଯେଉଁ ଯୋନିକୁ ଚାଲିଯାଏ, ସେ ସେହି ଯୋନିରେ ନିଜକୁ ସୁଖୀ ଭାବେ । ସେହି ଶରୀରକୁ ଛାଡ଼ିବାକୁ ଇଚ୍ଛାକରେ ନାହିଁ । କୌଣସି କୌଣସି ବଡ଼ ବଡ଼ ଜ୍ଞାନୀ ଓ ଧ୍ୟାନୀ ପୁରୁଷ କୌଣସି ଅସୁବିଧାବଶତଃ ନୀଚ ଯୋନିରେ ଜନ୍ମଲାଭ କରନ୍ତି ଏବଂ ଭଗବତ୍ ଆରାଧନାର ପ୍ରଭାବହେତୁ ତାଙ୍କ ମନରେ ପୂର୍ବଜନ୍ମ କଥା ସ୍ମରଣରେ ରହେ, ସେ ସେହି ନୀଚ ଯୋନିର ପରିସମାପ୍ତି ପାଇଁ ଅତ୍ୟନ୍ତ ଉତ୍କଣ୍ଠା ସହ ପ୍ରତୀକ୍ଷା କରନ୍ତି । ଏହିପରି ପଶୁ ଯୋନିରେ କେତେ ଜୀବ ଦେଖାଯାନ୍ତି । ଗୋଟିଏ କୁକୁରକୁ ଦେଖିଥିଲି, କେବଳ ଭଗବତ୍ ନୈବେଦ୍ୟ ବ୍ୟତୀତ ଅନ୍ୟ କିଛି ରଖିଲେ ସେ ଛୁଏଁ ନାହିଁ । କେହି ତାକୁ କହି ଦେଇଥିଲେ ଆଜି ଏକାଦଶୀ ଅଟେ । ଏଥିରୁ ଅନୁମାନ ହୁଏ ସେ ପୂର୍ବଜନ୍ମରେ କୌଣସି ସଂସ୍କାରୀ ବୈଷ୍ଣବ ରହିଥିବ, କୌଣସି ପ୍ରାରବ୍ଧ କର୍ମହେତୁ ସେ କୁକୁର ଯୋନିରେ ଜନ୍ମଗ୍ରହଣ କରିଛି । ମାତ୍ର ଉପାସନାର ପ୍ରଭାବହେତୁ ତାର ପୂର୍ବଜନ୍ମର କଥା ମନରେ ଅଛି, ଏଇହେତୁ ସେ ଜୀବନସାରା କୌଣସି ମାଈ କୁକୁର ସହିତ ସମ୍ପର୍କ ସ୍ଥାପନ କଲାନାହିଁ କିମ୍ବା ବୈଷ୍ଣବଙ୍କୁ ଛାଡ଼ିକରି କେଉଁଆଡ଼େ ଗଲାନାହିଁ କିମ୍ବା ଭଗବତ୍ ନୈବେଦ୍ୟ ଛଡା ଅନ୍ୟ କିଛି ଖାଇଲା ନାହିଁ । ଶେଷରେ ତାର ମୃତ୍ୟୁ ଅତ୍ୟନ୍ତ ଉତ୍ତମ ହେଲା ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଭରତ ବର୍ତ୍ତମାନ ମୃଗ ହୋଇ-ଗଲେ । ତାଙ୍କର ମୃଗୀ ମାଆ କାଳାଞ୍ଜର ପର୍ବତ ଉପରେ ରହୁଥିଲେ । ଜନ୍ମହେବା ମାତ୍ରେ ଭରତ ବୁଝିଗଲେ ମୋର ଯୋଗର ଅନ୍ତରାୟ ଏହି ଫଳ ଅଟେ । ମୃଗ ଶିଶୁର ସାଙ୍ଗ ହେତୁ ମୋତେ ପୁଣି ଜନ୍ମ ନେବାକୁ ପଡ଼ିଲା । ବର୍ତ୍ତମାନ ଜୀବନରେ କାହା ସହିତ କୌଣସି ସମ୍ପର୍କ ରଖିବି ନାହିଁ । ଏହି ମୃଗୀମାଆ ସହିତ ମଧ୍ୟ ମୋର କୌଣସି ପ୍ରୟୋଜନ ନାହିଁ । ଏହା ଭାବି ସେ ତା ପରଦିନ ସନ୍ଧିରେ ନିଜର ମାଆକୁ ଛାଡ଼ି ଚାଲିଗଲେ । ହରିଣ ପିଲାଟା ଜନ୍ମ ହେବା ମାତ୍ରେ ପଳାଇଯାଏ । ଭଗବାନଙ୍କର କେଡ଼େ ବିଚିତ୍ର ମହିମା । ଭଗବାନ ମାତା ଗର୍ଭରୁ ଜନ୍ମ ପରେ ପଳାଇଯିବା ପାଇଁ ତାଙ୍କୁ ଶକ୍ତି ଦେଇ ଥାଆନ୍ତି । ଭରତ ସେଠାରୁ ପଳାଇ ଆସି ସେହି ଗଣ୍ଡକୀନଦୀର କୂଳରେ ଥିବା ହରିହର କ୍ଷେତ୍ରର ଶାଳିଗ୍ରାମ ତୀର୍ଥରେ ଆସି ପହଞ୍ଚିଲେ ଯେଉଁଠାରେ ପୁଲସ୍ତ୍ୟ ଏବଂ ପୁଲହ ଋଷିଙ୍କର ଆଶ୍ରମ ଥିଲା ।"

ଭରତଙ୍କର ଏହି ମୃଗଶରୀରରେ ତାଙ୍କର ତପସ୍ୟା ଏବଂ ଆରାଧନାରେ ବିଘ୍ନ ଘଟିଥିବା ସ୍ମୃତିରେ ସେ ଅତ୍ୟନ୍ତ ଗ୍ଲାନି ଅନୁଭବ କଲେ । ସେ ବାରମ୍ବାର ପଶ୍ଚାତ୍ତାପ କରି କହିବାକୁ ଲାଗିଲେ—"ଦେଖ, ପ୍ରାରବ୍ଧ ମୋତେ କେଉଁଠାରେ ନେଇ ପକାଇ ଦେଲା । ମୋର ଆଗରେ ମନୋହର ମୃଗ ରୂପ ରଖି ମୋ ଆଗକୁ ଚାଲି ଆସିଲା । ସେ ଠକି ଦେଲା, ପରମାର୍ଥ ପଥରୁ ତ ବିଚ୍ୟୁତ କରିଦେଲା, ମୋର ସାଧନାକୁ ଭ୍ରଷ୍ଟ କରିଦେଲା । ଯେଉଁ ହୃଦୟକୁ ସଦାସର୍ବଦା ଭଗବତ ଗୁଣ କୀର୍ତ୍ତନ, ମନନ, ଅଧ୍ୟୟନ ଏବଂ ଭଗବତ ଧ୍ୟାନରେ ଲଗାଉଥିଲି, କ୍ଷଣେ ମାତ୍ର ବ୍ୟର୍ଥ ହେବାର ଦେଖି ନଥିଲି, ମୁହୂର୍ତ୍ତ ମୁହୂର୍ତ୍ତର ସଦୁପଯୋଗ କରୁଥିଲି । ସେହି ହୃଦୟ ପ୍ରାରବ୍ଧ ହେତୁ ଗୋଟିଏ ମୃଗଶିଶୁର ମୋହରେ ପଶି ଗଲା, ମୋର ସର୍ବସ୍ୱ ନଷ୍ଟ ହୋଇଗଲା । ମୁଁ ମୋର ଲକ୍ଷ୍ୟକୁ ଭୁଲିଗଲି, ଉତ୍ଥାନ ପରିବର୍ତ୍ତେ ମୋର ପତନ ହୋଇଗଲା । ବର୍ତ୍ତମାନ ଭାବିଲେ ଆଉ କଣ ହେବ; ବର୍ତ୍ତମାନ ସଦାସର୍ବଦା ଏପରି ପ୍ରଯତ୍ନ କରିବା ଉଚିତ ଯେ ଏହି ଭୁଲର ପୁନରାବୃତ୍ତି ଯେପରି ନହେଉ, ପୁଣି କୌଣସି ମୋହଜାଲରେ ପଶି ନ ଯାଏ । ଏହି ଆଖି ଠକି ଦେଇଛି । ଏହା ତୁଚ୍ଛଠାରୁ ସୁଖ ହୋଇଛି କି ନାହିଁ ନୂଆ ସୃଷ୍ଟି ପର୍କନା କରି ଦେଇଛି । ବର୍ତ୍ତମାନ ମୁଁ ଏହାକୁ ଆଉ କାହା ସହିତ ମିଳାଇବି ନାହିଁ । କାହାର ପାଖକୁ ଯିବି ନାହିଁ, କାହାକୁ ମୋ ପାଖକୁ ଡାକିବି ନାହିଁ, କେଉଁଠାକୁ ଯାଇ ଖାଇବି ନାହିଁ, କାହାକୁ ଖୁଆଇବି ନାହିଁ, କାହାକୁ ନିଜ ସୁଖ ଦୁଃଖର ରହସ୍ୟମୟ ଘଟଣା କହିବି ନାହିଁ । କାହାର ସାଂସାରିକ କଥା ଶୁଣିବି ନାହିଁ, ଏକାନ୍ତରେ ରହିବି, ନିଜର 'ରାମ' କଥା ଚିନ୍ତା କରିବି ଏବଂ ହରି ସ୍ମରଣ କରି ଆନନ୍ଦରେ ବଂଶୀ ବଜାଇବି ।" ଏହା ଭାବି ମୃଗ ଯୋନିରେ ଜନ୍ମ ନେଇଥିବା ଭରତ ଚୁପ୍‌ଚାପ ଗୋଟିଏ ଗୁମ୍ଫାରେ ରହିବାକୁ

ଲାଗିଲେ । ସେ ହିଂସା ଭୟରେ ସବୁଜଘାସ ମଧ୍ୟ ଖାଉ ନଥିଲେ । ଗଛରୁ ପଡ଼ିଥିବା ଶୁଖିଲା ପତ୍ରକୁ ଖାଇ ଜୀବନଧାରଣ କରୁଥିଲେ । କେବେ କୌଣସି ମୃଗଦଳ ମଧ୍ୟକୁ ଯାଉ ନଥିଲେ । ଚୁପ୍‌ଚାପ ଏକା ଏକା ଯାଇ ଗଣ୍ଡକୀ ନଦୀର ପାଣି ପିଉଥିଲେ । କେତେଗୁଡ଼ିଏ ଶୁଖିଲା ପତ୍ର ଖାଉଥିଲେ ଏବଂ ଶାନ୍ତ ହୃଦୟରେ ଭଗବାନଙ୍କର ଧ୍ୟାନ କରୁଥିଲେ । ତାଙ୍କର ମୃଗ ଶରୀରରେ ମୋହ ନଥିଲା, ସେ ଏହାକୁ ବୋଝ ବୋଲି ବୁଝୁଥିଲେ । କିନ୍ତୁ କଣ କରି ପାରିବେ ? ପ୍ରାରବ୍ଧ କର୍ମ ଭୋଗରେ ହିଁ କ୍ଷୟ ହୁଏ । ଭୋଗ ନକଲେ ପ୍ରାରବ୍ଧ କ୍ଷୟ ହେବାର କୌଣସି ଉପାୟ ନାହିଁ । ଅତଏବ ମୃଗ ଶରୀରରେ ପ୍ରାରବ୍ଧ କ୍ଷୟ ହେବାର ପ୍ରତୀକ୍ଷାକରି ସେ ସମୟ କଟାଇବାକୁ ଲାଗିଲେ ।

କିଛିଦିନ ପରେ ମୃଗ ଯୋନିର ପ୍ରାରବ୍ଧ ଶେଷ ହୋଇଗଲା । ଯେତେଦିନ ସେହି ବିଘ୍ନରୂପୀ ମୃଗର ସାଙ୍ଗ ହୋଇଥିଲେ, ଯେତେଦିନ ତାହାର ଲାଳନ ପାଳନ ପୋଷଣ କରିଥିଲେ, ଯେତେଦିନ ତାହା ସହିତ ସମ୍ପର୍କ ରଖି ମୋହ ବଢ଼ାଇଥିଲେ ସେତେଦିନ ମୃଗରୂପ ପାଇ ତାଙ୍କର ସଂସ୍କାର ସମାପ୍ତ ହୋଇଗଲା । ତାଙ୍କର ଜନ୍ମ ହେବାର ପ୍ରଗାଢ଼ ମୋହ ଆଦୌ ନଥିଲା । କେବଳ ଥିଲା ନୈମିତ୍ତିକ ପ୍ରାରବ୍ଧ ଏବଂ ତାହା ଅଳ୍ପ ସମୟରେ ସମାପ୍ତ ହୋଇଗଲା ।

ଭରତଙ୍କର ଭଗବାନଙ୍କର ଆରାଧନା କରିବାର ପ୍ରଭାବ ହେତୁ ତାଙ୍କୁ ଅନୁଭବ ହେଲା ଯେ ବର୍ତ୍ତମାନ ମୋର ଏହି ମୃଗ ଶରୀର ଶେଷ ହେବା ଉପରେ । ସ୍ୱଜନ ! ଭଗବାନଙ୍କର ଉପାସନା ଯେପରି ଭାବରେ କରାଗଲେ ମଧ୍ୟ, ତାହା କେବେହେଲେ ବ୍ୟର୍ଥ ହୁଏନାହିଁ । କଲ୍ୟାଣକାରୀ ଦୁର୍ଗତି କେବେହେଲେ ମିଳେ ନାହିଁ । ନଚେତ୍ ମୃଗ ଶରୀରରେ ଭଗବତ ସ୍ମରଣ ଚିନ୍ତନ ହେବା ଓ ପୂର୍ବ ଜନ୍ମକଥା ମନେରହିବା ଅସମ୍ଭବ ଅଟେ ।

ଭରତ ନିଜର ଶେଷ ସମୟ ଆସିବା ଜାଣି ଗଣ୍ଡକୀ କୂଳକୁ ଚାଲିଗଲେ । ଅଧା ଶରୀର ତାଙ୍କର ଗଣ୍ଡକୀ ଜଳରେ ଥିଲା ଏବଂ ଅଧା ଜଳ ବାହାରେ । ମୃତ୍ୟୁ ସମୟରେ କୌଣସି ତୀର୍ଥ ସ୍ଥାନରେ ଜଳାଶୟ ମିଳିଗଲେ ଏବଂ ଅଧା ଶରୀରକୁ ଜଳରେ ବୁଡ଼ାଇ ସେଠାରେ ପ୍ରାଣତ୍ୟାଗ କଲେ, ମହା ଠାରୁ ଉତ୍ତମ ମୃତ୍ୟୁ ଅନ୍ୟ କ'ଣ ହୋଇପାରେ । ବଡ ଭାଗ୍ୟରେ ଜନ୍ମ ଜନ୍ମାନ୍ତରର ସାଧନା ହେତୁ ଏଇପରି ମୃତ୍ୟୁ ପ୍ରାପ୍ତ ହୁଏ । ଶାସ୍ତ୍ରକାରମାନେ କହିଛନ୍ତି, ଯାହାର ଘରେ ଖଟ ଉପରେ ମୃତ୍ୟୁ ହୁଏ, ତାଙ୍କୁ ସେତେଦିନ ପର୍ଯ୍ୟନ୍ତ ସଂସାର ବନ୍ଧନରେ ରହିବାକୁ ପଡ଼େ, ଯେପରି ଘରେ ଖଟର ବନ୍ଧନ ଥାଏ । ଏହାର ସଂକ୍ଷିପ୍ତ ଏତିକ ବୁଝିବାକୁ ପଡ଼ିବ ଯେ ମୃତ୍ୟୁ ସମୟରେ ଘରର ସମସ୍ତ ବସ୍ତୁ ମନକୁ ଆସେ । ପରିବାରର ସମସ୍ତ

ଲୋକମାନଙ୍କ ପ୍ରତି ମମତା ଜନ୍ମେ । ଏଇଥିପାଇଁ ମୃତ୍ୟୁ ଏକାନ୍ତରେ ତୀର୍ଥରେ ହେଲେ ଶାନ୍ତି ମିଳେ, ଭଗବତ୍ସ୍ମରଣ ରହେ । ମୃଗ ଶରୀରରେ ମଧ୍ୟ ଭରତଙ୍କର ଏତେ ଜ୍ଞାନ ରହିଲା ଯେ ସେ ନିଜ ଗୁମ୍ଫାରେ ଶରୀର ତ୍ୟାଗକଲେ ନାହିଁ । ଶରୀର ତ୍ୟାଗ କରିବା ପାଇଁ ସେ ଭଗବତ୍ ଗଣ୍ଡକୀର ପବିତ୍ର କୂଳରେ ଉପସ୍ଥିତ ହେଲେ ।

ପ୍ରାରବ୍ଧ ଶେଷହେବା ମାତ୍ରେ, ତାଙ୍କର ଜୀବାତ୍ମା ଶରୀରରୁ ପୃଥକ ହୋଇଗଲା, ଜୀବନଧାରଣ କରିବାର ପ୍ରାଣବାୟୁ ସଂସ୍କାର ସହିତ ଏହି ପଞ୍ଚଭୌତିକ ଶରୀରକୁ ଛାଡ଼ି ସୂକ୍ଷ୍ମ ଶରୀର ସହିତ ଚାଲିଗଲା । ମରିବା ସମୟରେ ମୃଗ ଶରୀରରେ ମଧ୍ୟ ଭରତ ସ୍ପଷ୍ଟ ସ୍ୱରରେ ଭଗବାନଙ୍କ ନାମ ଉଚ୍ଚାରଣ କଲେ । ସେ କହିଥିଲେ, ଯଜ୍ଞ ପୁରୁଷ ଭଗବାନଙ୍କୁ ନିକଟରେ ନମସ୍କାର । ଧର୍ମର ସ୍ୱାମୀ ଧରଣୀଧରଙ୍କୁ ନମସ୍କାର । ସମସ୍ତ ପ୍ରାଣୀମାନଙ୍କର ପାପକୁ ହରଣ କରୁଥିବା ହରିଙ୍କୁ ନମସ୍କାର । ସାଂଖ୍ୟ ଶାସ୍ତ୍ରର ସିଦ୍ଧାନ୍ତକୁ ପ୍ରବର୍ତ୍ତନ କରିଥିବା ପ୍ରଭୁଙ୍କୁ ପ୍ରଣାମ । ଯୋଗମସ୍ତ ଅଖିଳେଶଙ୍କୁ ମୁଁ ପ୍ରୀତି ସହିତ ଅଭିବାଦନ କରୁଛି । ଏହି ପ୍ରକାର ଭାବରେ ସେହି ଅଖିଳ ଅନ୍ତର୍ଯାମୀ ଅଚ୍ୟୁତଙ୍କର ସ୍ମରଣ କରି କରି ସେ ତାଙ୍କର ମୃଗ ଶରୀରକୁ ତ୍ୟାଗକଲେ ।

## ଛପ୍‌ପସ୍ତ

"ଯୋ ଭୋଗେ ପ୍ରାରବଧ କର୍ମ ମୃଗ ଦେହ ପାଇକେ ।
ତଜେ୍ୟା ହରିନ ତନୁ ତୀର୍ଥ ଗଣ୍ଡୁକୀ ନୀର ନ୍ହାଇକେ ॥
ନାରାୟଣ ହରିକୃଷ୍ଣ ଯଜ୍ଞ ପତି ନାମ ଉଚ୍ଚରେ ।
ଅନ୍ତ ସମୟ ଲୈ ନାମ ପାପ ଉପ ପାତକ ଜାରେ॥
ପଛୁତାଯେ ମୃଗ ମୋହକରି, କବହୁଁ ନ ଫିରି ସୀ କରଯୋ ।
ଯହ ଭବ ଜଲନିଧି ଅନ୍ତମହିଁ, ଗୋଖୁର ସମ ସୁଖତେ ତରଯୋ ॥"



## ଭରତଙ୍କର ବିପ୍ରବଂଶରେ ଜନ୍ମ

"ସା ମାଂ ସ୍ମୃତି ମୃଗଦେହେଽପି ବୀର
କୃଷ୍ଣାର୍ଚନ ପ୍ରଭବା ନୋ ଜହାତି ।
ଅଥୋ ଅହଂ ଜନ ସଙ୍ଗାଦସଙ୍ଗୋ
ବିଶଙ୍କ ମାନୋଽବିବୃତଶ୍ଚରାମି ॥"
(ଭାଗବତ ୫-ସ୍କନ୍ଧ ୧୨-ଅଧ୍ୟାୟ ୧୫-ଶ୍ଳୋକ)

### ଛପ୍ପୟ

"ମୃଗ ତେ ବ୍ରାହ୍ମଣବଂଶ ମାହିଁ ପ୍ରକଟେ ମୁନି ଜ୍ଞାନୀ ।
ଚରମ ଦେହ ହୈ ଜିହ୍ନୀ ଭରତ ନଷ୍ଟପ୍ରାୟ କର ଜାନୀ ॥
ପିତା ପଢ଼ାବେ ବେଦ ମନ୍ତ୍ର ଦେବେ ଜପିବେ କୁଁ ।
ଅଣ୍ଡ ସଣ୍ଡ କଛୁ ବକେଁ ଜତାବେ ଜଡ଼ ଅପନେ କୁଁ ॥
ହୁତୀ ବନ୍ଧନ ଇକ ଜୁଁହେଲୀ, ଦୁସରୀ ମାଁ କେ ନୌ ତନୟ ।
କର୍ମ କାଣ୍ଡ ମେଂ ଫଁସେ ତେ, ଭରତ ଲଖେ ଜଗ ବ୍ରହ୍ମମୟ ॥"

ଆମେ କୌଣସି ଗ୍ରନ୍ଥକୁ ଅଧା ପଢ଼ି ଛାଡ଼ିଦେଲେ, ପୁଣି ଦଶ କୋଡ଼ିଏ ବର୍ଷ ପରେ ପଢ଼ିଲେ ଭୁଲି ଯିବା । ସାମାନ୍ୟ ଭାବରେ କହିଲେ ଆମର ସେହି ଗ୍ରନ୍ଥଟି ସମ୍ପୂର୍ଣ୍ଣ ଭାବରେ ବିସ୍ମୃତ ହୋଇଯାଏ, ମାତ୍ର ପୁଣି ଯେବେ ପଢ଼ିବାକୁ ଆରମ୍ଭ କରିଦିଏ ଯାହା ପ୍ରଥମେ ପଢ଼ିଥିବା. ତାହା ଖୁବ ଶୀଘ୍ର ମନକୁ ଆସିଯାଏ, ନପଢ଼ିଲେ ମଧ୍ୟ କେତେକାଂଶ ମନକୁ ସ୍ମରଣରେ ଆସେ ।

ଏହାର କାରଣ ଏହି ଯେ ଯେପରି ଆମେ ପ୍ରଥମେ ପଢ଼ିଥିବା ପାଠ ବିସ୍ମୃତ ହୋଇଯାଇଥାଏ; ତଥାପି ତାର ଛପିଛପିକା ସ୍ମୃତି ଆମର ହୃଦୟପଟରେ ଅଙ୍କିତ ହୋଇ ରହିଥାଏ । ଆମେ ଯେତେବେଳେ ପ୍ରଥମେ ପଢ଼ୁ, ସେଥିରେ ଆଦୌ ପରିଶ୍ରମ ହୁଏନାହିଁ । ପଢ଼ିତା ଦ୍ରୁତ ମନେ ରହିଯାଏ । ଏହି ପ୍ରକାର ଭାବରେ ପୂର୍ବ ଜନ୍ମରେ କରିଥିବା ସାଧନା ପରଜନ୍ମରେ ପୁଣି କରିବାକୁ ପଡ଼େନାହିଁ । ଯେପରି ବିଦ୍ୟାର୍ଥୀ ଅଧା ପାଠ ପଢ଼ି ଶୋଇଯାଏ, ତା ପରଦିନ ସକାଳୁ ତାକୁ ପଢ଼ିବା ଆବଶ୍ୟକ ପଡ଼େନାହିଁ, ଯେଉଁଠାରୁ ଛାଡ଼ିଥାଏ, ସେଠାରୁ ଆରମ୍ଭ କରେ । ଯୋଗ କରୁ କରୁ ଯଦି ମଝିରେ ବିଘ୍ନ ହେତୁ ବା ବାଧାହେତୁ ଯୋଗ ଖଣ୍ଡିତ ହୁଏ, ଯୋଗଭ୍ରଷ୍ଟ ହୋଇଯାଏ, ତେବେ ଏପରି ଯୋଗଭ୍ରଷ୍ଟ ପୁରୁଷ ପବିତ୍ର ଧର୍ମାତ୍ମା ଧନୀପୁରୁଷ ଘରେ ଜନ୍ମଲାଭ କରେ । ସାହାଫଳରେ ଶରୀର ନିର୍ବାହ କରିବା ପାଇଁ କୌଣସି ଚେଷ୍ଟା କରିବା ଆବଶ୍ୟକ ପଡ଼େନାହିଁ । ସାଧନାର ସମସ୍ତ ସାମଗ୍ରୀ ବିନା ପରିଶ୍ରମରେ ସହଜରେ ପ୍ରାପ୍ତ ହୁଏ, ଯେଉଁଥିରେ ତାର ଅସମ୍ପୂର୍ଣ୍ଣ ସାଧନାକୁ ସେ ସମ୍ପୂର୍ଣ୍ଣ କରେ କିମ୍ବା ତାହାର ଜନ୍ମ, ଶମ, ଦମ, ତପ, ସ୍ୱାଧ୍ୟାୟ, ବେଦାଧ୍ୟୟନ, ତ୍ୟାଗ, ସନ୍ତୋଷ, ତିତିକ୍ଷା, ବିନୟ, ବିଦ୍ୟା, ହ୍ରୀ, ଶ୍ରୀ, ଦୟା, ମୈତ୍ରୀ, କରୁଣା, ମୃଦୁତା ଇତ୍ୟାଦି ଗୁଣ ସମ୍ପନ୍ନ ଯୋଗୀ ବଂଶରେ ଜନ୍ମହୁଏ । ଯେଉଁ କାରଣହେତୁ ତାହାର ସାଧନାର ସଂସ୍କାର ହେତୁ ପରମ୍ପରାରେ ସେ ଜନ୍ମ ନେଇଥାଏ । ମୋଟାମୋଟି କହିଲେ ଯୋଗରେ ଅଳ୍ପସ୍ୱଳ୍ପ ସୃଷ୍ଟି ହେଲେ ପରବର୍ତ୍ତୀ ଜନ୍ମରେ ଯୋଗ ପାଇଁ କରିଥିବା ଶ୍ରମ ବ୍ୟର୍ଥ ହୁଏନାହିଁ । ଅନ୍ୟ ଜନ୍ମରେ ଯେଉଁଠାରେ ଛାଡ଼ିଥାଉ, ସେଇଠାରୁ ଆମେ ଆରମ୍ଭ କରୁ ।

ଶ୍ରୀ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ କହିଲେ—"ରାଜନ୍ ! ଭରତ ଗଣ୍ଡକୀ ନଦୀରେ ନିଜର ଅଧା ଶରୀରକୁ ବୁଡ଼ାଇ ଭଗବାନଙ୍କର ସୁମଧୁର ନାମର ଉଚ୍ଚାରଣ କରି ମୃଗ ଶରୀରକୁ ତ୍ୟାଗ କଲେ । ଯଦିଓ ଭଗବାନଙ୍କର ନାମ ନେଇ ସେ ଶରୀର ତ୍ୟାଗ କରିଥିବାହେତୁ ତାଙ୍କର ମୁକ୍ତି ହୋଇଯିବାର ଥିଲା, ମାତ୍ର ମନୁଷ୍ୟ ଶରୀରର ଉତ୍କୃଷ୍ଟତା ଦେଖାଇବା ପାଇଁ ଏବଂ ତାଙ୍କର ରହିଥିବା ସାଧନାକୁ ତିତିକ୍ଷା ଦ୍ୱାରା ପୂର୍ଣ୍ଣ କରିବା ପାଇଁ ତାଙ୍କୁ ଆଉ ଗୋଟିଏ ଶରୀର ଧାରଣ କରିବାକୁ ହେଲା । ସେ ଏକ ଅଙ୍ଗୀରସ ଗୋତ୍ରୀୟ ପରମକୁଳୀନ ଧାର୍ମିକ ସଦ୍‌ଗୁଣ ସମ୍ପନ୍ନ ବ୍ରାହ୍ମଣ ଘରେ ପୁତ୍ର ରୂପରେ ଜନ୍ମଗ୍ରହଣ କଲେ ।"

ଯେଉଁ ବ୍ରାହ୍ମଣ ଘରେ ରାଜର୍ଷି ଭରତ ଜନ୍ମଗ୍ରହଣ କରିଥିଲେ, ତାଙ୍କର ବଂଶ ବଡ଼ ଧାର୍ମିକ ପ୍ରସିଦ୍ଧ ପୂଜନୀୟ ଏବଂ ସମ୍ମାନନୀୟ ଥିଲା । ସେ ବ୍ରାହ୍ମଣ ଙ୍କର ଥିଲେ ଦୁଇଟି ସ୍ତ୍ରୀ । ତାଙ୍କର ବଡ଼ ସ୍ତ୍ରୀଙ୍କ ଠାରୁ ଶୀଳ, ସଦାଚାର,

, ବିନୟ, ଇତ୍ୟାଦି ଗୁଣରେ ଭୂଷିତ ହୋଇ ନଅଜଣ ପୁତ୍ର ଜନ୍ମ ହେଲେ । ସାନ ସ୍ତ୍ରୀ ଯେ ଅତ୍ୟନ୍ତ ସୁଶୀଳା ଏବଂ ବିନୟବତୀ, ପତିପରାୟଣା ଥିଲା, ତାର ଏକା ସାଙ୍ଗରେ ଦୁଇଟି ସନ୍ତାନ ଜନ୍ମ ହେଲେ । ସେ ଦୁଇଟି ଭିତରେ ଗୋଟିଏ ଥିଲା କନ୍ୟା ଏବଂ ଅନ୍ୟଟି ପୁତ୍ର । ଯେଉଁ ସନ୍ତାନଟି ପୁତ୍ର ଥିଲା, ସେ ହିଁ ରାଜର୍ଷି ଭରତ-ମୃଗ ଶରୀର ତ୍ୟାଗ କରି ସେ ଜନ୍ମଗ୍ରହଣ କରିଥିଲେ ।

ବ୍ରାହ୍ମଣ ତାଙ୍କର ପ୍ରଥମ ପତ୍ନୀ ଠାରୁ ଉତ୍ପନ୍ନ ସମସ୍ତ ସନ୍ତାନମାନଙ୍କର ବିଧି-ପୂର୍ବକ ସମସ୍ତ ସଂସ୍କାର କରିଥିଲେ, ଉପନୟନ କାର୍ଯ୍ୟ ସମ୍ପାଦନ କରି ସେ ସେମାନଙ୍କୁ ବେଦାଧ୍ୟୟନ କରାଇଲେ । ସେ ସମସ୍ତ ବ୍ରାହ୍ମଣକର୍ମରେ ଯୁକ୍ତ ହୋଇ, କର୍ମକାଣ୍ଡକୁ ଜାଣି, ଜ୍ୟୋତିର୍ବିଦ୍ୟାକୁ ଜାଣିଥିଲେ । ସେ ନିଜେ ଯଜ୍ଞ କରୁଥିଲେ, ଅନ୍ୟଦ୍ୱାରା ମଧ୍ୟ କରାଉଥିଲେ, ବେଦ ପଢ଼ାଉଥିଲେ ଏବଂ ପଢୁଥିଲେ । ଦାନ ଦେଉଥିଲେ, ନେଉଥିଲେ ମଧ୍ୟ ଏବଂ ଜୀବନଧାରଣ ପାଇଁ କୃଷି କାର୍ଯ୍ୟ ମଧ୍ୟ କରୁଥିଲେ ।

ଭରତ ବୟସ ଦୃଷ୍ଟିରୁ ଥିଲେ ସମସ୍ତଙ୍କଠାରୁ ସାନ ଏବଂ ଶ୍ରେଷ୍ଠ ସ୍ତ୍ରୀଙ୍କର ଏକମାତ୍ର ଅଲିଅଳ ପୁତ୍ର ଥିଲେ । ପ୍ରାୟତଃ ମା ବାପଙ୍କର ଶ୍ରେଷ୍ଠ ସନ୍ତାନ ନିମିତ୍ତ ଅତ୍ୟଧିକ ପ୍ରେମ ହୁଏ ଏବଂ ସାନ ପୁଅ ଯଦି କମ୍ ବୁଦ୍ଧି ସମ୍ପନ୍ନ ହୋଇଥାଏ, ତେବେ ତାହାର ଗୁରୁତ୍ୱ ଆହୁରି ବଢିଯାଏ । ମା' ବାପଙ୍କର ହାର୍ଦ୍ଦିକ ଇଚ୍ଛା ରହେ ଯେ ଆମର ସମସ୍ତ ପୁତ୍ରମାନେ ସୁଖରେ ରହନ୍ତୁ, କେହି ଦୁଃଖ ନ ପାଆନ୍ତୁ । ଯେଉଁମାନେ ଜ୍ଞାନୀ, ବୁଦ୍ଧିମାନ୍ ଏବଂ କାର୍ଯ୍ୟକୁଶଳ, ସେମାନଙ୍କ ପାଇଁ ମା' ବାପଙ୍କର କୌଣସି ଚିନ୍ତା ରହେନାହିଁ । ସେମାନେ ବୁଝନ୍ତି ଯେ, ସେ ନିଜର ବୁଦ୍ଧି ବଳରେ କେଉଁଠ ନା କେଉଁଠୁ ରୋଜଗାର କରି ଚଳିପାରିବେ । ବୁଦ୍ଧିହୀନ ଏବଂ ଅସମର୍ଥ ସନ୍ତାନ ପାଇଁ ମା' ବାପ ଅତ୍ୟନ୍ତ ଚିନ୍ତିତ ରହନ୍ତି । ସେହି ବ୍ରାହ୍ମଣ ଦେବତା ଘରେ କୌଣସି ଜିନିଷର ଅଭାବ ନ ଥିଲା । ଯଥେଷ୍ଟ ଧନଧାନ୍ୟ ଥିଲା । ବହୁତ ଗାଈ, ବଳଦ ଥିଲେ, ଚଳିବା ପାଇଁ ପ୍ରଚୁର ପରିମାଣରେ ଜମିବାଡି ଥିଲା, ସମସ୍ତ ପୁତ୍ର ବିଦ୍ୱାନ, ସୁଖୀ, ଗୁଣୀ ଏବଂ ପିତାମାତା ଭକ୍ତ ଥିଲେ । ସମସ୍ତଙ୍କର ବିବାହ ହୋଇ ଯାଇଥିଲା । କେବଳ ଭରତ ଥିଲେ ଅବୋଧ । ବ୍ରାହ୍ମଣଙ୍କର ସେହି ଗୋଟିଏ ମାତ୍ର ଚିନ୍ତା ଥିଲା । ସେ ଭାବୁଥିଲେ—"କୌଣସି ପ୍ରକାର ମୋର ଏହି ପୁତ୍ରଟି ପଢ଼ି ଲେଖି ବିଦ୍ୱାନ ହୋଇଗଲେ ମୁଁ ନିଶ୍ଚିନ୍ତ ହୋଇ ମରିପାରିବି । ନଚେତ୍ ମୋତେ ଏହାର ଚିନ୍ତା ଲାଗି ରହିଥିବ । ତାଙ୍କର ଭରତଙ୍କ ପ୍ରତି ଥିଲା ଅତ୍ୟନ୍ତ ମମତା ।"

ଭରତ ସବୁ କଥା ବୁଝୁଥିଲେ । ସେ ଭାବିଲେ—"ଅତୀତର ହରିଣ ସହିତ ସମ୍ପର୍କ ସ୍ଥାପନ କଲି ଏବଂ ହରିଣ ହିଁ ହେବାକୁ ପଡିଲା । ଯଦି ବାପ ସହିତ

ସମ୍ପର୍କ ହେଲା, ତେବେ ପୁଣି ପରଜନ୍ମରେ ବାପ ହେବାକୁ ପଡ଼ିବ । ତେଣୁ ଜନ୍ମ ବେଳରୁ ସେ ମା' ବାପଠାରୁ ଉଦାସୀନ ରହିବାକୁ ଲାଗିଗଲେ । ତାଙ୍କର ମାଆ, ତାଙ୍କୁ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ, ବାରମ୍ବାର କୋଳ କରି ତାଙ୍କର ମୁଖରେ ଚୁମ୍ବନ ଦେଉଥିଲେ । ପିତା ନିଜର ସମସ୍ତ ସ୍ନେହ ସେ ସାନ ହୋଇଥିବା ହେତୁ, ତାଙ୍କରି ଉପରେ ଢାଳୁଥିଲେ; ମାତ୍ର ମାତା ପିତାର ଏହି ସ୍ନେହ ତାଙ୍କୁ ବିଷତୁଲ୍ୟ ବୋଧ ହେଉଥିଲା । ସେ କେବେ ହସି କରି କଥା କହୁ ନ ଥିଲେ । ସବୁବେଳେ ଚୁପଚାପ ରହୁଥିଲେ । ତାଙ୍କର ମା' ବାପାଙ୍କୁ ସନ୍ଦେହ ହେଲା, ସେ ପାଗଳ ନୁହନ୍ତି ତ ?"

ଯେତେବେଳେ ତାଙ୍କର ବୟସ ପାଞ୍ଚ-ଛଅ ବର୍ଷ ହେଲା, ପିତା ଖୁବ୍ ଧୂମଧାମରେ ତାଙ୍କର ଯଜ୍ଞୋପବୀତ ଉତ୍ସବ ସମାପନ କଲେ । ଉପନୟନ ସଂସ୍କାର ପରେ ବେଦାଧ୍ୟୟନ ସଂସ୍କାର କରିଯାଏ । ବ୍ରାହ୍ମଣଙ୍କର ମୁଖ୍ୟକାର୍ଯ୍ୟ ହେଉଛି ଶ୍ରାବଣୀ ଉତ୍ସବ । ବେଦାଧ୍ୟୟନ ପ୍ରାୟ ସେହିଦିନଠାରୁ ଆରମ୍ଭ କରିଯାଏ । ଏହା ପୂର୍ବରୁ ବସନ୍ତ ଏବଂ ଗ୍ରୀଷ୍ମ, ଚୈତ୍ର, ବୈଶାଖ, ଜ୍ୟେଷ୍ଠ ଏବଂ ଆଷାଢ଼ ଏହି ଚାରିମାସରେ ବେଦାଧ୍ୟୟନ କରିବାର ପ୍ରସ୍ତୁତ ହୁଏ । ଏହି ଚାରି ମାସରେ ପ୍ରଣବ ସପ୍ତବ୍ୟାହୃତି ଶିରୋମନ୍ତ୍ର ସହିତ ତ୍ରିପଦା ଗାୟତ୍ରୀର ସସ୍ୱର ଶିକ୍ଷା ଦିଆଯାଏ । ପଦ, ଧନ, କ୍ରମ, ଜଟା, ସ୍ୱର, ଇତ୍ୟାଦି ସହିତ ବେଦମାତା ଗାୟତ୍ରୀଙ୍କୁ ଏହି ପ୍ରକାର ସ୍ତବରେ ମନେ ପକାଯାଏ ଯେ ଶ୍ରାବଣୀ ଦିନରେ ଏହାର ଶୁଦ୍ଧ ଉଚ୍ଚାରଣ କରି ଶ୍ରାବଣୀ କର୍ମରେ ସମସ୍ତଙ୍କ ସହିତ ସମ୍ମିଳିତ ହୋଇ ପାରିବେ । ପୁଣି ସେହିଦିନ ସେ ବେଦାରମ୍ଭ କାର୍ଯ୍ୟ ଆରମ୍ଭ କରେ ।

ଭରତଙ୍କର ପିତା ପ୍ରଥମରୁ ହିଁ ଅକ୍ଷରର ଶିକ୍ଷା ଦେଇଥିଲେ । କାରଣ ଅକ୍ଷର ଦ୍ୱାରା ହିଁ ଧର୍ମର ବୃଦ୍ଧି ହୋଇଥାଏ । ଅକ୍ଷରଜ୍ଞାନକୁ ବେଦ ମଧ୍ୟ ପରିହାର କରିପାରେ ନାହିଁ । ଅକ୍ଷର କଥା କହି ସେ ବର୍ତ୍ତମାନ ଗାୟତ୍ରୀ ମନ୍ତ୍ର କଣ୍ଠସ୍ଥ କରାଇବାକୁ ଲାଗିଲେ । ଭରତଙ୍କୁ ନିଜ ପାଖରେ ବସାଉଥିଲେ ଏବଂ ଅତ୍ୟନ୍ତ ପ୍ରେମରେ କହୁଥିଲେ—"ପୁଅ ! ଦେଖ, ଯେପରି ମୁଁ ଉଚ୍ଚାରଣ କରିବି, ସେହିପରି ତୁ କରିବୁ ।" ଚାରିପାଞ୍ଚଥର ଶୁଣିକରି ମଧ୍ୟ ସେ ଶୁଣନ୍ତି ନାହିଁ । ବାରମ୍ବାର ପିତା କହିଲେ ସେ କେବଳ ମୁଣ୍ଡ ହଲାଇ ଦିଅନ୍ତି ।

ପିତା କହନ୍ତି, "କହ ତ ଦେଖି ଓମ ।"

ତେବେ ସେ କହନ୍ତି, "ରୋମ ।"

ଏଥିରେ ବାପା ମୁଣ୍ଡକୁ ଠୁକାଇ ଦେଇ କହନ୍ତି—"ଅରେ ଏହି ବ୍ରାହ୍ମଣ ଘରେ ଏପରି ଏକ ମୂର୍ଖ କେଉଁଠୁ ଜନ୍ମ ହେଲା । ଏହାକୁ ଗୋଟିଏ ଅକ୍ଷର ମଧ୍ୟ

ଆସୁନାହିଁ । ତଥାପି ମଧ୍ୟ ସେ ଗୁରୁ ଦେବାର ପାତ୍ର ନ ଥିଲେ, ପିତାର ଆସ୍ଥା ତ ! କହନ୍ତି, "ପୁତ୍ର, ଦେଖ୍, ମନଧ୍ୟାନ ଦେଇ ଶୁଣ, କହ ଓମ୍ ।"

ବର୍ତ୍ତମାନ ସେ କହନ୍ତି—"ବାମ୍ ।"

ପିତା ପୁନର୍ବାର ଅପ୍ରସନ୍ନ ହୋଇ ଦୁଇ ଚାପୁଡ଼ା ପକାଇ କହନ୍ତି—"କେମିତିକା ମୂର୍ଖ କରେ, ତୋ ଦ୍ୱାରା ପ୍ରଣବ ଉଚ୍ଚାରଣ ମଧ୍ୟ ହୋଇ ପାରୁନାହିଁ । ସେ ଆଗକୁ କ'ଣ ପଢ଼ିବ । ବାପାଙ୍କୁ ଜଣାନାହିଁ ଯେ ତାଙ୍କ ପେଟ ଭିତରେ ସମସ୍ତ ବିଦ୍ୟା ସେ ସବୁ କିଛି ପଢ଼ି ସାରିଛନ୍ତି । ତାଙ୍କର କର୍ମକାଣ୍ଡ ଏବଂ ଉପାସନାର କୌଣସି ଆବଶ୍ୟକତା ନାହିଁ । ସେ ତ ଜୀବନ୍ମୁକ୍ତ, ଜ୍ଞାନର ଚତୁର୍ଥ ଭୂମିକାକୁ ସମ୍ପନ୍ନ କରି ପଞ୍ଚମ ଭୂମିକାରେ ସ୍ଥିର ରହିଛନ୍ତି, ଯେଉଁଠି ଜଗତ ଜଣାପଡ଼େନାହିଁ । ମାତ୍ର କର୍ମକାଣ୍ଡ ପିତା ଏ କଥାକୁ କିପରି ବୁଝିବେ ? ପୁତ୍ର ମୋହରେ ଆଚ୍ଛନ୍ନ ହୋଇ ସେ ବିଭିନ୍ନ ପ୍ରକାର ଭାବରେ ଭରତଙ୍କୁ ଦଣ୍ଡ ଦିଅନ୍ତି, ମାତ୍ର ଭରତ କାଳୀ କମଳ ସଦୃଶ୍ୟ ହୋଇଥାନ୍ତି, ତାଙ୍କ ଉପରେ ଅନ୍ୟ କୌଣସି ରଙ୍ଗ ଚଢ଼ିପାରେ ନାହିଁ । ସେ କାଣିଶୁଣି ଏଣ୍ଟାଡୁ ସେଣ୍ଟାଡୁ ଗପନ୍ତି । ବୁଦ୍ଧିର ସାଗର ହୋଇକରି ମଧ୍ୟ ବୁଦ୍ଧିହୀନ ସଦୃଶ୍ୟ ଆଚରଣ କରୁଥିଲେ । ଶାସ୍ତ୍ରର ବିଶାରଦ ହୋଇଥିଲେ ବି ନିଜକୁ ଅଜ୍ଞ ସଦୃଶ୍ୟ ପ୍ରକଟିତ କରନ୍ତି, ଜ୍ଞାନର ଭଣ୍ଡାର ହୋଇ ମଧ୍ୟ ନିଜକୁ ଜଡ଼ ପାଗଳ ପରି ପ୍ରଦର୍ଶିତ କରୁଥିଲେ । ସେ ସଂସାରର ସମସ୍ତ ପ୍ରକାର କାର୍ଯ୍ୟରୁ ଅନାସକ୍ତ ରହିବାକୁ ଚାହୁଁଥିଲେ । ସେ ଭାବୁଥିଲେ, ସଂସାରକୁ ବୁଦ୍ଧିର ଚମତ୍କାର ଦେଖାଇଲେ, କୌଣସି ସିଦ୍ଧି ପ୍ରକଟ କଲେ ସେଠାରେ ପୁଣି ବାନ୍ଧି ହୋଇ ରହିଯିବେ । ସଂସାର ଚମତ୍କାର ଦେଖାଉଥିବା ଲୋକକୁ ନମସ୍କାର କରେ । ବାତୁଳ ପଛରେ ବୁଲେ । ଆମେ ସଂସାରକୁ ପ୍ରେମ କରିବା ଉଚିତ ନୁହେଁ, ଯେମିତି ପ୍ରେମ କରିବାକୁ ଆରମ୍ଭ କରିଦେବ, ସେ ସର୍ବଘଟରେ ବ୍ୟାପ୍ତ ହୋଇଯିବ । ସମସ୍ତଙ୍କ ମନୋଭାବକୁ ଜାଣେ, ତା ସମ୍ମୁଖରେ ପ୍ରଦର୍ଶନ କରିବାର କୌଣସି ଆବଶ୍ୟକତା ନାହିଁ । ଅତଏବ ସେ ନିଜକୁ ସମ୍ପୂର୍ଣ୍ଣ ପାଗଳ ବୋଲି ଜଣାଇବାକୁ ଲାଗିଲେ । ପିତା ନିଜର ଶକ୍ତି ମୁତାବକ ପୂର୍ଣ୍ଣ ପ୍ରାଣରେ ଚେଷ୍ଟା କଲେ, ସେ ତାଙ୍କୁ ଶୌଚ, ବେଦାଧ୍ୟୟନ, ବ୍ରତ, ନିୟମ, ବ୍ରହ୍ମଚର୍ଯ୍ୟ, ଗୁରୁଶୁଶ୍ରୂଷା, ଅଗ୍ନି ପରିଚର୍ଯ୍ୟା ଇତ୍ୟାଦି ସମସ୍ତ କର୍ମର ଶିକ୍ଷା ଦେବାକୁ ଚାହିଁଲେ । ମାତ୍ର ସେ ହୋଇଥିଲେ ଚକଚକ କରୁଥିବା ହାଣ୍ଡି । ତାଙ୍କ ଉପରେ ପିତାଙ୍କ ଉପଦେଶ ରୂପକ ବିନ୍ଦୁ ଟିକିଏ ହେଲେ ପଡ଼ିଲା ନାହିଁ । ପିତାଙ୍କର ମନୋରଥପୂର୍ଣ୍ଣ ହେଲା ନାହିଁ । ସେ ନିଜର ସବୁଠାରୁ ସାନପୁଅକୁ ନିଜ ବୁଦ୍ଧିରେ ଶିକ୍ଷିତ କରି ପାରିଲେ ନାହିଁ । କନିଷ୍ଠ ପୁତ୍ର କଥା ଚିନ୍ତା କରି କରି ସେ ପରଲୋକ ଯାତ୍ରା କଲେ । ଭଗବାନ୍ଙ୍କ ସେବା କରିବା

ଯେଉଁ ମୁଖ୍ୟକର୍ମ ଥିଲା,ତାହାକୁ ସେହି ବୈଦିକ ବ୍ରାହ୍ମଣ ଭୁଲି ଯାଇଥିଲେ, ଯଥା ନାହିଁ, ତା ନାହିଁ, ଏ କଥା ହେଲା ନାହିଁ, ଏହା ଆଣିବାକୁ ହେବ, ଏହାକୁ ଏକାଠି କରିବାକୁ ହେବ, ପୁଅ କେମିତି ପଢ଼ିବ, ଏହାର ନିର୍ବାହ କେମିତି ହେବ, ଏଭଳି ମୂର୍ଖକୁ କିଏ ତାହାର କନ୍ୟାକୁ ଦେବ ? ତାଙ୍କର ଏହି ସବୁ ଚିନ୍ତା କରୁ କରୁ ନାନାବିଧ ଅନେକ ଦୁର୍ଲ୍ଲଭ ମନୋକାମନା ପୂର୍ତ୍ତି ନିମିତ୍ତ ସଙ୍କଳ୍ପ କରି କରି ସେ ଏହି ଲୋକରୁ ଚାଲିଗଲେ । ନିଜର ପୁତ୍ରକୁ ପଢ଼ାଇ ପାରିଲେ ନାହିଁ । କାଳ ତାଙ୍କ ସହିତ ସବୁ କିଛି ଦୟା ମଧ୍ୟ କଲା ନାହିଁ । ପୁତ୍ରକୁ ଯୋଗ୍ୟ ଭାବରେ କରିଦେବାର ପ୍ରଚେଷ୍ଟାକୁ ସେହି ନିର୍ଦ୍ଦୟ କାଳ ଅବସର ଦେଲା ନାହିଁ । ଭରତଙ୍କର ବ୍ରାହ୍ମଣ ପିତା ମରିଗଲେ । ତାଙ୍କର ମା' ତାଙ୍କର ବଡ଼ ଯାଆକୁ କହିଲେ—"ନାନୀ ! ତୁମର ନଅଜଣ ପୁତ୍ର ଅଛନ୍ତି, ତୁମେ ତ ମଧ୍ୟ ବଡ଼ । ମୋର ଗୋଟିଏ ମୂର୍ଖ ପୁତ୍ର ଏବଂ କନ୍ୟାଟିଏ ମଧ୍ୟ ଅଛୁ । ଏହି କନ୍ୟାଟିକୁ ବାହାଘର କରିଦେବୁ । ଏହି ପାଗଳା ପୁତ୍ର ନିଜ ଭାଗ୍ୟ ହେତୁ ଯେ କୌଣସି ପ୍ରକାରେ ପେଟ ପୋଷିନେବ । ତୁମର ଯେପରି ନଅ ଅଛନ୍ତି, ଏହାକୁ ଦଶ ବୋଲି ଭାବିବୁ । ମୁଁ ମୋର ପ୍ରାଣନାଥଙ୍କ ସହିତ ସତୀ ହେବି । ତୁମେ ପ୍ରସନ୍ନ ଚିତ୍ତରେ ମୋତେ ଅନୁମତି ପ୍ରଦାନ କର । ଏହି ପିଲାମାନଙ୍କୁ ମୋ ଆଗରେ କୋଳକୁ ନିଅ ।

ନିଜ ସାନଭଉଣୀର ଏପରି କଥା ଶୁଣି ସେହି ବ୍ରାହ୍ମଣ ସ୍ତ୍ରୀ କାନ୍ଦିବାକୁ ଲାଗିଲା । ସେ କହିଲା—"ଭଉଣୀ ! ତୁ ହେଉଛୁ ଭାଗ୍ୟବତୀ ଯେ ପତି ସହିତ ପରଲୋକକୁ ଯିବୁ । ଠିକ୍ କଥା, ତୁମେ ଚାଲ । ମୁଁ ମଧ୍ୟ ତୁମ ସହିତ ଆଗେ ପଛେ ଯାଇ ପତିଲୋକରେ ତୁମ ଦୁହିଁଙ୍କୁ ଦର୍ଶନ କରିବି । ତୁମେ ଏହି ପିଲାମାନଙ୍କ ବିଷୟରେ ନିଶ୍ଚିନ୍ତ ରୁହ । ତୋର ଯେମିତି ପିଲା ମୋର ସେମିତି । ଗୋଟିଏ ବାପର ଔରସରୁ ତ ଏମାନେ ସମସ୍ତେ । ପାରୁପର୍ଯ୍ୟନ୍ତ ମୁଁ ଏମାନଙ୍କୁ କୌଣସି କଷ୍ଟ ଦେବିନାହିଁ ।

ଏହା ଶୁଣି ବ୍ରାହ୍ମଣର ସାନ ସ୍ତ୍ରୀ ନିଜର ପତି ସହିତ ସତୀ ହୋଇଗଲା । ବର୍ତ୍ତମାନ ଭରତ ହୋଇଗଲେ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ମାଆ ବାପ ଉଭୟ ଚାଲିଗଲେ । ବର୍ତ୍ତମାନ ଆଗକୁ ବା ପଛକୁ କେହି ରହିଲେ ନାହିଁ । ସେ ନିର୍ଦ୍ଦ୍ୱନ୍ଦ୍ୱ ହୋଇ ଏଆଡ଼େ ସେଆଡ଼େ ପାଗଳଙ୍କ ପରି ବୁଲିବାକୁ ଲାଗିଲେ । ତାଙ୍କ ହୃଦୟରେ ଜ୍ଞାନର ଜ୍ୟୋତି ପ୍ରଜ୍ୱଳିତ ଥିଲା । ଯେଉଁ ଭଗବାନଙ୍କର ଶ୍ରବଣ, ସ୍ମରଣ, ନାମ ଗୁଣ କୀର୍ତ୍ତନ ସମସ୍ତ ବିଘ୍ନକୁ ଦୂର କରିଥାଏ, ସେହି ଶ୍ରୀହରିଙ୍କର ଯୁଗଳ ଅରୁଣ ଚରଣ କମଳକୁ ହୃଦୟରେ ଧାରଣ କରି ନିରନ୍ତର ତାଙ୍କର ଧ୍ୟାନରେ ନିମଗ୍ନ ରହୁଥିଲା । ମୂର୍ଖ ଅଜ୍ଞାନୀ ସଂସାରୀ ବିଷୟାସକ୍ତ ଲୋକମାନେ କହନ୍ତି—"ଏତ ମୂର୍ଖ-ପାଗଳ,

ଆପଣ ସେମାନଙ୍କ ସମ୍ମୁଖରେ ଏହିପରି ଉତ୍ତମ ପାଗଳ, ଅନ୍ଧ ଚେହେରା ଏବଂ ଜଡଙ୍କ ଆଚରଣ କଲେ କହିବେ । ସେ ଏପରି ବ୍ୟବହାର କଲେ ଯେ ତାଙ୍କୁ ପାଗଳ ହୋଇଥିବାର କାହାର କୌଣସି ସନ୍ଦେହ ନ ଥିଲା; ମାତ୍ର ସେ ପ୍ରକୃତରେ ଥିଲେ ଜ୍ଞାନୀମାନଙ୍କର ଗୁରୁ ଏବଂ ଯୋଗୀମାନଙ୍କର ଯୋଗେଶ୍ୱର ।

## ଛପ୍‌ପୟ

ପିତାକରେ ନିତ ସୋଚ ଭୟୋ ମମ ସୁତ ଲଘୁ ଜଡ଼ମତ ।
ମନ୍ତ୍ର ହୋହିଁ ନହିଁ ଯାଦ କରୁ ଶ୍ରମ ହୌ ଅତ ନିତପ୍ରତି ॥
କସ ହୋବୈ ନିବାହ କବନ କର କାଜ ଖାଇହଁଗୋ ।
କୋ ଜାକେ ସଂଗ ବିପ୍ର ସୁତା ଅପନୀ ବିବାହିଗୋ ॥
କରତ ମନୋରଥ ବିପ୍ର ଅସ, କାଲ ପାସ ମହଁ ଫଁସି ଗୟୋ ।
ସତୀ ପିତା ସଁଗ ମାଁ ଭଇ, ନହିଁ ରୋୟୋ ଜଡ଼ ହୁଁହି ଗୟୋ ॥



# ଭରତରୁ ଜଡଭରତ

**ନମୋ ନମଃ କାରଣବିଗ୍ରହାୟ**
**ସ୍ୱରୂପତୁଚ୍ଛୀକୃତବିଗ୍ରହାୟ**
**ନମୋଽବଧୂତ ଦ୍ୱିଜବଂଧୁଲିଙ୍ଗ**
**ନିଗୂଢ଼ନିତ୍ୟାନୁଭବାୟ ତୁଭ୍ୟମ୍ ॥**

( ଭାଗବତ ୫ମ ସ୍କନ୍ଧ ୧୨ ଅଧ୍ୟାୟ ୧ ଶ୍ଳୋକ )

## ଛପ୍ପୟ

ଭକ୍ତେ ଭରତ ନିଶ୍ଚିନ୍ତ ଫିରେ ମନମାନେ ଇତ ଉତ ।
କସ୍ମୟୁ ସୋଚ ନ କରେଁ ରହେ ନିତ ହିଁ ପ୍ରସନ୍ନ ଚିତ ॥
ଭିତର ଜ୍ଞାନ ଗମ୍ଭୀର ଭେଦ ଜଗକୂଁ ନ ବତାବେଂ ।
ପାଗଲ ଜଡମତ ବୁଦ୍ଧିହୀନ ସମ ସବହୁଁ ଜତାବେଂ ॥
ଜୋ ଲେ ଜାବେ ପକର ଜେ, ଚଲେ ଜାହୁଁ ସବ କୁଛ କରେ ।
ଖାୟୋ କୁଖାୟୋ ଜୋ ମିଲେ, ଉଦର ତାହୁଁ ଭରି କେ ଭରେ ॥

ସଂସାରୀ ପୁରୁଷ ଦିନରାତି ସବୁବେଳେ ଜଡବତ୍ କାର୍ଯ୍ୟ କରୁଥାଏ । ତଥାପି ସେ ନିଜକୁ ବୁଦ୍ଧିମାନ ବୋଲି ପରିଚୟ ଦିଏ ଏବଂ ଜ୍ଞାନୀ ଜଡ଼ ଭରତଙ୍କୁ ଜଡ ପାଗଳ କହି ତାଙ୍କୁ ହସରେ ଉଡ଼ାଇଦିଏ । ଆପଣ ଜାଣନ୍ତି, ଏହି ପୃଥିବୀ ଅନାଦିକାଳରୁ ଏହିପରି ଚାଲି ଆସୁଛି, ସଦାସର୍ବଦା ଏହି ପ୍ରକାର ପ୍ରବାହରେ ଚାଲିଥିବ । ବଡ ବଡ ପ୍ରତାପୀ ରାଜା ଏହାକୁ ନିଜର ବୋଲି ଭାବି ଏଥିରେ ନଷ୍ଟ ହୋଇଯାଇଛନ୍ତି, ପୃଥୁ, ପ୍ରିୟବ୍ରତ, ଉତ୍ତାନପାଦ, ମନୁ, ନହୁଷ, ଗୟ, ମାନ୍ଧାତା, ସଗର, ରାବଣ, ରାମ

କଏ ଜାଣେ କେତେ ଶୂରବୀର ଏହାକୁ ନିଜର ବୋଲି କହିଛନ୍ତି, ମାତ୍ର ଏ କାହାର ହେଲା ? ଏହି ପୃଥିବୀକୁ ନିଜର କରି ବୁଝିଥିବା ହେବା ଜଡ ପଦୃଶ୍ୟ ନୁହେଁ କି ? ମାଟି ମାଟିକୁ ଖାଇ ପ୍ରସନ୍ନ ହେବା କ'ଣ ମୂର୍ଖତା ନୁହେଁ ? ଚର୍ମରେ ଚର୍ମକୁ ସ୍ପର୍ଶ କରି ଆନନ୍ଦ ଅନୁଭବ କରିବା କ'ଣ ପାଗଳାମୀ ନୁହେଁ ? ନାଲି, କଳା, ଧଳା ଏବଂ ମାଟିଆ ମାଟିରେ ସୁନା, ରୂପା, ତମ୍ବା, ଲୁହା ମାଟିର ଭେଦଭାବ କରି ଘରଦ୍ୱାର ତାହାର ପ୍ରାପ୍ତି ପାଇଁ ପ୍ରଯତ୍ନ କରିବା ପାଗଳାମୀ ନୁହେଁ ତ ଆଉ କଣ ? କିନ୍ତୁ ମାୟା ମୋହରେ ପଶିଥିବା ପ୍ରାଣୀ ତାକୁ ଧ୍ୟାନ ଦଏନାହିଁ । ତାହାକୁ ବୁଦ୍ଧିମାନ କୁହାଯାଏ, ଯେ ସୁନା ରୁପାକୁ ଏକାଠିକରି ସଞ୍ଚୟ ସେବ ମିଛକରିବୁ ଏକାଠି କଲେ । ଯେ ଏହି ବ୍ୟର୍ଥ ବ୍ୟବସାୟରେ ଉଦାସୀନ ହୁଏ, ସେ ଏହି ସ୍ୱାର୍ଥମାନଙ୍କ ଦୃଷ୍ଟିରେ ଜଡ, ଅଜ୍ଞ, ବୋକା, ପାଗଳ, ନିଷ୍କର୍ମା, ବ୍ୟର୍ଥ ଅଟେ । ମୂର୍ଖତାର ମଧ୍ୟ ସୀମା ଅଛି, ପାଗଳାମୀର ମଧ୍ୟ ଶେଷ ଅଛି । ନିଜର ଜଡତାକୁ ବୁଦ୍ଧି ବୋଲି ଭାବିବା ଏବଂ ଯେଉଁ ସ୍ୱରୂପ ଅନୁଭୂତରେ ବ୍ରହ୍ମ ପର୍ଯ୍ୟନ୍ତ ପହଞ୍ଚିଛି, ଏହି କ୍ଷଣଭଙ୍ଗୁର ସଂସାରର ଭାବନାକୁ ସମ୍ପୂର୍ଣ୍ଣରୂପେ ସବୁକାଳ ପାଇଁ ତ୍ୟାଗ କରିଛି, ତାହାକୁ ଅଜ୍ଞ ଲୋକମାନେ ଜଡ଼ବୋଲି କହନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଦ୍ୱିଜ ଭରତଙ୍କ ପିତା ପରଲୋକ ଗମନ କଲା । ସେ ତାଙ୍କର ସାନ ପୁଅକୁ ପଢ଼ାଇ ପାରିଲେ ନାହିଁ । ନିଜର ମନୋରଥକୁ ଅପୂର୍ଣ୍ଣ ରଖି ସେ ଏହି ଇହଲୋକରୁ ବିଦା ହୋଇଗଲେ । ଭରତ ଭାବିଲେ—"ଠିକ ହେଲା, ଜଞ୍ଜାଳ ଦୂର ହୋଇଗଲା । ପ୍ରତ୍ୟେକ ଦିନ ମାଡ଼ ଏବଂ ଗାଳିରୁ ରକ୍ଷା ମିଳିଗଲା ।" ତାଙ୍କର ବଡ଼ଭାଇ ନଅଜଣ ଯେଉଁମାନେ କର୍ମକାଣ୍ଡକୁ କେବଳ ସବୁ କିଛି ଭାବୁଥିଲେ, ଯେଉଁମାନଙ୍କର ପରାବିଦ୍ୟା ଏବଂ ବ୍ରହ୍ମଜ୍ଞାନରେ ପ୍ରବେଶ ନଥିଲା, ସେମାନେ ଭାବିଲେ ଏତ ମୂର୍ଖ ଏ ପଢ଼ି ଲେଖି ପାରିବ ନାହିଁ । ଅତଏବ ସେମାନେ ତାକୁ ପଢ଼ିବା ଲେଖିବା ଶିଖାଇବା ପାଇଁ ଆଗ୍ରହ ଦେଖାଇଲେ ନାହିଁ । ପିତା ପିତା ପିତା, ଏପରକି ପୁତ୍ର ଯେତେ ମୂର୍ଖ ହେଲେମଧ୍ୟ ସେ ଭାବନ୍ତି ପୁଅ କିଛି ପଢ଼ିବ, ଲେଖିବ କିନ୍ତୁ ଭାଇମାନଙ୍କୁ ଏପରି ଭାବନା କେଉଁଠୁ ଆସିବ । ନ ପଢ଼ୁଛି ତ ନପଢ଼ୁ, ବିଦ୍ୟା ତ ଜଡ଼ିବୁଟି ନୁହେଁ, ଯାହାକୁ ଘୋଟିକରି ତାକୁ ପିଆଇ ଦିଆଯିବ । ପରିଶ୍ରମ କରିବ ସୁଖ ପାଇବ ନଚେତ୍ ଏଣ୍ଡେ ସେଣ୍ଡେ ବୁଲିବ । ସେମାନେ ଏହା ଚିନ୍ତାକରି ତାଙ୍କ ପ୍ରତି ଉଦାସୀନ ହୋଇଗଲେ । ସେମାନେ ତାକୁ ଆଦର କରୁନଥିଲେ ।

ଅନ୍ୟ ସାଧାରଣ ଅଜ୍ଞ ନରରୂପୀ ପଶୁ ତାଙ୍କୁ ପାଗଳ, ମୂର୍ଖ, ମୂକ, ଜଡ଼, ଇତ୍ୟାଦି କ'ଣ କ'ଣ କହୁଥିଲେ । ସେ ସେମାନଙ୍କର କଥାଶୁଣି ହସୁଥିଲେ ଏବଂ ନିଜକୁ ପାଗଳପରି ପ୍ରକଟ କରୁଥିଲେ ।

ସୂତ ! କହିଲେ—"ମୁନିମାନେ ! ଏ ସଂସାର କେବଳ ସ୍ୱାର୍ଥର ବଶୀଭୂତ କୌଣସି ସ୍ୱରୂପ ସ୍ୱାର୍ଥ ବ୍ୟତୀତ କିଛୁ କହେ ନାହିଁ । ଯାହାର ଯେଉଁଥିରେ ସ୍ୱାର୍ଥ ହେବ, ତାହାର ସମ୍ପର୍କ ନଥିଲେ ମଧ ସେ ସମ୍ପର୍କ ବାହାର କରିବ । ଆପଣ ମୋ ସଉର ଶଳାର ସଡ଼ୁର ଶାଳକର ନନ୍ଦର ଝିଅରର ମଉସାଶୁଶୁର ଅଟନ୍ତି । କୁହନ୍ତୁ ଦେଖି ଏଥିରେ କିଛୁ ସମ୍ପର୍କ ଆସିଲା ? ମାତ୍ର ସବୁଠାରୁ ବଡ଼ ସମ୍ପର୍କ ହେଉଛି ସ୍ୱାର୍ଥ । ଭଗବନ ! ଏହି ସଂସାରୀ ମନୁଷ୍ୟ ସ୍ୱାର୍ଥକୁ ହିଁ ସବୁ କିଛୁ ବୋଲି ଭାବନ୍ତି, ନିଜ ସ୍ୱାର୍ଥ ସାଧନ ପାଇଁ ବଡ଼ ବଡ଼ ଯୁକ୍ତି ଲଗାନ୍ତି । ଗୋଟିଏ ଗଳ୍ପ ଅଛି । ଗୋଟିଏ ଗାଡ଼ିରେ ଜଣେ ଲୋକ କେଉଁଠିକୁ ଯାଉଥିଲା । ଗାଡ଼ିର ଚକ ଭାଙ୍ଗିଗଲା । ଗୋଟିଏ ଗାଁର ଏକ ବଡ଼ ଆମ୍ବଗଛ ତଳେ ଗାଡ଼ିକୁ ଠିଆ କରିଦେଲା । ଲୋକମାନଙ୍କୁ ପଚାରିଲା ଏହା କାହାର ଗଛ । କେହି କହିଦେଲା ଏହି ଗଛ ସମ୍ମୁଖରେ ଯେଉଁ ପକ୍କାଘର ଅଛି, ତାଙ୍କର ଏହି ଗଛଟି । ସେ ମହାଶୟ ନିଜକୁ ଅତ୍ୟନ୍ତ ବୁଦ୍ଧିମାନ ବୋଲି ଭାବୁଥିଲେ ତେଣୁ ଅତ୍ୟନ୍ତ ଗମ୍ଭୀର ମୁଦ୍ରାରେ ତାଙ୍କ ଘରକୁ ଗଲେ । ସଂଯୋଗ ବଶତଃ ଘରର ବଡ଼ ବୁଢ଼ା ଯେ କି ତାର ମାଲିକ, ସେ ବାହାରକୁ ଯାଇଥିଲେ । ସେ ଭଦ୍ରବ୍ୟକ୍ତି ତାଙ୍କ ଘରକୁ ଯାଇ ପଚାରିଲେ—"ପଣ୍ଡିତ କେଉଁଠାକୁ ଯାଇଛନ୍ତି ?" ପିଲାମାନେ କହିଲେ—"ଆଜ୍ଞା, ସେ ତ ବାହାରକୁ ଯାଇଛନ୍ତି, ଆପଣ କିଏ ?"

ସେ କହିଲା, "ଭାଇ ! ତାଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ । ଗାଁ କଥା, ସହର ହୋଇଥିଲେ ପଚରାଉଚରା କରିଥାନ୍ତେ । ପିଲାମାନେ ଘରଭିତରେ ଥିବା ମା'ଙ୍କୁ କହିଲେ—"ଆମର କେହି ସମ୍ପର୍କୀୟ ଆସିଛନ୍ତି । ଆଉ କଥା କଣ ରହିଲା-କଡ଼େଇ ଚୁଲିରେ ବସିଗଲା ଏବଂ ଗରମ ଗରମ ପକୁଡ଼ି ଛଣା ହେଲା । ମଇଁଷି ଦୁଧକୁ ଚୁଲିରେ ଢ଼ାଳିଦେଇ କ୍ଷିରି ପ୍ରସ୍ତୁତ କଲେ, ସମ୍ପର୍କୀୟ ଖୁବ୍ ମଜାରେ ପକୁଡ଼ି ଖାଇଲେ । ଦୁଇ ଚାରିଦିନ ରହି ଖୁବ ମଜାରେ ପୁରି ହାଲୁଆ ଖାଇବାକୁ ଲାଗିଲେ । ଦ ଚାରିଦିନ ପରେ ପଣ୍ଡିତ ଫେରିଲେ । ଦେଖିଲେ କ୍ଷୀରି ବସିଛି । ପଚାରିଲେ—''କାହାପାଇଁ ଏହିସବୁ ତିଆରି ହେଉଛି ?'' ପିଲାମାନେ କହିଲେ କେହି ଆମର ସମ୍ପର୍କୀୟ ଆସିଛନ୍ତି, ପଣ୍ଡିତ ଚିନ୍ତାରେ ପଡିଗଲେ, କିଏ ସମ୍ପର୍କୀୟ ଆସିଛନ୍ତି । ଶୀଘ୍ର ଶୀଘ୍ର ଧାଇଁ ବରଗଛ ତଳେ ପହଞ୍ଚିଲେ । ସମ୍ପର୍କୀୟ ମହାଶୟ ଉଠି କରି ନମସ୍କାର କଲେ । କଥାବାର୍ତ୍ତା ମଝିରେ ଅତ୍ୟନ୍ତ ସଙ୍କୋଚର ସହ ପଣ୍ଡିତ ପଚାରିଲେ—"କ୍ଷମା କରିବେ, ମୋର ସ୍ମରଣରେ ଆସୁନାହିଁ, ଆମ ସହିତ ଆପଣଙ୍କର କ'ଣ ସମ୍ପର୍କ ।"

ସେହି ମହାଶୟ ଅତ୍ୟନ୍ତ ଗମ୍ଭୀରତାର ସହ କହିଲେ—"ଆଜ୍ଞା, ଆମର ଆପଣଙ୍କ ସହିତ ବାଦରାୟଣ ସମ୍ପର୍କ ରହିଛି ।"

ପଣ୍ଡିତ ବଡ ଅଡୁଆରେ ପଡ଼ିଗଲେ, ସେ ଏପରି ସମ୍ପର୍କ କଥା କେଉଁଠାରେ ଶୁଣି ନଥିଲେ । ଚିନ୍ତାରେ ପଡି କହିଲେ—"ଆଜ୍ଞା, ମୁଁ ବୁଝି ପାରିଲି ନାହିଁ, ବାଦାରାୟଣ ସମ୍ପର୍କ କ'ଣ ?"

ସେହି ସମ୍ପର୍କୀୟ ମହାଶୟ କହିଲେ, "ଦେଖନ୍ତୁ ମୋ ଗାଡ଼ିର ଚକ ଆମ୍ବଗଛ କାଠରେ ତିଆରି ଏବଂ ଆପଣଙ୍କ ଘରେ ଆମ୍ବଗଛ ଅଛି, ତେଣୁ ଆପଣଙ୍କର ମୋର ସମ୍ପର୍କ ବାଦରାୟଣ ହେଲା ?" ପଣ୍ଡିତ ମୁଣ୍ଡ ହୁଙ୍କାରିଲେ ଏବଂ କହିଲେ ବାଦରାୟଣ ସମ୍ପର୍କ ହେଉ ବା ନହେଉ, କିନ୍ତୁ କ୍ଷୀର ପେଠାର ସମ୍ପର୍କ ନିଶ୍ଚିତ ଅଛି । ତେଣୁ ମହାରାଜ ! ଯାହାଙ୍କ ଠାରୁ କୌଣସି ସ୍ୱାର୍ଥ ପାଇବାର ଥାଏ, ମନୁଷ୍ୟ ତାଙ୍କୁ ବଡ଼ ସତ୍କାର କରନ୍ତି ଯଦି ଓ ତାଙ୍କ ସହିତ କୌଣସି ସମୟରେ ହୁଏତ ସମ୍ପର୍କ ନଥିବ, କିନ୍ତୁ ଯେଉଁଠାରେ କୌଣସି ସ୍ୱାର୍ଥର ଆଶା ନଥାଏ, ସେ ନିଜର ସହୋଦର ଭାଇ ହୋଇଥିଲେ ମଧ୍ୟ ମନୁଷ୍ୟ ତାକୁ ଉପେକ୍ଷା କରିଦିଏ, ତାର କଥା ମଧ୍ୟ ଶୁଣେ ନାହିଁ । ଏହିପରି ଭାବହେଲେ ସ୍ତ୍ରୀ ପୁରୁଷ ସମସ୍ତେ ଏକାପରି, କିନ୍ତୁ ପୁରୁଷ ଅପେକ୍ଷା ସ୍ତ୍ରୀମାନଙ୍କ ଭିତରେ ଏହାର ମାତ୍ରା ଅଧିକ । ଘରର ମାଲିକାଣୀ ହୋଇଥିବା ହେତୁ ତାଙ୍କର ନିଜର ପଣ ବେଶି ରହେ । ନିଜର ସ୍ୱାମୀଙ୍କୁ ପତଳା ପତଳା ଭଲ ସଫା ଫୁଲିଥିବା ଗରମ ଗରମ ରୁଟି ଚୁପ୍‌ଚାପ ଦେଇଦେବେ । ଶ୍ୱଶୁର, ଦେଢ଼ଶୁର, ଦିଅରଙ୍କୁ ଅଣ୍ଡା ମୋଟା କଞ୍ଚା ଦରକଞ୍ଚା ଦେଇଦେବେ । ପଚାରିଲେ କହିବେ, "ହାୟ ! ମୁଁ ତ ଦେଖି ନଥିଲି, ଠିକ ଅଛି ତାକୁ ଗୁଣ୍ଡ଼ିଦିଅ ।" ବିଶେଷଭାବେ ଦିଅର ଉପରେ ତାର ରାଗ ବେଶୀ । ସେହି ପୁରୁଷ ଭାଗ୍ୟଶାଳୀ, ଯାହାଙ୍କୁ ସ୍ନେହମୟୀ ଭାଉଜ ମିଳେ । ନଚେତ୍ ଭାଉଜଙ୍କର ସମସ୍ତ ରାଗ ଦିଅର ଉପରେ ଯାଏ । ବାସୀ, ଚିରିଫଟା ଶୁଖିଲାରୁଟି ଦିଅରକୁ ହିଁ ଦିଆଯାଏ, ଯଦି ସେ ଥାଏ ବେକାର । ରୋଜଗାରିଆ ଦିଅର ହେଲେ ତେବେ ତାହାର ଆଦର ପତିଠାରୁ ଅଧିକ କରେ ।"

ଶ୍ରୀ ଶୁକ କହିଲେ—"ରାଜନ୍ ! ଜଡ଼ ଭରତଙ୍କର ନଅଜଣ ଭାଉଜ ଥିଲେ । ସେଥିରୁ କେହି ମଧ୍ୟ ତାଙ୍କୁ ଭଲ ଦୃଷ୍ଟିରେ ଦେଖିବାକୁ ଇଚ୍ଛା କରୁ ନ ଥିଲେ । ସବା ଶେଷରେ ତାଙ୍କୁ ଖାଇବାକୁ ଦେଉ ନ ଥିଲେ । କେବେ କେବେ ଚୂଲିରେ ରୁଟି ତିଆରି କରି ଦେଉଥିଲେ, କେବେ କେବେ ମୁଗ ଡାଲିର ଯେଉଁ ଚୋପା ରହି ଯାଉଥିଲା, ତାହାକୁ ରୁଟି ତିଆରି କରି ଦେଉଥିଲେ । କେବେ କେବେ ବାସୀ ରୁଟି ଦେଉଥିଲେ । କେବେ ଅବା ଭାତ ତିଆରି ହାଣ୍ଡି ତଳେ ପୋଡ଼ା ଭାତକୁ ଖଡ଼ିକାରେ ଘଷି ଦେଉଥିଲେ । କେତେବେଳେ ଚଣା ଚୋପାକୁ ପେଷି କରି ଦେଉଥିଲେ । ସାରାଂଶ ଏହି ଯେ ଘରର ଯେଉଁ ବସ୍ତୁକୁ କେହି ଖାଉ ନ ଥିଲେ, ସେହି ପଦାର୍ଥମାନ ଭରତଙ୍କୁ ମିଳୁଥିଲା । ତାଙ୍କର କୌଣସି ଆଦର

ପ୍ରୟୋଜନ ନ ଥିଲା, ଯାହା ବାସିଫାସି ମିଳୁଥିଲା, ତାକୁ ଭୋକଲା ହେତୁ ପୁରା ପେଟ ଖାଇ ଦେଉଥିଲା । ତାଙ୍କର ଘର ବା ପିଲାମାନଙ୍କର ଚନ୍ତା ନ ଥିଲା । ଗୃହସ୍ଥୀ ଲୋକମାନେ ଗୃହଧନ ଚନ୍ତାରେ ବୁଡ଼ି ରହନ୍ତି । ଦୁଧ ମଲାଇ ଖାଉକରି ମଧ୍ୟ ତାଙ୍କୁ ସ୍ୱାଦ ମିଳୁ ନ ଥାଏ; ମାଡ଼ ବେଲକର ରୂପରେ କଣ୍ଟିନ୍ତା ଯୋଗୁଁ ଛପନ ଭୋଗର ସ୍ୱାଦ ଯେ ପାଉଥିଲେ । ଛପନ ଭୋଗର ସ୍ୱାଦ ମିଳେ । ଚନ୍ତାଶୂନ୍ୟତା ହେତୁ ଭରତଙ୍କର ଶରୀର ମୋଟା-ସୋଟା ହୋଇଗଲା । ସେ ମୋଟା ସବଳ ଷଣ୍ଢ ସଦୃଶ ଏଆଡ଼େ ସେଆଡ଼େ ବୁଲିବାକୁ ଲାଗିଗଲେ । କାହାରିକୁ କଟୁକଥା କହୁ ନ ଥିଲେ କିମ୍ବା କେବେ କୋଧ କରୁ ନ ଥିଲେ । ଏଥିପାଇଁ ସମସ୍ତେ ତାଙ୍କୁ ସ୍ନେହ କରୁଥିଲେ । ସେ ଖଣ୍ଡିଏ ମଇଳା କୋଚଡ଼ ପୁରୁଣା ଫଟା ଲୁଗା ଅଣ୍ଟାରେ ଗୁଡ଼ାଇ ଦେଇଥିଲେ । ବର୍ଷା ହେଉଛି ତ ବର୍ଷାରେ ଭିଜୁଛନ୍ତି । ଥଣ୍ଡା ପଡ଼ୁଛି ତ ଖାଲି ଦେହରେ ଥଣ୍ଡାରେ ପଡ଼ିଛନ୍ତି । ଗରମ ହେବାବେଳେ ପ୍ରଚଣ୍ଡ ଖରାରେ ଆନନ୍ଦରେ ଶୋଇଛନ୍ତି । ପିଲାମାନେ ତାଙ୍କୁ ଧରି ପକାଇ କହନ୍ତି—"ଆରେ ଜଡ଼ ବସି ଯା !" ସେ ବସିଯାନ୍ତି, କେହି ତାଙ୍କୁ ଘୋଡ଼ା କରନ୍ତି । ଏହି ସମୟରେ ହୁଏତ କେହି ଲୋକ ଆସି ପିଲାମାନଙ୍କୁ ଗାଳି ଦଅନ୍ତି । ପିଲାମାନେ ପଳାଇ ଯାଆନ୍ତି । ତାଙ୍କୁ କହନ୍ତି, "ଆମର କାଠଟା ଚିରଦେ ।" ସେ ଏହା ଶୁଣି କାଠ ଚିରିବା କାର୍ଯ୍ୟରେ ଲାଗିଯାନ୍ତି ଏବଂ ସ୍ୱଜନ ଲୋକର କାମ ଏକା ଏକା କରନ୍ତି । ସେ ତାଙ୍କୁ ପେଟପୁରା ଖାଇବାକୁ ଦେଇ ଦଅନ୍ତି । ସେଥିରେ ସେ ପ୍ରସନ୍ନ । ତାଙ୍କର ତ କୌଣସି ବନ୍ଧନ ନାହିଁ । ଲୋକମାନେ ସ୍ୱାର୍ଥପର । ଯେତେବେଳେ ସମସ୍ତେ ଭାବିଲେ ଯେ ଭଲ ମୂଲିଆଟିଏ ମିଳିଗଲା, ମୂଲ ନ ନେଇ କାମ କରୁଛି, ଯିଏ ଚାହେଁ ତାକୁ ଧରି ନେଇଆସେ । ସେ କୌଣସି ହୁଁ ଚୁଁ ନ କରି ତାଙ୍କ ସହିତ ଚାଲିଆସନ୍ତି । କେହି ପେଟପୁରା ଖାଇବାକୁ ଦେଲେ ପେଟ ପୁରାଇ ଖାଇନିଅନ୍ତି, କେହି କମ୍ ଦେଲା ତ ଠିକ୍ କଥା । କେହି କିଛି ନ ଦେଲେ ଭୋକରେ ଶୋଇଯାନ୍ତି । ମାଗନ୍ତି ନାହିଁ । କେହି ତାଙ୍କୁ ମୁଣ୍ଡ ଉପରେ ବୋଝ ଲଦି ଦେଇ କହେ—"ଆମ ସାଙ୍ଗରେ ଚାଲ ।" ସେ ତାଙ୍କ ସହିତ ଚାଲନ୍ତି । ଯେଉଁ ପର୍ଯ୍ୟନ୍ତ ନେଇ ଯାଆନ୍ତି, ସେ ପର୍ଯ୍ୟନ୍ତ ଯାଆନ୍ତି । ଶେଷରେ କିଛି ପଇସା ଦେଲେ ତ ପଇସା ନିଅନ୍ତି, ନ ଦେଲେ ସେଇଭଳି ଫେରି ଆସନ୍ତି । କେବେ ଭୋକ ଲାଗିଲେ କାହାକୁ ମାଗି ଦଅନ୍ତି । ଆପଣାଛାଏଁ କେହି ଦେଲା ତ ସେଠାରେ ବସି ଖାଇ ଦଅନ୍ତି । ଗାଧୋଇବା, ହାତ ଧୋଇବା, ହସିବା, କାନ୍ଦିବା କିଛି ନ ଥାଏ । ନିର୍ଦ୍ୱନ୍ଦ ହୋଇ ଆନନ୍ଦରେ ପଡ଼ି ରହନ୍ତି, ଦଣ୍ଡ ପରେ ସୁଖ ଦୁଃଖ ନ ଥାଇ ଏଆଡ଼େ ସେଆଡ଼େ ବୁଲନ୍ତି; କାରଣ ସେ ସ୍ୱତଃସିଦ୍ଧ କେବଳ ଜ୍ଞାନାନନ୍ଦରୂପ ଆତ୍ମଜ୍ଞାନ ପାଇଥାନ୍ତି । ଏଇଥିପାଇଁ ତାଙ୍କର ଦେହ ପ୍ରତି ଆଦୌ ଅଭିମାନ ନ ଥାଏ । ଯଦ୍ୟପି ତାଙ୍କର ଅଣ୍ଟାରେ ମଳିନବସ୍ତ୍ର

ଗୁଡ଼ା ହୋଇଥାଏ । ସମ୍ପୂର୍ଣ୍ଣ ଶରୀରରେ ମଳ ଜମି ରହିଥାଏ, ତା ଉପରେ ଧୂଳିରେ ଗଡ଼ିବା ହେତୁ ଦେହ ଧୂଳି ଧୂସରିତ ହୋଇଥାଏ; ତଥାପି ତାଙ୍କର ବ୍ରହ୍ମତେଜ ସ୍ପଷ୍ଟ ଝଲକୁ ଥାଏ । ତାଙ୍କ ଗଳାରେ ଗୋଟିଏ ପୁରୁଣା ମଇଳା କୋଚଟ ଯଜ୍ଞୋପବୀତ ପଡ଼ିଥାଏ, ତାକୁ ସେ କେବେ ଓହ୍ଲାଇ ନାହାନ୍ତି କିମ୍ବା ଧୋଇ ନ ଥାନ୍ତି । ଏହାକୁ ଦେଖି ଲୋକେ ଭାବି ନଥାନ୍ତି ଯେ ଏ ହେଉଛନ୍ତି ଗୋଟିଏ ନୀଚ ବ୍ରାହ୍ମଣ କିମ୍ବା ଅନ୍ୟ କୌଣସି ଦ୍ୱିଜବର୍ଣ୍ଣର ପାଗଳ ପୁରୁଷ । ଗାଆଁ ବାଲା ସବୁ କିଛି ଜାଣିଥାନ୍ତି । ସମସ୍ତେ ତାଙ୍କୁ ଜଡ଼ ଜଡ଼ କହିବାକୁ ଲାଗିଗଲେ । ଅତଏବ ସେ ଭରତରୁ ଜଡ଼ଭରତ ହୋଇଗଲେ ।"

ଶ୍ରୀ ଶୁକ କହିଲେ—"ରାଜନ୍ ! ପ୍ରତ୍ୟେକ ଦିନ ବ୍ରହ୍ମାନନ୍ଦରେ ନିମଗ୍ନ ରହୁଥିବା ଯୋଗୀ ପୃଥିବୀରେ ଅନେକ ରୂପ ନେଇ ବିଚରଣ କରନ୍ତି, ଅତଏବ ଭୁଲରେ ମଧ୍ୟ କାହାରିକୁ ଜଡ଼ ମୂର୍ଖ ଭାବି ଅପମାନିତ କରିବା ଉଚିତ ନୁହେଁ । ସମସ୍ତଙ୍କୁ ଭଗବାନଙ୍କର ରୂପ ଭାବି ଆଦର ଦୃଷ୍ଟିରେ ଦେଖିବା ଉଚିତ । ଏହା ହିଁ ଶାସ୍ତ୍ରର ସିଦ୍ଧାନ୍ତ ଅଟେ ।"

## ଛପ୍‌ପୟ

"ବୋଝ ଉଠାବେ କୋଇ ଢୋଇ ତାକେ ଘର ଡାରେ ।
ଫରବାବେ କୋ କାଷ୍ଠ ତାହି ହଁସିକେ ଚୌଁ ଫାରେ ॥
ଯାଭି ଜଡ଼ମତ ଜାନ ସ୍ୱାଦ ଯୁତ ଅନ୍ନ ନ ଦେବେ ।
ଜରଯୋ ଭୁନୋ ଜୋ ଦେହିଁ ତାହି ଅମୃତ କର ସେବେ ।
ହୃଷ୍ଟପୁଷ୍ଟ ତନୁ ସାଁଡ଼ ସମ, ଧୂପ ଶୀତ ସବ କଛୁ ସହହିଁ ।
ରହେ ସଦା ନିର୍ଦ୍ୱନ୍ଦ୍ୱ ବନ, ସଂସାରୀ ହିରୀ କହହିଁ ॥



# ଖେତ ଜଗୁଆଳ ଜଡ଼ ଭରତ

"ଲୋକଃ ସ୍ୱୟଂ ଶ୍ରେୟସି ନଷ୍ଟଦୃଷ୍ଟି
ର୍ୟୋଽର୍ଥାନ ସମିହେତ ନିକାମକାମଃ ।
ଅନ୍ୟୋନ୍ୟବୈରଃ ସୁଖଲେଶହେତୋ
ରନନ୍ତଦୁଃଖ ଚ ନ ବେଦ ମୂଢ଼ଃ ॥"

( ଭାଗବତ ୫-ସ୍କନ୍ଧ ୫-ଅଧ୍ୟାୟ ୧୬-ଶ୍ଳୋକ )

## ଛପ୍‌ପୟ

"ଭଇନ ଦେଖେ୍ୟା କାମ କାଜ ସବଇ କରବାବେ ।
ତୋ ଫିର ହମ୍ ବୈଠାଇ ବ୍ୟର୍ଥ ତ୍ୟୌ ଜାଇ ଖବାବେ ॥
ଏତହୋ ଚାକର କହୁଁ । ମିଲେ ତୋ କାମ କରେ ନତ ।
ଜନ୍ତୁ ନ ମାଁଗେ ଦାମ ନ ଜାବେ କବହୁଁ ଉତଇତ ॥
ଏସୋ ମନ ମହଁ ସୋଚକେ, ଦୟୋ ଫାବଡ଼ୋ ହାଥମେ ।
କ୍ୟାରୀ ରଚନା କରନ ହିତ, ଖେତ ଚଲେ ସେ ହାଥ ମେ ॥"

ଯାହା ହେଲେ ମଧ୍ୟ ଭାଇ ଭାଇ ଅଟେ । ଆମେ ଆମର ଭାଇକୁ ଯେତେ ଅପମାନ କଲେ, ଯେତେ ତିରସ୍କାର କଲେ, ଯେତେ ତାକୁ ଭଲ ମନ୍ଦ କହିଲେ, ତାକୁ ଆମେ ଠିକ୍ ବୁଝୁଁ; କିନ୍ତୁ ଅନ୍ୟ କେହି ଯଦି ଭାଇ ନାମରେ କିଛି କହେ, ତେବେ ଆମକୁ ଦୁଃଖ ଆସେ । ଭାଇର ହିତଦୃଷ୍ଟିରୁ ନୁହେଁ ବରଂ ନିଜର ସମ୍ପର୍କ ଦୃଷ୍ଟିରୁ । ସେଥିରେ ଆମର ଅପମାନ ହୁଏ । ଆମର ତା ସହିତ ରହିଛି ସମ୍ପର୍କ, ନିଜ ଗୌରବକୁ ରକ୍ଷା କରିବା ପାଇଁ ଆମେ ତାକୁ ସହ୍ୟ କରିପାରୁନା । କୌରବ ପାଣ୍ଡବ ପରସ୍ପର ଶତ୍ରୁ ହୋଇ ଲଢ଼ୁ ଥିଲେ, କିନ୍ତୁ ଯେତେବେଳେ ଖଳ

ଦୁର୍ଯ୍ୟୋଧନଙ୍କୁ ଯକ୍ଷମାନେ ଅପମାନ କଲେ, ତାଙ୍କୁ ଧର୍ମରାଜ ସହ୍ୟ କରିପାରିଲେ ନାହିଁ । ସେ ସ୍ପଷ୍ଟ ଭାବରେ କହିଦେଲେ—"ଯେତେବେଳେ ଆମେ ପରସ୍ପର ଲଢାଇ କରୁଛୁ, ସେତେବେଳେ କୌରବ ଏକଶତ ଭ୍ରାତ, ଆମେ ପାଞ୍ଚଭାଇ; କିନ୍ତୁ ଅନ୍ୟ କେହି ଲଢ଼ିବାକୁ ଆସିଲେ ତେବେ ଆମେ ୧୦୫ ଭାଇ ମିଳିକରି ତାହାର ସମ୍ମୁଖୀନ ହେବୁ, ସେତେବେଳେ ଆମେ ୧୦୫ ଭାଇ ହେବୁ । ଏହା ହେଉଛି ସମ୍ପର୍କର ବନ୍ଧନ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ସଂସାରରେ ଭଲମନ୍ଦ ସବୁ ପ୍ରକାରର ଲୋକ ଅଛନ୍ତି । କେତେଜଣ ଦୟାଳୁ ପୁରୁଷ ମିଳିକରି ଜଡ଼ଭରତଙ୍କର ବଡ଼ଭାଇ ନିକଟକୁ ଗଲେ ଏବଂ କହିଲେ—ଭଦ୍ର ଲୋକମାନେ ! ତୁମେ ନଅ ଭାଇ, ଭଗବାନଙ୍କ ଦୟାରୁ ତୁମର ଏଠାରେ ଖାଇବା ପିନ୍ଧିବାର ଅଭାବ ନାହିଁ । ଆରେ ! ଘରେ କୁକୁରଟିଏ ଥିଲେ ତା ମୁହଁରେ ଅଧଟା ଡାଲି ଦିଅନ୍ତି । ତୁମ ନଅ ଭାଇଙ୍କ ସହିତ ଆଉ ଗୋଟିଏ ପାଗଳ ଭାଇ, ତୁମେ ତାକୁ ଖାଇବାକୁ ଦେଇ ପାରୁନାହଁ ?"

ଏମାନଙ୍କ ମଧ୍ୟରୁ ଯେ ସବୁଠାରୁ ବଡ଼ ଥିଲେ, ସେ ଅତ୍ୟନ୍ତ ବିନମ୍ର ସହିତ କହୁଥିବା ସେହି ବ୍ରାହ୍ମଣଙ୍କୁ କହିଲେ—"ପଣ୍ଡିତେ ! ଆପଣ କେଉଁ କଥା କହୁଛନ୍ତି । ଆପଣଙ୍କ ଦୟାରୁ ଆମର ଏଠାରେ କୌଣସି କଥାର ଅଭାବ ନାହିଁ । ସେ ତ ଆମ ନିଜର ଭାଇ ଏବଂ ଦଶଜଣ ଆସି ଖାଇଲେ କିଛି କ୍ଷତି ହେବନାହିଁ । ଆମେ ତାକୁ ଖାଇବାକୁ ତ ମନା କରିନାହୁଁ । ତାକୁ କେଉଁଠି କାମ କରିବାକୁ ମଧ୍ୟ କହିନୁ । ସେ ସ୍ୱଇଚ୍ଛାରେ ଏଣ୍ଟାଡ଼େ ସେଣ୍ଟାଡ଼େ ବୁଲୁଅଛି ।"

ସେହି ବୃଦ୍ଧ ବ୍ରାହ୍ମଣ ମୂରବୀପଣିଆ ସ୍ୱରରେ କହିଲେ—"ଦେଖ ଭାଇ ! ନିଜର ପ୍ରତିଷ୍ଠା ନିଜ ହାତରେ । ତୁମେ ମୋ କଥାକୁ ହୁଏତ ଖରାପ ଭାବିପାରି; ମାତ୍ର ମୋତେ ଏହା ଆଦୌ ଭଲ ଲାଗୁନାହିଁ ଯେ ତୁମ ଭାଇ ପେଟ ପାଇଁ ଘର ଘର ବୁଲି ମୂଲ ଲାଗୁ । ତାକୁ କାମ କରିବା ଦରକାର । ତୁମ ଘରେ କ'ଣ କାମର ଅଭାବ ଅଛି । ଘର କାମ କରୁ । ତୁମେ ତାକୁ କୌଣସି କାମରେ ଲଗାଇଦିଅ । ଭାଇ ! ତୁମର ପିତାଙ୍କ ସହିତ ମୋର ଅତ୍ୟନ୍ତ ସ୍ନେହଭାବ ଥିଲା । ଏହି ସମ୍ପର୍କ ହେଉ ମୁଁ ତୁମକୁ କହିଲି । ତୁମେ କିଛି ଭାବବ ନାହିଁ ।"

ଏହା ଶୁଣି ଅତ୍ୟନ୍ତ ବିନମ୍ର ସହ ଜଡ଼ଭରତଙ୍କ ଭାଇ କହିଲେ—ପଣ୍ଡିତେ ! ଆପଣ ଆମ୍ଭକୁ କାହିଁକି ଲଜ୍ଜିତ କରୁଛନ୍ତି । ଆପଣଙ୍କୁ ଆମେ ଆମର ପିତାଙ୍କ ପରି ମାନୁ । ଆପଣ ଯଦି ତାଙ୍କୁ ଅନ୍ୟ କାହାର କାମ କରୁଥିବାର ଦେଖନ୍ତି,

ତେବେ ଆମକୁ ଯାହା ବୁଦ୍ଧିବେ ଦଣ୍ଡ ଦେବେ । ବର୍ତ୍ତମାନଠାରୁ ଆମେ ତାକୁ ଘର କାର୍ଯ୍ୟରେ ଲଗାଇବୁ ।"

ତାଙ୍କୁ ଏହିପରି ସମ୍ମତ କରି, ଦ୍ୱିତୀୟ ଦିନ ଭରତଙ୍କୁ କହିଲେ—"ଆରେ ଏ ଜଡ଼ ! ତୁ ଏଠିସେଠି କାହିଁକି କାମ କରି ବୁଲୁଛୁ ? ଘର କାମ କାହିଁକି କରୁନାହୁଁ ? ଚାଲ, ବିଲରେ କାମ କରିବୁ ।"

ତାଙ୍କର କ'ଣ ବା ଆପତ୍ତି ଥିଲା । ଫାଉଡ଼ା କାନ୍ଧ ଉପରେ ରଖି ଭାଇମାନଙ୍କ ସହିତ ବିଲକୁ ବାହାରିଗଲେ । ଭାଇମାନେ ଦୁଇ ଚାରି କିଆରୀ ପ୍ରସ୍ତୁତ କରି କହିଲେ—"ସନ୍ଧ୍ୟାବେଳ ପର୍ଯ୍ୟନ୍ତ ସବୁ ବିଲକୁ ଠିକ୍ କରିଦେବୁ ।" ସେ ମୁଣ୍ଡ ହଲାଇ କହିଲେ—"ହଁ" । ଏହା ଶୁଣି ଭାଇମାନେ ଘରକୁ ଫେରିଗଲେ ।"

ବର୍ତ୍ତମାନ ସେ ଭାବିଲେ—"ଆଜି ଯଦି ବୁଦ୍ଧିମାନ୍ ହୋଇ କାର୍ଯ୍ୟ କରିବି, ତେବେ ଏମାନେ ମୋତେ ସଦାସର୍ବଦା ହଇରାଣ କରିବେ । ସେଥିପାଇଁ ଗାତ ଖୋଳିବାକୁ ଆରମ୍ଭ କରିଦେଲେ । ବିଲରେ ଏହିପରି ଖୋଳୁ ଖୋଳୁ ଘାଇ ପରି କରିଦେଲେ ଏବଂ ଅନ୍ୟଠାରେ ମାଟିର ପାହାଡ଼ ସୃଷ୍ଟି କଲେ । ଦିନସାରା ପରିଶ୍ରମ କରି ଘର୍ମାକ୍ତ ଦେହ ଝାଳରେ ଲଟପଟ ହୋଇଗଲା । ସନ୍ଧ୍ୟାବେଳକୁ ଭାଇ ଆସିଲେ । ସେ ଯେତେବେଳେ ତାଙ୍କର ଏହି କାର୍ଯ୍ୟ ଦେଖିଲେ, ଆଚମ୍ଭିତ ହୋଇଗଲେ । ବଡ଼ଭାଇ ବହୁତ ରାଗିଗଲେ । ଅଭଦ୍ର ଭାବରେ ଗାଳିଦେବାକୁ ଲାଗିଲେ । ଏହା ଶୁଣି ମଝିଆ ଭାଇ ବୁଝାଇବାକୁ ଯାଇ କହିଲେ, "ଭାଇ ! ଆପଣ କାହିଁକି ଖାଲି ଖାଲି କ୍ରୋଧ କରୁଛନ୍ତି । ଯଦି ତାଙ୍କର ବୁଦ୍ଧି ଥାନ୍ତା, ତେବେ ପିତା ଏତେ ପଢ଼ାଇଲେ ମଧ୍ୟ ସେ କଣ ପଢ଼ି ନ ଥାନ୍ତେ । ଆପଣ ମଧ୍ୟ ତାକୁ କପରି କାମ କରିବାକୁ କହିଲେ । କିଆରୀ ପ୍ରସ୍ତୁତ କରିବାକୁ ମଧ୍ୟ ବୁଦ୍ଧିର ପ୍ରୟୋଜନ ରହିଛି । ଆପଣ ତାକୁ ଅନ୍ୟ କୌଣସି କାମ କରାନ୍ତୁ ।"

ଏହା ଶୁଣି ବଡ଼ଭାଇ କହିଲେ, ଠିକ୍ କଥା । ବିଲ ଉପରେ ଗୋଟିଏ ମଞ୍ଚା ତିଆରି କରିଦିଅ । ଏହିଠାରେ ସେ ଦିନରାତି ରହି ଖାଉଥିବା ପଶୁପକ୍ଷୀଙ୍କୁ ଘଉଡ଼ାଇବ । ଏଥିରେ ବୁଦ୍ଧିର କୌଣସି ଆବଶ୍ୟକତା ନାହିଁ ।

ଏହା ଶୁଣି ଦ୍ୱିତୀୟ ଭାଇ କହିଲେ—"ହଁ, ଏହା ଠିକ୍ କଥା । ଏଠାରେ ମଞ୍ଚ ଉପରେ ବସି "ହୋ, ହୋ, କରିବ, ପଶୁ ପକ୍ଷୀମାନଙ୍କୁ ଘଉଡ଼ାଇବ ।" ସବୁ ଭାଇମାନଙ୍କର ସମ୍ମତି ହୋଇଯିବାରୁ ଏହିଭଳି କରାଗଲା । ଜମିର ମଝିଭାଗରେ ଉଚ୍ଚ ମଞ୍ଚା ପ୍ରସ୍ତୁତ କରି ତା ଉପରେ ଘାସରେ ଛାଇ ଦିଆଗଲା । ଭରତଙ୍କୁ ତା ଉପରେ ବସାଇଦେଇ କହିଲେ—"ସବୁବେଳେ ସାବଧାନ ରହିବୁ, କ୍ଷେତର

ଫସଲକୁ ଚଢ଼େଇମାନେ ଯେପରି ନଷ୍ଟ ନ କରୁଥାନ୍ତୁ ।" ଏହି କାମରେ ଭରତ ଅତ୍ୟନ୍ତ ଆନନ୍ଦିତ ହେଲେ । ଭାବିବାକୁ ଲାଗିଲେ, "ଭଲ ହେଲା, ଝିନ୍‌ଝଟ ଗଲା । ଉଧାର ନେବାର ନାହିଁ କି ମାଧର ଦେବାର ନାହିଁ । ଏଠାରେ ଏକାନ୍ତରେ ରହି ଭଗବାନଙ୍କର ଭଜନ କରିବି ଏବଂ ଆନନ୍ଦରେ ବଂଶୀ ବଜାଇବି ।"

ବର୍ତ୍ତମାନ ସେ ଗନ୍ଧବନ ଜମିରେ ବିଶ୍ୱସନ ପକାଇ ବସିଗଲେ । ପଶୁପକ୍ଷୀ-ମାନଙ୍କୁ ଦାଣ ଅବା ଘଉଡ଼ାଇବାର ଥିଲା, ସେଠାରେ ବସି ଭଗବାନଙ୍କର ପାଦପଦ୍ମକୁ ପ୍ରେମ ସହକାରେ ଧ୍ୟାନ କରିବାକୁ ଲାଗିଲେ । ମନକୁ ଭଗବାନଙ୍କର ରୂପ ମାଧୁର୍ଯ୍ୟରେ ତନ୍ମୟ କରିଦେଲେ । କେବେ କେବେ ତାଙ୍କର ଭାଇ ବାସି ଶୁଖିଲା ଚଳପଡ଼ିବା ରୁଟି, ଡାଲି, ଭାତ, ଶାଗ ପଠାଇ ଦେଉଥିଲେ । ତାକୁ ଅତ୍ୟନ୍ତ ଆନନ୍ଦ ସହକାରେ ପେଟପୂରି ଖାଇ ପୋଖରୀରୁ ପାଣି ପିଇ ଦେଉଥିଲେ । କେବେ ରୁଟି ନଆସିଲେ ବିଲରୁ ଶସ୍ୟ ଉପାଡ଼ି ତାକୁ ସେକାଇ ଖାଇ ଦେଉଥିଲେ । ତାଙ୍କର ଚିନ୍ତା ବା ଦୁଃଖ ନଥିଲା । ପେଟପୂରି ଖାଉଥିଲେ ଏବଂ ଆରାମରେ ଶୋଉଥିଲେ । ଥଣ୍ଡାରେ ଗରମରେ ମଇଁଷିପରି ପଡ଼ି ରହୁଥିଲେ, ଗରମ ଦିନରେ ଗଛତଳେ ଗଡ଼ି ପଡ଼ୁଥିଲେ । ବର୍ଷାବେଳେ ପଡ଼ିଆରେ ପଡ଼ି ରହୁଥିଲେ । ବାଳ ବଢ଼ିକରି ଜଟି ହୋଇ ଯାଇଥିଲା, ଲତାପରି ହୋଇଥିଲା । ଦାଢ଼ି ବାହାରିକୁ ବାହାରି ଆସିଥିଲା । ଶରୀରର ଚମ ଜଙ୍ଗଲ ମଇଁଷି ପରି କଳା ଏବଂ କଠୋର ହୋଇ ଯାଇଥିଲା । ଖାଇଲାବେଳେ ସେ ହାତ ପିଲାପରି ହଲି ହଲି ଖାଉଥିଲେ । ଦୂରରୁ ଭାଇ ଆସିବାର ଦେଖିଲେ, ତେବେ ହୋ ହୋ ପାଟି କରୁଥିଲେ । ସେ ଚାଲିଯିବା ପରେ ସେ ପୁନଶ୍ଚ ଧ୍ୟାନମଗ୍ନ ହୋଇ ଯାଉଥିଲେ । ତାଙ୍କର ସିଂହ ବ୍ୟାଘ୍ରକୁ ଭୟ ନଥିଲା । ଭୟକୁ ଭୟଭୀତ କରିବା ଲୋକଥିଲେ ସେ । ସେ ଏ ସଂସାରରେ ଜୀବନ୍ତ ଅବସ୍ଥାରେ ବ୍ରହ୍ମାନନ୍ଦ ସୁଖରୂପକ ଆନନ୍ଦକୁ ଲୁଟି ନେଉଥିଲେ । ଖରା ଶୀତ, ମାନ ଅପମାନ, ଯଶ ଅପଯଶ, ସୁଖ-ଦୁଃଖ ସବୁଥିରେ ତାଙ୍କର ହୃଦୟ ଅତ୍ୟନ୍ତ ପ୍ରସନ୍ନ ରହୁଥିଲା । ଅନୁକୂଳ ବା ପ୍ରତିକୂଳ ଉଭୟ ଅବସ୍ଥାରେ ସେ ପ୍ରସନ୍ନ ରହୁଥିଲେ । ସମସ୍ତେ ତାଙ୍କୁ ପାଗଳ ବୋଲି ଭାବୁଥିଲେ କିନ୍ତୁ ସେ ଯଥାର୍ଥ ସ୍ୱାର୍ଥ ସାଧନ ପାଇଁ ସଦାସର୍ବଦା ଚେଷ୍ଟିତ ଥିଲେ । ତାଙ୍କୁ କେହି ନିଜବାଟରୁ ଓହରାଇ ପାରୁ ନଥିଲା ।

ତାଙ୍କର ଭାଇ ତାଙ୍କର ଏପରି ଉଚ୍ଚ ଅବସ୍ଥାକୁ ବୁଝିପାରୁ ନଥିଲେ । କିପରି ବୁଝିବେ, ସେମାନେ କର୍ମକାଣ୍ଡକୁ ହିଁ ସବୁକିଛି ବୋଲି ଗ୍ରହଣ କରିଥିଲେ । ସେମାନେ ନିଜକୁ କୁଳୀନ ବିଦ୍ୱାନ ଓ ସର୍ବଶ୍ରେଷ୍ଠ ବୋଲି ଭାବୁଥିଲେ । ସେମାନଙ୍କ ପାଇଁ ସ୍ୱର୍ଗସୁଖ ସବୁ ଥିଲା । ମୋକ୍ଷ ମାର୍ଗରେ ସେମାନେ ସମ୍ପୂର୍ଣ୍ଣ ଅନଭିଜ୍ଞ ଥିଲେ । ଏଭଳି ଅନଧିକାରୀମାନଙ୍କୁ ଭରତ ଉପଦେଶ ଦେବା ବ୍ୟର୍ଥ ଭାବିଲେ କାରଣ

ମରୁଭୂମିରେ ବୀଜବପନ କଲେ ତାହା ଅଙ୍କୁରିତ ହୁଏ ନାହିଁ । ଯଦି ଉର୍ବର ଗାଢ଼ ଜମିରେ ସମୟ ଅନୁସାରେ ବିଧିବଦ୍ଧ ଭାବରେ ବୀଜ ବୁଣାଯାଏ, ତେବେ ତାହା ଅଙ୍କୁରିତ ହୋଇ ଫୁଲ ଫଳ ଧରିବ। ଭରତଙ୍କ ଜୀବନରେ କେବଳ ଜଣେ ଅଧିକାରୀ ମିଳିଲେ । ତାଙ୍କର ସାମନାରେ ସେ ନିଜର ଜ୍ଞାନଭଣ୍ଡାର ଖୋଲିଦେଲେ । ତାଙ୍କୁ ଉପଦେଶ ଦେଇ ଭରତ ଅଜର ଅମର ହୋଇଗଲେ । ସେହି ଜ୍ଞାନରେ ଅସଂଖ୍ୟ ଇତଃସ୍ତତ ଭ୍ରମୁଥିବା ପ୍ରାଣୀ ଏହି ଅସାର ସଂସାରରୁ ପାରିକରି ଗଲେ ଏବଂ ଆଗକୁ ମଧ୍ୟ କରୁଥିବେ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଏହିପରି ଭାବରେ ବର୍ତ୍ତମାନ ଶ୍ରୀ ଜଡଭରତ ଖେତ ଜଗୁଆଳୀ ହୋଇଗଲେ ।"

## ଛପ୍ପୟ

"ଲମ୍ବୋ ଫାବଡ଼େ ହାଥ ଖେତକୁଁ ଲାଗେ ଖୋଦନ ।
ଗଡ଼୍ଢା ଭରି ଖନେୟା ଲଗେ ସବ ଭାଇ ରୋକନ ।।
କହେ ପରସ୍ପର ବୁଦ୍ଧିହୀନ କ୍ୟାରୀ ନ ବନାବେ ।
ଦେହୁ ମଞ୍ଚ ବୈଠାଇ ବୈଠିକେ ଖେତ ରଖାବେ ।।
ଜୈସେଭାଇ କହହିଁ ବେ, ତୈସୋ ଇ କାରଜ କରତ ।
ନହେଁ ବନେ ଅବ ଖେତ କେ, ରଖବାରେ ଶ୍ରୀଜଡ଼ ଭରତ"।।



# ଜଡ଼ଭରତ ବଳି ପଶୁ ହେଲା

"ଆର୍ଷଭସ୍ୟେହ ରାଜର୍ଷେର୍ମନସାପି ମହାତ୍ମନଃ ।
ନାନୁବର୍ତ୍ମାର୍ହତି ନୃପୋ ମକ୍ଷିକେବ ଗରୁତ୍ମତଃ ॥"

( ଭାଗବତ ୫-ସ୍କନ୍ଧ ୧୪-ଅଧ୍ୟାୟ ୪୨-ଶ୍ଳୋକ )

## ଛପ୍ପୟ

"ପୁତ୍ର ହୀନ ନୃପ ଶୁଦ୍ର ମନୌତି ମନ ମେ ମାନୀ ।
ମାନୁଷ କୀ ବଳି ଦେହୁଁ ପୁତ୍ର ଯୁଦ୍ଧ ଦେହୁ ଭବାନୀ ॥
ଭୟ୍ୟୋ ପୁତ୍ର ଇକ ପୁରୁଷ ପକର ବଲିହିତ ସବ ଲ୍ୟାୟେ ।
ନଷ୍ଟା ମାହୁ ଭଗୀ ଗୟ୍ୟୋ ଦାସ ଅତହୀ ଘବରାୟେ ॥
ବଳ ପଶୁକୁଁ ଖୋଜତ ଫିରେ, ସୋଚେ ମୂରଖ ଗୟ୍ୟୋ କହୁଁ ।
ଆୟେ ଖୋଜତ ଖେତ ପୈ, ବୈଠେ ଦ୍ୱିଜବର ଭରତ ଜହୁଁ ॥"

ସିଦ୍ଧାନ୍ତ ଅନୁସାରେ ସଂସାରକୁ ଅସାର ଜାଣିନେବା ଅଲଗା କଥା କିନ୍ତୁ ବିପତ୍ତିରେ ପଡ଼ିଯିବା ପରେ ତାହାକୁ ବିପତ୍ତି ବୋଲି ବିଚାର ନକରିବା, ପ୍ରାଣ ଉପରେ ଆଘାତ ଲାଗିଲେ ମଧ୍ୟ ନିର୍ବିକାର ରହିବା, ମୃତ୍ୟୁର ଆଦୌ ଚିନ୍ତା ନକରିବା ଏହା ଜ୍ଞାନର ଯଥାର୍ଥ ଲକ୍ଷଣ ଅଟେ । ବାଚିକ ଜ୍ଞାନ ବହୁ ଲୋକଙ୍କର ଥାଏ, ମାତ୍ର ଆବଶ୍ୟକବେଳେ କାର୍ଯ୍ୟରେ ନଆସିଲେ, ଧ୍ୟାନ ଯଦି ହୃଦୟକୁ ସ୍ପର୍ଶ ନକରେ, ତେବେ ଏହା କେବଳ ବ୍ୟସନ ଅଟେ । ମନରେ ଏହି ଦୃଶ୍ୟପ୍ରପଞ୍ଚ-ଅଲଗା ହୋଇଗଲେ, ଅନୁକୂଳ ପ୍ରତିକୂଳରେ ବେଦନାର ହୃଦୟରେ କୌଣସି ପ୍ରଭାବ ପଡ଼େନାହିଁ । ସମସ୍ତ କାର୍ଯ୍ୟରେ ସଦାସର୍ବଦା ଶ୍ରୀହରିଙ୍କର ଇଚ୍ଛା ହିଁ ଅବଲୋକନ କରିବା ଏହା ପ୍ରକୃତ ସ୍ଥିତପ୍ରଜ୍ଞଙ୍କର ଲକ୍ଷଣ । ଶ୍ରୀ ଜଡ଼ଭରତ ନିଜର ଜୀବନରେ ଏହିପରି ପରିସ୍ଥିତିକୁ ପ୍ରତ୍ୟକ୍ଷ କରି ଦେଖାଇ ଦେଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଭରତ ବର୍ତ୍ତମାନ ଜମିର ଜଗୁଆଳୀ ହୋଇଯାଇ ଭଜନ ଓ ଧ୍ୟାନରେ ମଗ୍ନ ରହିଲେ । ତାଙ୍କ ରାଜ୍ୟସୀମାରେ ଜଣେ ଶୂଦ୍ର ରାଜାଥିଲେ । ସେ ସମୟରେ ଜଙ୍ଗଲୀ ଜାତିର ବହୁତ ରାଜାଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ରଜୋଗୁଣ ଏବଂ ତମଗୁଣ ସମ୍ପନ୍ନ ଥିବାରୁ କାଳୀଙ୍କର ଉପାସକ ଥିଲେ, ଯେଉଁମାନେ ମାଂସ ଓ ମଦରେ ଭଦ୍ରକାଳୀଙ୍କୁ ପୂଜା କରୁଥିଲେ । ଛେଳି ଏବଂ ମହିଷି ଇତ୍ୟାଦି କାଳୀଙ୍କ ନିକଟରେ ବଳି ଦେଉଥିଲେ, କେବେ କେବେ ମଣିଷ ବଳି ମଧ୍ୟ ଦେଉଥିଲେ । ପୂର୍ବ ଦେଶମାନଙ୍କରେ ଯେଉଁଠାରେ ବର୍ତ୍ତମାନ ପର୍ଯ୍ୟନ୍ତ କାଳୀପୂଜାର ପ୍ରଚାର ଅଛି, ବଳିଦାନ ପ୍ରଥା ମଧ୍ୟ ପ୍ରଚଳିତ ରହିଛି ।"

ସେହି ଶୂଦ୍ରରାଜାଙ୍କର କୌଣସି ସନ୍ତାନ ନଥିଲେ । ସେ ଭଦ୍ରାକାଳୀଙ୍କ ସମ୍ମୁଖରେ ମାନସିକ କରିଥିଲେ ଯେ, ହେ ଦେବୀ ! ଯଦି ମୋର ପୁତ୍ର ହୁଏ, ତେବେ ମୁଁ ତୁମକୁ ନରବଳି ଦେବି ।

ଭାଗ୍ୟବଶତଃ, କାଳୀଙ୍କ କୃପାରୁ କିଛିଦିନ ପରେ ରାଜାଙ୍କର ଗୋଟିଏ ପୁତ୍ର ସନ୍ତାନ ଜନ୍ମହେଲା । ରାଜା ବଡ଼ ପ୍ରସନ୍ନ ହେଲେ । ଅତ୍ୟନ୍ତ ସମାରୋହରେ ଭଦ୍ରକାଳୀଙ୍କର ପୂଜା ହେବାର ଆୟୋଜନ କରାଗଲା । ପୂଜା କରିବାର ସମସ୍ତ ପଦାର୍ଥ ଏକାଠି କରାଗଲା । ସେବକମାନଙ୍କୁ ଆଜ୍ଞା ଦିଆଗଲା ଯେ କୌଣସି ସର୍ବ-ଲକ୍ଷଣଯୁକ୍ତ ପୁରୁଷକୁ ବଳିଦାନ ପାଇଁ ନେଇକରି ଆସ । ଭୃତ୍ୟମାନେ ଚାରିଆଡ଼େ ବୁଲିବାକୁ ଲାଗିଲେ କିନ୍ତୁ ନିଜ ଇଚ୍ଛାରେ ନିଜ ମୁଣ୍ଡଦେବାକୁ କିଏ କାହିଁକି ଆସିବ, ସେମାନଙ୍କୁ କୌଣସି ପୁରୁଷ ପଶୁବଳି ହେବା ପାଇଁ ମିଳିଲା ନାହିଁ । ଶେଷରେ ଅରଣ୍ୟରୁ ଜଣେ ପଥିକକୁ ଭୁଲାଇ ନେଇ ଆସିଲେ । ସେହି ପୁରୁଷ ଯେତେବେଳେ ଜାଣିଲା ଯେ ସେ ବଳି ନିମିତ୍ତ ଆସିଅଛି, ସେ ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିଲା । କିନ୍ତୁ ସେ କୌଣସି ଆପତ୍ତି କଲାନାହିଁ । ଭୃତ୍ୟମାନେ ତାଙ୍କୁ ଗୋଟିଏ ଦଉଡ଼ିରେ ବାନ୍ଧି ମନ୍ଦିର ନିକଟରେ ଶୋଇ ପଡ଼ିଲେ । ଯେତେବେଳେ ସମସ୍ତ ପହରା ଦେଉଥିବା ଲୋକମାନେ ଶୋଇଗଲେ, ସେହି ପୁରୁଷ ଆସ୍ତେ ଆସ୍ତେ ଉଠିଲା । ଆସ୍ତେ ଆସ୍ତେ ସେ ତାର ସମସ୍ତ ବନ୍ଧନକୁ ଖୋଲିଦେଇ ପଛଦ୍ୱାର ଖୋଲି ପଳାଇ ଗଲା ।

ରାତ୍ରି ଅର୍ଦ୍ଧରେ ନିଦ ଭାଙ୍ଗିବା ବେଳକୁ ଭୃତ୍ୟମାନେ ଯେତେବେଳେ ଦେଖିଲେ ଯେ ବଳିପାଇଁ ଆସିଥିବା ପୁରୁଷ ପଳାଇ ଯାଇଛି, ସେମାନେ ଅତ୍ୟନ୍ତ ଚିନ୍ତିତ ହୋଇପଡ଼ିଲେ । ସେମାନେ ପରସ୍ପର ମଧ୍ୟରେ କହିବାକୁ ଲାଗିଲେ—ଦେଖ; କାଲି ହେଉଛି ବଳିଦାନର ଦିନ । ଏ ଲୋକଟି ପଳାଇବା କଥା ଯେ ପର୍ଯ୍ୟନ୍ତ ରାଜା ନ ଜାଣିଛି, ସେ ଭିତରେ ଅନ୍ୟ କାହାକୁ ଆଣି ଏଠାରେ ବସାଇ ଦିଅ ।

ଏଥିରେ ରାଜାର କାମ ହୋଇଯିବ ଏବଂ ଆମ୍ଭମାନଙ୍କର ପ୍ରାଣ ମଧ୍ୟ ସଂକଟାପନ୍ନ ହେବନାହିଁ । ଏହା ଭାବି ସେହି ଲୋକମାନେ ପୁରୁଷଟିଏକୁ ଖୋଜିବାକୁ ଲାଗିଲେ ।

ସୌଭାଗ୍ୟବଶତଃ ସେହି ଭୃତ୍ୟମାନେ ବୀରାସନରେ ବସିଥିବା ବ୍ରାହ୍ମଣ-ଶ୍ରେଷ୍ଠ ମହାମୁନି ପରମହଂସ ଜଡଭରତଙ୍କୁ ଦେଖିଲେ । ସେମାନଙ୍କ ମଧ୍ୟରୁ କେହି ତାଙ୍କୁ ଜାଣିନଥିଲେ । ସେମାନେ କହିଲେ—"ଆରେ ! ଏହି ଜଡ ବଡ ହୃଷ୍ଟପୁଷ୍ଟ ଅଟେ । ଏହାକୁ ଯେ ଯାହା କହେ, ସେ କରିଦିଏ । ଯଦି ଆମେ ତାକୁ ଆମ ସହିତ ଯିବାକୁ କହିବା, ତେବେ ସେ ଆମ ସହିତ ଯିବ । ଏ ସ୍ଥୂଳକାୟ ଏବଂ ହୃଷ୍ଟପୁଷ୍ଟ ଅଟେ । ରାଜା ଏହାକୁ ଦେଖି ଅତ୍ୟନ୍ତ ପ୍ରସନ୍ନ ହେବେ । ଭଦ୍ରକାଳୀ ମଧ୍ୟ ଏପରି ମୋଟାଲୋକର ବଳିପାଇ ଖୁସିହେବେ । ଏ ମଧ୍ୟ କୌଣସି ଆପତ୍ତି କରିବନାହିଁ । ଏଇ ପାଗଳଟାକୁ ଧରି ନେଇଯିବା ।"

ଅର୍ଥଲୋଭୀ ଦୋଷକୁ ଦେଖିପାରେ ନାହିଁ । ରାଜଭୃତ୍ୟମାନେ ଭରତଙ୍କ ପାଖକୁ ଆସି କହିଲେ—"ଆରେ, ଏ ପାଗଳ ! ତୁ ଆମ ସହିତ ବର୍ତ୍ତମାନ ଚାଲ, ଆମେ ତୋତେ ଲଡୁ ଖୁଆଇବୁ ।" ତାଙ୍କର ଲଡୁ ପେଡ଼ା ଖାଇବାର ଲୋଭ ତ ନ ଥିଲା, ତାକୁ ଚାଲିବାକୁ କହିବାରୁ ସେ ଚାଲିବାକୁ ଲାଗିଲେ । ଭୃତ୍ୟମାନେ ତାଙ୍କୁ ଘରପାଖରୁ ଦଉଡ଼ିରେ ଭିଡ଼ି ବାନ୍ଧିଦେଲେ ଯେପରି ସେ ପଳାଇଯାଇ ପାରିବେ ନାହିଁ । ସେ ଦଉଡ଼ିରେ ବାନ୍ଧିହେବା ପାଇଁ ଆଦୌ ଆପତ୍ତି କଲେ ନାହିଁ । ରାତସାରା ତାଙ୍କୁ ଆଣି ମନ୍ଦିରରେ ବସାଇ ଦେଲେ ।

ସକାଳ ହେଲା । ରାଜା ତାଙ୍କର ପୁରୋହିତଙ୍କୁ ସାଙ୍ଗରେ ଆଣି ଆସିଲେ । ସେ ଆସିବା ମାତ୍ରେ ବଳିପଡିବା ପୁରୁଷକୁ ଦେଖିଲେ । ଦେଖିବାମାତ୍ରେ ସେ କହିଲେ—ଆରେ, କାଲିତ ଏ ବଡ଼ ଦୁର୍ବଳ ଥିଲା, ରାତି ଭିତରେ ସେ, ଏତେ ମୋଟା ହୋଇଗଲା କପରି ?" ଭୃତ୍ୟମାନେ କହିଲେ —"ମହାରାଜ ! ରାତସାରା ସେ ଜୋରରେ ଖିଆପିଆ କରିଛି, ଦେବୀଙ୍କର କୃପାତ ରହିଛି, ତାଙ୍କର ମହିମା କିଏ ଜାଣିପାରେ ? ଦେଖନ୍ତୁ, ସେ କପରି ପ୍ରସନ୍ନ ଦେଖାଯାଉଛି ।" ରାଜା ବିଶେଷ କିଛି ପଚାରିଲେ ନାହିଁ କାରଣ ବଳିଦେବା ପାଇଁ ସେ ବ୍ୟାକୁଳ ଥିଲେ ଯେ କୌଣସି ବଳିପଡୁ ହେଲେ ଚଳିବ ।

ସେ ଜଙ୍ଗଲୀ ଚୋରି ଡକାୟତି କରୁଥିବା ଲୋକମାନଙ୍କର ରାଜା ଥିଲେ । ନିଜର ଲୋକମାନଙ୍କ ସହିତ ଲୁଟପାଟ କରିବାକୁ ଜଙ୍ଗଲରେ ଦୁର୍ଗକରି ରହିଥିଲେ । ଦସ୍ୟୁମାନଙ୍କ ମଧ୍ୟରେ ମଧ୍ୟ ଧର୍ମକର୍ମ ପ୍ରଚଳିତ ଥିଲା । ସେମାନେ ମଧ୍ୟ ତାଙ୍କ ସାଙ୍ଗରେ ପୁରୋହିତଙ୍କୁ ରଖୁଥିଲେ ଏବଂ ନିଜର ଇଷ୍ଟଦେବଙ୍କୁ ଅତ୍ୟନ୍ତ ଧୂମଧାମରେ ବିଧି-ପୂର୍ବକ ତାମସୀ ପୂଜା କରୁଥିଲେ । ବଳିଦାନ ପାଇଁ ଅନୁଚର ମାନେ ପ୍ରସ୍ତୁତ ହେବାକୁ ଲାଗିଲେ ।

ଭରତଙ୍କୁ ପଶୁବଳି କରାଯାଉଥିଲା । ବଳିଦାନ ପୂର୍ବରୁ ବଳିପଶୁ ମଧ୍ୟରେ ଦେବତାଙ୍କର ଆବାହନ କରାଯାଉଥିଲା, ବିଧିପୂର୍ବକ ତାଙ୍କର ପୂଜା କରାଯାଉଥିଲା ତତ୍ପରେ ବଳିଦାନ ଚଢ଼ାଯାଉଥିଲା ।

ଦସ୍ୟୁରାଜାଙ୍କର ଭୃତ୍ୟମାନେ ଜଡ଼ଭରତଙ୍କୁ ପ୍ରଥମେ ବିଧିପୂର୍ବକ ସ୍ନାନ କରାଇଲେ । ଭୃତ୍ୟମାନଙ୍କୁ ଜଣା ପଡ଼ିଲା ଯେପରି ଜନ୍ମ ହେବାର ଛଅଦିନରେ ତାଙ୍କୁ ସେ ଯାହା ଗାଧୋଇଲେ କିମ୍ବା ତାଙ୍କ ବାପା କେବେ ଜବରଦସ୍ତି ତାଙ୍କୁ ସ୍ନାନ କରାଇ ଦେଇଥିଲେ, ନଚେତ୍ ସ୍ନାନରେ ତାଙ୍କର କଣ କାର୍ଯ୍ୟ ଥିଲା । ଆଜି ତେଲ ଲଗାଇ ସୁଗନ୍ଧିତ ଦ୍ରବ୍ୟରେ ତାଙ୍କୁ ସ୍ନାନ କରାଗଲା । ସ୍ନାନ ସମାପନ କରି ତାଙ୍କୁ ଧଳାବସ୍ତ୍ର ପିନ୍ଧାଇ ଦିଆଗଲା । ସମସ୍ତେ ଦେହରେ ସୁଗନ୍ଧିତ ଚନ୍ଦନ ଲେପନ କଲେ, ନାନାପ୍ରକାର ଆଭୂଷଣ ପିନ୍ଧାଇଲେ । ସୁଗନ୍ଧିତ ପୁଷ୍ପର ମାଳା ପିନ୍ଧାଇଲେ ଏବଂ ନାନାବିଧ ଦ୍ରବ୍ୟ ବ୍ୟଞ୍ଜନ ତାଙ୍କ ସମ୍ମୁଖରେ ଖାଇବାପାଇଁ ରଖାଗଲା । ସେ ଦୁଇଦିନରୁ ଭୋକିଲା ଥିଲେ । ଆଖି ବନ୍ଦକରି ସେ ଖାଇବାକୁ ଲାଗିଗଲେ । ଖଟା-ମିଠାର ତାଙ୍କର କୌଣସି ବିଚାର ନ ଥିଲା । ଯାହା ମିଳିଲା, ଲଡୁ ମିଳିଲା ତ ଲଡୁ ଖାଇଲେ, ବଡ଼ିବରା ମିଳିଲା ତ ତାକୁ ଖାଇଲେ । ଏହିପରି ଭାବରେ ଅତ୍ୟନ୍ତ ଆନନ୍ଦିତ ହୋଇ ପେଟପୂରାଇ ଭୋଜନ କଲେ ।

ଶ୍ରୀ ଶୁକ କହିଲେ—"ମହାରାଜ ! ଏହି ମହାନ୍ ଋଷିଙ୍କ ଆତ୍ମାମାନଙ୍କର ଅନାସକ୍ତ ଭାବକୁ ଦେଖନ୍ତୁ । ମୃତ୍ୟୁ ସମ୍ମୁଖରେ ଦଣ୍ଡାୟମାନ । ସିଏ ବୁଝୁଛନ୍ତି ଯେ ଏହି ଦସ୍ୟୁ ମୋତେ କାଳୀଙ୍କ ସମ୍ମୁଖରେ ବଳିଦେବ । ବର୍ତ୍ତମାନ ତୀକ୍ଷ୍ଣ ଖଡ଼୍ଗରେ ମୋର ମୁଣ୍ଡକୁ ଶରୀରରୁ ପୃଥକ କରିଦେବ । ମାତ୍ର ସେଥିପାଇଁ ଆଦୌ ଚିନ୍ତା ନକରି ଅତ୍ୟନ୍ତ ଆନନ୍ଦରେ ଭୋଜନ କରୁଅଛନ୍ତି । ମରିବାର ଭୟନାହିଁ କିମ୍ବା ପ୍ରାଣର ଭୟନାହିଁ । ଯାହା ହେଉଛି ସେଥିରେ ମଗ୍ନ, ତାଙ୍କପାଇଁ ଅନୁକୂଳ ପ୍ରତିକୂଳର କୌଣସି ପ୍ରଭେଦ ନାହିଁ ।"

ଭରତ ପେଟପୂରାଇ ଖାଇଦେଇ ବଡ଼ ଜୋରରେ ଏଢ଼ଡ଼ ମାରି ସେ ପେଟଉପରେ ହାତବୁଲାଇ ଆଣିଲେ । ପୁଣି ଭୃତ୍ୟମାନେ ଧୂପ, ମାଳା, ଫଳ, ଫୁଲ, ଖିଲ, ଇଖ, ପତ୍ର, କଣ୍ଢପୁଞ୍ଜ ଏବଂ ବିବିଧ ପ୍ରକାର ନୈବେଦ୍ୟ ଇତ୍ୟାଦି ପୂଜା ସାମଗ୍ରୀ ସହିତ ଅତ୍ୟନ୍ତ ଧୂମଧାମ ସହକାରେ ବଳିଦାନ ପାଇଁ କାଳୀଙ୍କ ସମ୍ମୁଖକୁ ତାଙ୍କୁ ନେଇଗଲେ । ସେ ହସିହସି ଆଗେଆଗେ ମନ୍ଦ ହାତୀପରି ଚାଲିବାକୁ ଲାଗିଲେ । ସମସ୍ତ ଡାକୁମାନେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଉଥିଲେ ଯେ ପ୍ରଥମେ ସେ ବଳି ଦେବାବେଳେ ବଳିଦାନ ପୁରୁଷ କାନ୍ଦିକରି ଦୁଃଖିତ ମନରେ ଯାଉଥିଲା । ଏ ଥିଲା ଏକ ବିଚିତ୍ର ବଳି ପଶୁ ଯେ ନିଜକୁ ନିଜେ ହସିହସି ଯାଉଅଛି । କିନ୍ତୁ ସେମାନେ ଜାଣି ନଥିଲେ ଯେ ସେ ପଶୁ ନୁହଁନ୍ତି । ପଶୁପତି ଅଟନ୍ତି, ନର ନୁହଁନ୍ତି ନରଶ୍ରେଷ୍ଠ ଅଟନ୍ତି । କାଳୀ ମଧ୍ୟ ତାଙ୍କର ଚରଣର ଧୂଳି ପାଇଁ ଧନ୍ୟ ମଣନ୍ତି ।

ଜଡ଼ଭରତଙ୍କୁ ବଳିପଶୁ କରି ପ୍ରଦର୍ଶନ ପୂର୍ବକ ମନ୍ଦିରକୁ ନେଇଗଲେ। ସେଠାରେ ଦସ୍ୟୁମାନଙ୍କର ପୁରୋହିତ ଅନେକ ମନ୍ତ୍ରରେ ଭଦ୍ରକାଳୀଙ୍କର ପୂଜାକଲେ। ତାଙ୍କର ଚକ ଚକ କରୁଥିବା ଖଡ୍‌ଗକୁ ବାହାର କରାଗଲା, ସେଥିରେ ବଳିପଶୁର ଶିର ହଠାତ୍ ପୃଥକ୍ କରି ଉଷ୍ମରକ୍ତରେ ଦେବୀଙ୍କୁ ସନ୍ତୁଷ୍ଟ କରାଯିବ। ସେହି ଖଡ୍‌ଗକୁ ସମ୍ମୁଖରେ ରଖି ତାକୁ ପୂଜାକଲେ ଏବଂ ଦେବୀଙ୍କ ମନ୍ତ୍ରରେ ତାଙ୍କୁ ଅଭିମନ୍ତ୍ରିତ କଲେ।

ଜଡ଼ଭରତ ଏହି ସବୁ ଘଟଣା ନିଜ ଆଖିରେ ଚୁପ୍‌ଚାପ ବସି ଦେଖୁଥିଲେ। ତାଙ୍କ ମନରେ ହର୍ଷ ବା ବିଷାଦ ନଥିଲା। ତାଙ୍କର ମରିବାର ଭୟ ବା ବଞ୍ଚିବାର ଚିନ୍ତା ନଥିଲା। ସେ ମନରେ ସବୁଥିରେ ସମାନଭାବ ରଖି ବସିଥିଲେ। ସେ ବ୍ରହ୍ମସ୍ଥିତି ପାଇ ସବୁଠାରେ ଶ୍ରୀହରିଙ୍କୁ ଦେଖୁଥିଲେ। ଶରୀରର ଅହଂଭାବ ଥିଲେ, ତାକୁ ରକ୍ଷାକରିବା ପାଇଁ ପ୍ରଯତ୍ନ କରାଯାଏ, ସେ ଅହଂତା ମମତାକୁ ପୋଛିକରି ଦେଇଥିଲେ। ଏଇଥିପାଇଁ ତାଙ୍କର ଖଡ୍‌ଗ ପାଇଁ ଭୟ ହେଲନାହିଁ, କିମ୍ବା ପୁରୋହିତଙ୍କ କାର୍ଯ୍ୟରେ ଉଦ୍‌ବେଗ ନଥିଲା। ସେ ଏହି କାର୍ଯ୍ୟକୁ କେବଳ ଖେଳ ବୋଲି ଭାବୁଥିଲେ।

ଶ୍ରୀ ଶୁକ କହିଲେ—"ରାଜନ! ଏହିପରି ସମଭାବରେ ଥିବା ଯୋଗୀଙ୍କର ବଳିକୁ ତାମସୀଦେବୀ କିପରି ସହ୍ୟକରି ପାରିବେ। ଦେବୀଙ୍କର ଆସନ ହଲିବାକୁ ଲାଗିଲା। ସେ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେ, ତାଙ୍କର ଏହି ଦସ୍ୟୁମାନଙ୍କ ଉପରକୁ କ୍ରୋଧ ଆସିଗଲା। ତାମସୀ ପ୍ରକୃତିର ଏହା ଏକ ଘଟଣା। ଲାଗିଗଲା ତ ଠିକ କଥା ନଚେତ୍ କରୁଥିବା ଲୋକର ମୁଣ୍ଡ ଯାଏ।"

## ଛପ୍‌ପୟ୍

"ତନ ବାଁଧେ ଅବଧୂତ ଭରତ ସମଦର୍ଶୀ ଜ୍ଞାନୀ।
ଭୟେ ନ ବିଚଲିତ ତନିକ୍ ମୃତ୍ୟୁ ସମ୍ମୁଖ ହୁ ଜାନୀ॥
ହ୍ୱାଇ ପହିନି ନବ ବସ୍ତ୍ର ଉଡ଼ାଇ ଅଧିକ ମିଠାଇ।
ଖାଇ ଭୟେ ନିଶ୍ଚିନ୍ତ ପେଟର ବଳି ବାରି ଆଇ॥
ଦସ୍ୟୁ ପୁରୋହିତ ପୂଜ ଅସି, ଦ୍ୱିଜବର କେ ସମ୍ମୁଖ ଧରୀ।
ନହିଁ ସୋଚ ବିସ୍ମୟ ନହୀ, ଜ୍ଞାନୀ ଲଖି କାଲ ଡରୀ॥"



# ଭଦ୍ରକାଳୀଙ୍କର ବଳିରୁ ମୁକ୍ତ
# ଅବଧୂତ ଜଡ ଭରତ

"ହିଂସ୍ରଃ ସ୍ୱପାପେନ ବିହିଂସିତଃ ଖଲଃ ।
ସାଧୁଃ ସମତ୍ୱେନ ଭୟାଦ୍ ବିମୁଚ୍ୟତେ ।।"
( ଭାଗବତ ୧୦-ସ୍କନ୍ଧ ୭-ଅଧ୍ୟାୟ ୩୧-ଶ୍ଲୋକ )

## ଛପ୍ପୟ

"ନିରଖି ଘୋର ଅନ୍ୟାୟ ଭଇ ଦେବୀ ବିକରାଳୀ ।
ମୂର୍ତ୍ତି ଫୋଡ଼ ପଟ ପ୍ରକଟ ଭଇ ସହସା ଚଟକାଳୀ ।।
ତଡ ତଡ଼ାଇ କର କ୍ରୋଧ ଓଠ ଜିହ୍ୱା ତେ ଚାଟେ ।
ଖଡ଼୍‌ଗ ହସ୍ତେ କର ଫିରେ ଦସ୍ୟୁ ଶିର ଧଡତେ କାଟେ ।।
ଉଷ୍ଣ ରକ୍ତ ମଦ ପାନ କର, ଅଟ୍ଟହାସ ତେ ନଭ ଭରୟୋ ।
କନ୍ଦୁକ ସମ ସିର ଫେଙ୍କକେ, ଯୋଗୀନ ସଙ୍ଗ କୌତୁକ କରୟୋ ।।"

ଯଦିଓ ତମଗୁଣର ଶକ୍ତି ପ୍ରବଳ ଅଟେ, ତଥାପି ସତ୍ତ୍ୱଗୁଣ ସମ୍ମୁଖରେ ତାହାର କୌଣସି ପ୍ରଭାବ ରହେ ନାହିଁ । ଅଳ୍ପ ପାପୀକୁ ବଡ଼ପାପୀ ଦବାଇ ଦିଏ, କିନ୍ତୁ ସତ୍ତ୍ୱଗୁଣ ସମ୍ମୁଖରେ ସବଳ ତମଗୁଣ ଝଡ଼ିଯାଏ, କିନ୍ତୁ ଯେଉଁଥିରେ ତମର ଲେଶ ମାତ୍ର ନାହିଁ, ସଦାସର୍ବଦା ସତ୍ତ୍ୱରେ ସ୍ଥିର, ତା ସମ୍ମୁଖରେ ପ୍ରବଳଠାରୁ ପ୍ରବଳଶକ୍ତି ମଧ୍ୟ ପରାଜିତ ହୁଏ । ସତ୍ତ୍ୱଗୁଣ ନିଜେ କାହାକୁ ଦଣ୍ଡ ଦିଏ ନାହିଁ । ସୂର୍ଯ୍ୟଙ୍କ ଉପରେ ଧୂଳି ପକାଉଥିବା ଲୋକ ଉପରେ ସୂର୍ଯ୍ୟ କୁପିତ ହୁଅନ୍ତି ନାହିଁ କିନ୍ତୁ ସ୍ୱଭାବହେତୁ ଧୂଳି ପକାଉଥିବା ଲୋକ ଉପରେ ପଡ଼େ । ଏହିପରି ସଂସାରରେ ସାଧୁମାନଙ୍କ ଉପରେ ଯିଏ କଷ୍ଟ ପହଞ୍ଚାଏ, ସେ ନିଜେ ସେହି କଷ୍ଟ ଭୋଗ କରେ, ଯେ ସଦାସର୍ବଦା ସମଭାବରେ ସ୍ଥିତ, ତାଙ୍କୁ କ୍ଲେଶ କିପରି ବା ହୋଇ ପାରିବ ।

ଶ୍ରୀ ଶୁକଦେବ କହିଲେ—"ରାଜନ ! ଯେମିତି ସେହି ଡାକୁମାନଙ୍କର ପୁରୋହିତ ଦେବୀ ମନ୍ତ୍ରରେ ଅଭିମନ୍ତ୍ରିତ ଖଡ୍‌ଗକୁ ଉଠାଇ ଜଡ଼ ଭରତଙ୍କୁ ବଳି ଦେବାକୁ ଚାହିଁଲେ, ସେତେବେଳେ ଦେବୀ ବ୍ରାହ୍ମଣର ତେଜକୁ ସହି ନପାରି ଜଳି ଉଠିଲେ । ବ୍ରହ୍ମ ତେଜର ଅପମାନ ହେତୁ ଦେବୀଙ୍କର ସମ୍ପୂର୍ଣ୍ଣ ଶରୀରରେ ଅସହ୍ୟା ବେଦନା ହେବାକୁ ଲାଗିଲା । ଦେବୀ ନିଜ ସ୍ଥାନରେ ସ୍ଥିର ରହି ପାରିଲେ ନାହିଁ । ଲୋକମାନେ ଦେଖୁ ଦେଖୁ ଘଡ଼ ଘଡ ଚଡ ଚଡ଼ ଧ୍ୱନି ହେବାକୁ ଲାଗିଲା । ହଠାତ୍ ଭଦ୍ରକାଳୀ ମୂର୍ତ୍ତିକୁ ଫାଡ଼ିକରି ବିକଟାଳ ରୂପରେ ପ୍ରକଟିତ ହେଲେ । ତାଙ୍କର ମୁଖମଣ୍ଡଳ ଅତ୍ୟନ୍ତ ଭୟାନକ ଥିଲା । ଅତ୍ୟନ୍ତ ଅସହନଶୀଳତା ଏବଂ କ୍ରୋଧ ହେତୁ ତାଙ୍କର ଭ୍ରୂକୁଟୀ ଉପରକୁ ଉଠି ଯାଇଥିଲା । ଜିଭ ଲହ ଲହ ହେଉଥିଲା, ବାରମ୍ବାର ଜିଭ ଓଠକୁ ଚାଟୁଥିଲା ଏବଂ ହୁଙ୍କାର ଶବ୍ଦରେ ଦଶଦିଗ ଗୁଞ୍ଜରିତ ହୋଇ ଉଠୁଥିଲା । ସେ ଦାନ୍ତକୁ ରଗଡ଼ି ରଗଡ଼ି ଏପରି ଦେଖା ଯାଉଥିଲା ଯେପରି ସମଗ୍ର ସୃଷ୍ଟିକୁ ସଂହାର କରି ପକାଇବେ । ଦସ୍ୟୁମାନଙ୍କୁ ଉପସ୍ଥିତ ଦେଖି ସେ ଅତ୍ୟନ୍ତ ବ୍ୟଗ୍ରତା ସହକାରେ ଅଟ୍ଟହାସ କଲେ । ପର୍ବତ ଗୁମ୍ଫା ସଦୃଶ ତାଙ୍କର ମୁଖମଣ୍ଡଳରେ ହୀରର ପଠାଳ ସଦୃଶ୍ୟ କରାଳ ଦନ୍ତପନ୍ତି ବିରାଜମାନ କରୁଥିଲେ ଲାଲ ଲାଲ ଚଞ୍ଚଳ ନୟନରେ ଯେପରି ରକ୍ତ ବର୍ଷା ହେଉଛି । ହଠାତ୍ ଭଦ୍ରକାଳୀ ବେଦିପତ୍ତି ଆଗରେ ଥୁଆ ହୋଇଥିବା ଅଭିମନ୍ତ୍ରିତ ଖଡ୍‌ଗକୁ ନିଜ ହାତରେ ଉଠାଇ ନେଲେ ଏବଂ ସ୍ଥାନ ବଦଳାଇ ସେହି ଡ଼ାକୁମାନଙ୍କ ମୁଣ୍ଡକୁ ଧଡ଼ାଧଡ଼ କାଟିବାକୁ ଲାଗିଲେ ଯେପରି ଇନ୍ଦ୍ର ନିଜର ବଜ୍ରରେ ପର୍ବତ ଶିଖରକୁ କାଟନ୍ତି ।

ଦେବୀ ଭଦ୍ରକାଳୀଙ୍କର ପାର୍ଷଦ୍‌ମାନେ, ଡାକିନୀ, ସାକିନୀ, ଯୋଗିନୀ ଇତ୍ୟାଦି ଉତ୍ପନ୍ନ ହୋଇ ଦେବୀଙ୍କ ଦ୍ୱାରା ଛେଦିତ ଦସ୍ୟୁମାନଙ୍କ କଣ୍ଠନଳୀରୁ ବହୁଥିବା ଉଷ୍ମ ରକ୍ତକୁ ପାନ କରିବାକୁ ଲାଗିଲେ । ସେହି ଗରମ ରକ୍ତକୁ ପିଇକରି ସମସ୍ତେ ପାଗଳୀ ଭଳି ହୋଇ କେଶ ଉନ୍ମୁକ୍ତ କରି ନାଚିବା, କୁଦିବା, ହସିବା ଏବଂ ଖାଇବାକୁ ଲାଗିଲେ । ବର୍ତ୍ତମାନ ଦେବୀଙ୍କୁ ଏକ ନୂତନ ଖେଳରେ ଆଗ୍ରହ ଆସିଗଲା । ଯାହାର ମୁଣ୍ଡକୁ ଧଡ଼୍‌କରି କାଟୁଥିଲେ, ତାହାର ଚୁଟିକୁ ଉପରକୁ ଫିଙ୍ଗିଲେ । ଦ୍ୱିତୀୟ ଦେବୀ ତାକୁ ଅଧା ବାଟରେ ଧରି ନେଉଥାନ୍ତି । ତା'ଠାରୁ ଛଡ଼ାଇ ତୃତୀୟ କୌତୁକ କରନ୍ତି । ଏହିପରି ଭାବରେ କନ୍ଦୁକ କ୍ରୀଡ଼ା କରିବାକୁ ଲାଗିଲେ ।

ଭରତ ବସି ବସି ହସୁଥିଲେ । ତାଙ୍କର ନିଜର ଆସନ୍ନ ମୃତ୍ୟୁ ପାଇଁ କୌଣସି ଚିନ୍ତା ନ ଥିଲା କିମ୍ବା ଦସ୍ୟୁମାନଙ୍କର ଶିରଚ୍ଛେଦନରେ ସନ୍ତୋଷ ଆସୁ ନ ଥିଲା । ସେ ଏହାକୁ ଭଗବାନଙ୍କର ଗୋଟିଏ ଖେଳ ଭାବି ମନକୁମନ ହସୁଥିଲେ ।

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ଭଗବନ୍ ! ଏପରି କାହିଁକି ହେଲା ? ଯାହା କିଛି ହେଉ ଦସ୍ୟୁ ରାଜା ଭଦ୍ରକାଳୀଙ୍କର ଭକ୍ତ ଥିଲା । ସେହି ବ୍ରହ୍ମର୍ଷି କୁମାରଙ୍କୁ ବଧ କରିବା ପାଇଁ ଯଦି ଦେବୀଙ୍କର ଅଭିପ୍ରାୟ ନ ଥିଲା, ତେବେ ତାଙ୍କୁ ସେ ଅଲଗା କରି ଦେଇଥାନ୍ତେ । ଜଣକର ଅପରାଧ ପାଇଁ ସମସ୍ତଙ୍କୁ କାହିଁକି ହତ୍ୟା କଲେ ?"

ଏହା ଶୁଣି ଶୁକଦେବ କହିଲେ—"ରାଜନ୍ ! ମନ୍ତ୍ର ପ୍ରୟୋଗ କରି ଅନ୍ୟର ପ୍ରାଣନାଶ କରିବାକୁ ଅଭିଚାର କହନ୍ତି । ଅଭିଚାର ସବୁବେଳେ ଅପବିତ୍ର ଏବଂ ଅସାବଧାନ ପୁରୁଷ ଉପରେ ତାହା ବ୍ୟବହାର ହୁଏ । ଯେ ପବିତ୍ର, ଭଗବତ୍ ଭକ୍ତ, ତାଙ୍କ ଉପରେ ଯାଦୁ, ଗୁଣି, ଅଭିଚାର ମାରଣ, ମୋହନ ଉଚ୍ଚାଟନ ଇତ୍ୟାଦି ଚାଲେ ନାହିଁ । ଯେପରି ଧନୁରୁ ନିର୍ଗତ ବାଣ ବ୍ୟର୍ଥ ହୁଏନାହିଁ, ସେହିପରି ଅଭିଚାର ମନ୍ତ୍ର ପ୍ରୟୋଗ ବ୍ୟର୍ଥ ହୁଏନାହିଁ । ଯାହା ଉଦ୍ଦେଶ୍ୟରେ ଅଭିଚାର କରାଯାଏ, ତା ଉପରେ ନିରର୍ଥକ ହେଲେ କରିବା ଲୋକ ଉପରେ ତାହା ପଡ଼େ । କାଶୀରାଜାଙ୍କର ପୁତ୍ର ଭଗବାନ ଦ୍ୱାରକାଧିଶଙ୍କ ଉପରେ କୃତ୍ୟା ପ୍ରୟୋଗ କରିଥିଲେ, ତାହା ଲେଉଟି ଯାଇ ତାଙ୍କର ସମଗ୍ର ନଗର ସହିତ ସେନାବାହିନୀକୁ ନଷ୍ଟ କରିଦେଲା । ମହର୍ଷି ଦୁର୍ବାସା ପରମ ଭଗବଦ୍‌ଭକ୍ତ ଅମ୍ବରୀଷଙ୍କ ଉପରେ କୃତ୍ୟା ପ୍ରୟୋଗ କରିଥିଲେ, ଯାହା ଫଳରେ ଦୁର୍ବାସା ବର୍ଷେକାଳ ସୁଦର୍ଶନ ଚକ୍ର ଭୟରେ ସମସ୍ତ ଲୋକରେ ଭ୍ରମଣ କଲେ । ଦେଖନ୍ତୁ, ବ୍ରାହ୍ମଣକୁ ସର୍ବଦା ଅବଧ୍ୟ ବୋଲି କୁହା-ଯାଇଛି । ଘୋର ବିପଦ ସମୟରେ ମଧ୍ୟ ସାଧାରଣ ବ୍ରାହ୍ମଣକୁ ବଧ କରାଯାଏନି । ପୁଣି ଯେ ବୈରିଶୂନ୍ୟ, ବ୍ରହ୍ମଭାବ ପ୍ରାପ୍ତ, ସମ୍ପୂର୍ଣ୍ଣ ପ୍ରାଣୀମାନଙ୍କର ସୁହୃଦ, ଏପରି ବ୍ରହ୍ମର୍ଷିଙ୍କୁ ଭୁଲରେ ମଧ୍ୟ ବଧ କରିବା ମହାପାପ ଅଟେ । ସେହି ଲୁଣ୍ଠନକାରୀ ଦସ୍ୟୁ-ମାନଙ୍କର ସ୍ୱଭାବ, ରଜ ଏବଂ ତମ ଗୁଣରେ ଆଚ୍ଛାଦିତ ହୋଇଥିଲା । ଲୁଣ୍ଠନ କରି ଲୁଣ୍ଠିତ ଧନ ବଢ଼ିଯିବା ହେତୁ ସେମାନେ ମଦମତ୍ତ ହୋଇ ଯାଇଥିଲେ । ତଥାପି ମଧ୍ୟ ଭଗବାନଙ୍କର ଅଙ୍ଗସମ୍ଭୂତ ଏହି ବ୍ରାହ୍ମଣ ବେକରେ ଯଜ୍ଞୋପବୀତ ଦେଖି ମଧ୍ୟ ଦୁଷ୍ଟମାନେ କିଛି ବିଚାର କଲେ ନାହିଁ । ତାଙ୍କୁ ବଳି ଦେବାକୁ ଉଦ୍ୟତ ହୋଇ-ଗଲେ । ତେଣୁ ଦେବୀ କ୍ଷମା କପରି କରିପାରିବେ ! ତାଙ୍କର ପାପ ଘଣ୍ଟ ପୂରିଗଲା । ପାପ ଧନ କିଛି ସମୟ ପର୍ଯ୍ୟନ୍ତ ବଢ଼ିବାର ଦେଖାଯାଏ, ଶେଷରେ ସୁଧ ମୂଳ ସହିତ ସମ୍ପୂର୍ଣ୍ଣ କୁଳକୁ ବିନାଶ କରି ନିଜେ ନଷ୍ଟ ହୋଇଯାଏ । ଏ ପର୍ଯ୍ୟନ୍ତ ଦେବୀ ତାଙ୍କୁ କ୍ଷମା କରୁଥିଲେ; କିନ୍ତୁ ଯେତେବେଳେ ଜ୍ଞାନସ୍ୱରୂପ ବ୍ରାହ୍ମଣ ସହିତ ସେମାନେ ଅନ୍ୟାୟ କଲେ, ଦେବୀ ସମସ୍ତଙ୍କୁ ସଫା କରିଦେଲେ । ଭରତ ଶାପ ଦେଲେ ନାହିଁ

କିମ୍ବା ବଳି ଦେବାକୁ ନିଷେଧ କଲେ ନାହିଁ । ସେ ଅତ୍ୟନ୍ତ ଆନନ୍ଦରେ ନିଜେ ବଳି ହେବାକୁ ଉଦ୍ୟତ ହୋଇଥିଲେ ।

ଏହା ଶୁଣି ମହାରାଜ ପରୀକ୍ଷିତ ପଚାରିଲେ—"ପ୍ରଭୋ ! ଏହା ତ ଅତ୍ୟନ୍ତ ଆଶ୍ଚର୍ଯ୍ୟର କଥା । ଦେଖନ୍ତୁ ଯେ ପର୍ଯ୍ୟନ୍ତ ଶରୀରରେ ପ୍ରାଣ ଅଛି, ସେ ପର୍ଯ୍ୟନ୍ତ ଶରୀରରେ କିଛି ନା କିଛି ମୋହ ହୁଏ । ଯେତେବଡ଼ ଜ୍ଞାନୀ ହେଲେ ମଧ୍ୟ ପ୍ରାଣରକ୍ଷା ପାଇଁ ସେ ଯତ୍ନ କରେ । ଭରତ ବାହ୍ୟକ୍ରିୟା ଶୂନ୍ୟ ନ ଥିଲେ । ଖାଉଥିଲେ, ପିଉଥିଲେ, ସମସ୍ତଙ୍କର କଥା ବୁଝୁଥିଲେ, ବ୍ୟବହାର ସମ୍ପର୍କୀୟ ସମସ୍ତ କାର୍ଯ୍ୟ କୌଣସି ଉପାୟରେ କରୁଥିଲେ । ତଥାପି ସେ ବଧ ହେବା ସମୟରେ କୌଣସି ଆପତ୍ତି କଲେନାହିଁ । କିଛି ତ କହିଥାନ୍ତେ କିମ୍ବା ନ କହିଲେ ନିଜର ପରିଚୟ ତ ଦେଇଥାନ୍ତେ ।"

ଏହା ଶୁଣି ଶ୍ରୀ ଶୁକ ଅତ୍ୟନ୍ତ ଦୃଢ଼ତା ସହକାରେ କହିଲେ—"ରାଜନ ! ଆପଣ ଏ ବିଷୟରେ ସନ୍ଦେହ କରନ୍ତୁ ନାହିଁ । ଦେଖନ୍ତୁ, ଅଜ୍ଞାନୀ ପୁରୁଷର ହୃଦୟରେ ଏହି ଅନନ୍ତ ଷଡଭଙ୍ଗୁର ଦେହପ୍ରତି ଆତ୍ମଭାବର ଦୃଢ଼ଗ୍ରନ୍ଥି ପଡ଼ିଯାଏ, ଜ୍ଞାନୀ ପୁରୁଷ ଏହି ହୃଦୟର ଗ୍ରନ୍ଥିକୁ ଜ୍ଞାନରୂପକ ଖଡ୍ଗରେ କାଟି ଦିଅନ୍ତି । ସେ ବ୍ରହ୍ମସ୍ୱରୂପ ହୋଇଯାଆନ୍ତି, ତାଙ୍କର ରକ୍ଷା ଭଗବାନ ବାସୁଦେବ ସଦାସର୍ବଦା ନିଜର ସୁଦର୍ଶନ ଚକ୍ରଦ୍ୱାରା କରିଥାନ୍ତି । ଏହିପରି ଜ୍ଞାନୀ ପୁରୁଷ ନିଜେ କୌଣସି ଚେଷ୍ଟା କରନ୍ତି ନାହିଁ କିମ୍ବା କାହାର ଅନିଷ୍ଟ ଇଚ୍ଛା କରନ୍ତି ନାହିଁ । ତାଙ୍କ ପାଇଁ ମୁଣ୍ଡ କାଟିବାର ସମୟ ଉପସ୍ଥିତ ହେଲେ ମଧ୍ୟ କୌଣସି ପ୍ରକାର ବ୍ୟାକୁଳତା ଚିନ୍ତା ପ୍ରକାଶ ହୁଏ ନାହିଁ, ଏହା କୌଣସି ଆଶ୍ଚର୍ଯ୍ୟଜନକ ଘଟଣା ନୁହେଁ । ତାଙ୍କ ମନରେ ତ ଭେଦଭାବ ରହେ ନାହିଁ, ପ୍ରାଣ ରହିଲେ ଯାହା, ଗଲେ ବି ସେୟା ।"

ଏହା ଶୁଣି ରାଜା ପଚାରିଲେ—"ହଁ, ଭଗବନ ! ପୁଣି କ'ଣ ହେଲା ?"

ଶ୍ରୀ ଶୁକ କହିଲେ—'ପୁଣି କ'ଣ ହେବ ଯାହା ହେବାର ଥିଲା, ତାହା ହେଲା । ସମସ୍ତଙ୍କର ମୁଣ୍ଡକୁ କାଟି ଭଦ୍ରକାଳୀ ନିଜର ସଙ୍ଗିନୀ ଯୋଗିନୀମାନଙ୍କ ସହିତ ଅନ୍ତର୍ଦ୍ଧାନ ହୋଇଗଲେ । ଭରତ ଉଠିକରି ସେଠାରୁ ଚାଲିଗଲେ । ବର୍ତ୍ତମାନ ସେ ନିଜ ଗ୍ରାମକୁ ଗଲେ ନାହିଁ । ସେ ଭାବିଲେ—"କିଏ କ୍ଷେତ ରଖିବ, ବର୍ତ୍ତମାନ ସେ ଅରକ୍ଷିତ ସ୍ଥାନରେ ପରମହଂସ ବୃତ୍ତିରେ ନିଜର ଜ୍ଞାନକୁ ଲୁଚାଇ ଏଆଡ଼େ ସେଆଡ଼େ ନିଜ ଇଚ୍ଛାରେ ବୁଲିବାକୁ ଲାଗିଲେ । ସେ କୌଣସି ପୋଷାକ ପିନ୍ଧି ନଥିଲେ । କୌଣସି ବର୍ଣ୍ଣ ଆଶ୍ରମର ଚିହ୍ନ ଧାରଣ କରି ନଥିଲେ । ବାଳବଢ଼ି ଯାଇଥିଲା, ବଢିଥାଉ । ଅଣ୍ଟାରେ ମଇଳା କୋତରା ଖଣ୍ଡିଏ ଲୁଗା ବନ୍ଧା

ହୋଇଥିଲା । ଗୋଟିଏ ବହୁତ ପୁରୁଣା ଜୀର୍ଣ୍ଣ ଶୀର୍ଣ୍ଣ ପଇତା ତାଙ୍କ ବେକରେ ପଡ଼ିଥିଲା । ଏତେବଡ଼ ଶରୀରର ବୋଝକୁ ବୋହିବା ବେଳେ ପଇତାର କ'ଣ ଦୋଷ ? ପଢ଼ିଛୁଡ଼ ପଡ଼ିଆଛି । ଏହି ପ୍ରକାର ପରମହଂସ ବୃତ୍ତିରେ ସେ ଜନ୍ମାନ୍ଧ ହୋଇକରି ବୁଲିବାକୁ ଲାଗିଲେ ।"

## ଛପ୍ପୟ

"ଦୁଃଖୀ ହୋହି କସ ସଦା ରହେ ଜେ ହରି ପଦସେବୀ ।
କାଟି ସବନି କୋ ଶୀଶ ଭଇ ଅନ୍ତର୍ହିତ ଦେବୀ ॥
ଉଦାସୀନ ହେ ଚଲେ ମହାମୁନି ଅତିଶୟ ଜ୍ଞାନୀ ।
ହର୍ଷ ବିଷାଦ ନ ହୃଦୟ ଦୈବ କୀ ଇଚ୍ଛା ଜାନୀ ॥
ଜଗ ମେ ଯୋ ଜଶ କରେ ଗୋ, ସୋ ତୈସୋ ଇ ଭରେଗୋ
ତବେଗୋ ହରି ବିମୁଖ ହୈ, ପ୍ରଭୁପଦ ତେ ଭବ ତରେଗୋ ।"



# ରାଜା ରହୁଗଣଙ୍କର ଜଡ଼ ଭରତଙ୍କ ସହ ସାକ୍ଷାତ

"ଭବାପବର୍ଗୋ ଭ୍ରମତୋ ଯଦା ଭବେତ୍
ଜନସ୍ୟ ତର୍ହ୍ୟଚ୍ୟୁତ ସତ୍ସମାଗମଃ ।
ସତ୍ସଙ୍ଗମୋ ଯର୍ହି ତଦୈବ ସଦ୍ ଗତୌ
ପରାବରେଶେ ତ୍ୱୟି ଜାୟତେ ମତିଃ ॥"
( ଭାଗବତ ୧୦-ସ୍କନ୍ଦ ୫୧-ଅଧ୍ୟାୟ ୫୪-ଶ୍ଳୋକ )

## ଛପ୍ପୟ

"ଇକ ଦିନ ଅୟେ ଭରତ ଫିରତ ତଟ ଇକ୍ଷୁମତୀକେ ।
ଲଖେ ଚୌଧରୀ ତହାଁ । ସିନ୍ଧୁ ସୌବୀରପତୀକେ ॥
କପିଳଦେବ ଢିଁଗ ଜାୟଁ ରହୁଗଣ ଭୂପ ବଗ୍ୟରେ ।
ଶିବକା ଘିବର ନହୀ ଖୋଜି ସେବକ ସବ ହାରେ ॥
ମୋଟେ ତାଜେ ଜଡଭରତ, କୁଁ ଲଖି ସବ ପ୍ରମୁଦିତ ଭୟେ ।
ପକର ପାଲକୀ ମେ ଦୟେ, ସବ କହାର ସଁଗ ଲଗି ଗୟେ ॥"

ଅଧିକାର ବ୍ୟତୀତ ସଂସାରରେ କିଛି ନାହିଁ । ଅଧିକାର ପ୍ରାପ୍ତ ହୁଏ ଭଗବନ୍ତ କୃପାନୁଭବ ହେତୁ । ଭଗବାନଙ୍କର କୃପା ଦୃଷ୍ଟି ପ୍ରତ୍ୟେକ ସମୟରେ ଜୀବ ମାତ୍ର ଉପରେ ପଡ଼େ, ତଥାପି ମଧ୍ୟ ସମସ୍ତେ ତାଙ୍କର ଅନୁଭବ କରି ପାରନ୍ତି ନାହିଁ । ବର୍ଷା ସବୁ ସ୍ଥାନରେ ସମାନ ରୂପରେ ହୁଏ, କିନ୍ତୁ ଉର୍ବରା ଭୂମି ବର୍ଷାଜଳ ପାଇବା ମାତ୍ରେ ସବୁଜବର୍ଣ୍ଣ ଧାରଣ କରେ, ଟାଙ୍ଗରା ଯେଉଁପରି ସେହିପରି ଥାଏ । ସାଧୁମାନଙ୍କର, ସିଦ୍ଧପୁରୁଷମାନଙ୍କର ଜାଣତରେ ବା ଅଜାଣତରେ ସମସ୍ତଙ୍କୁ ଦର୍ଶନ

ହୁଏ, ମାତ୍ର ସିଏ ଏହାର ଅଧିକାରୀ ସେ ତାଙ୍କର ଦର୍ଶନରୁ ଲାଭ ପାଆନ୍ତି, ତାଙ୍କ କୃପାର ଅଧିକାରୀ ହୋଇଯାନ୍ତି, ଯିଏ ଅଧିକାରୀ ନୁହେଁ, ଅନଧିକାରୀ-ସେ ସେଥିରୁ ଶୂନ୍ୟ ରହିଯାନ୍ତି । ଅଧିକାରୀଙ୍କୁ ସାଧୁସଙ୍ଗ ଇଚ୍ଛା ବା ଅନିଚ୍ଛାରୁ ହୋଇଯାଏ । ତାଙ୍କର କଲ୍ୟାଣ ମଧ୍ୟ ହୋଇଯାଏ । ନିଜେ ସନ୍ଥ ମହାତ୍ମା ଏବଂ ସିଦ୍ଧମାନଙ୍କର କୃପାକୁ ପ୍ରାପ୍ତ କରିବା ପାଇଁ କିଏ ସମର୍ଥ ? ତାଙ୍କ ହୃଦୟରେ କୌଣସି କାରଣରୁ କରୁଣା ଉତ୍ପନ୍ନ ହୋଇଗଲେ, ତେବେ ଜୀବର ମଙ୍ଗଳ ହୁଏ । ସିଦ୍ଧ ଲୋକମାନେ ପ୍ରାୟତଃ ନିଜକୁ ସଂସାରୀ ଲୋକମାନଙ୍କ ନିକଟରେ ପ୍ରକଟ କରନ୍ତି ନାହିଁ । ସେ ସଦାସର୍ବଦା ନିଜକୁ ଲୁଚାଇ ଉନ୍ମତ୍ତ ପାଗଳଙ୍କ ପରି ବୁଲନ୍ତି । କେତେବେଳେ ତାହା ଉପରେ ଯଦି କୃପା କରନ୍ତି, ବଚିତ୍ର ଭାବରେ କରନ୍ତି । କେବେକେବେଳେ ତାଙ୍କ ସହିତ ଝଗଡ଼ା କରନ୍ତି, ତାଙ୍କ ଠାରୁ ମାଡ଼ ଖାଆନ୍ତି, କେବେ କେବେ ବ୍ୟଙ୍ଗ କଥା କହି ତାକୁ ଆପଣା ଆଡ଼କୁ ଆକର୍ଷିତ କରନ୍ତି । ଯେତେବେଳେ ତାଙ୍କ ମନକୁ ଆକର୍ଷିତ ହୋଇଯାଏ, ତେବେ ତାକୁ ପରମାର୍ଥ ପଥର ରହସ୍ୟ କହି ଜନ୍ମ ମୃତ୍ୟୁରୁ ମୁକ୍ତ କରି ଦିଅନ୍ତି । ଏହିପରି ସିଦ୍ଧ ପୁରୁଷ ଏହି ପୃଥିବୀରେ ସଦାସର୍ବଦା ରହିଥାନ୍ତି, ସଦାସର୍ବଦା ରହିବେ । ଏହାଙ୍କ ବ୍ୟତୀତ ପୃଥିବୀ ରହିବା ସମ୍ଭବ ନୁହେଁ । ଦଶ-ଦଶ, କୋଡ଼ିଏ-କୋଡ଼ିଏ କୋଶ ଅନ୍ତରରେ ଜଣେ ସତୀ ଜଣେ ସିଦ୍ଧ ଗୁପ୍ତ ରୂପରେ ରହନ୍ତି ନଚେତ୍ ସଂସାର ପ୍ରଳୟ ହୋଇଯାନ୍ତା । ତାଙ୍କର ଧର୍ମ ଏହି ପୃଥିବୀକୁ ଧାରଣ କରିଅଛି । ସେମାନେ ହିଁ ଏ ଜଗତର ସ୍ଥିତିକୁ ଚଳାଉ ଅଛନ୍ତି । ଏହି ସିଦ୍ଧ ଭଗବାନଙ୍କର ଅଂଶ କୌଣସି କାରଣରୁ ବିଗ୍ରହ ରୂପ ଧାରଣକରି ଜୀବନ୍ମୁକ୍ତ ରୂପ ବୁଲନ୍ତି । କାହାରିକୁ ସେ ନିଜେ ଜାଣନ୍ତି ନାହିଁ, କମ୍ପା ଜାଣିଶୁଣି ସେ ନିଜକୁ ଲୁଚାନ୍ତି ନାହିଁ । ଯେତେବେଳେ ସେ ନିଜେ ଲୁଚାଇବାକୁ ଚାହାଁନ୍ତି, ତେବେ ସଂସାରର କୀଟ ସଦୃଶ ଏହି ସାଂସାରିକ ଲୋକମାନେ ତାଙ୍କୁ ଚିହ୍ନିବାର କ'ଣ ସାମର୍ଥ୍ୟ ଅଛି । ଭାଗ୍ୟବଶତଃ କାହା କାହା ପାଖରେ ନିଜର ଜ୍ଞାନବିଜ୍ଞାନ ନିର୍ଭୟ ହୋଇ ପ୍ରକାଶ କରି ଥାଆନ୍ତି । ଜଡ଼ ଭରତଙ୍କୁ ଆଜି ପର୍ଯ୍ୟନ୍ତ ସମସ୍ତେ ପାଗଳ ବୋଲି ଭାବିଥିଲେ । ସେ ନିଜକୁ ସେହି ଭାବରେ ପ୍ରକଟ କରୁଥିଲେ, କିନ୍ତୁ ଭାଗ୍ୟବଳରେ ସିନ୍ଧୁ ସୌବୀର ଦେଶର ରାଜା ରହୂଗଣ ତାଙ୍କର ଯଥାର୍ଥ ରୂପକୁ ଚିହ୍ନିଲେ । ଗ୍ରହଣଯୋଗ୍ୟ ବ୍ୟକ୍ତି ଭାବି ଭରତ ତାଙ୍କ ଉପରେ କୃପା କଲେ । ତାଙ୍କୁ ଯେଉଁ ଜ୍ଞାନ ଦେଲେ, ତାହା ପରମାର୍ଥର ସାରତତ୍ତ୍ୱ । ତାଠାରୁ ବଳି ଅଦ୍ୱୈତର ଉତ୍କୃଷ୍ଟ ଜ୍ଞାନ ଆଉ କିଛିନାହିଁ । ଭରତ ରାଜାଙ୍କୁ କହିବା ପାଇଁ ସମସ୍ତ ସାରକଥା କହିଦେଲେ ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଭରତ ବଳିପାଇଁ ନେଇ ହୋଇ ଯାଇଥିଲେ । ଭଦ୍ରକାଳୀ ଉଭକରି ତାଙ୍କୁ ବଳି ହେବାକୁ ଦେଲେ ନାହିଁ । ଦେବୀଙ୍କ

ଦ୍ୱାରା ଦସ୍ୟୁମାନଙ୍କର ମୃତ୍ୟୁ ହୋଇ ଯିବାର ଦେଖି ହାତ ହଲାଇ ସେଠାରୁ ନିଷ୍କ୍ରାନ୍ତ ହେଲେ ଏବଂ ଅରଣ୍ୟର ଝଣ୍ଟ ପରି ଏଆଡ଼େ ସେଆଡ଼େ ବୁଲିବାକୁ ଲାଗିଲେ । ବୁଲି ବୁଲି ଦୈବଯୋଗରୁ ସେ ଇକ୍ଷୁମତୀ ନଦୀ କୂଳରେ ଥିବା ରାଜ୍ୟରେ ପହଞ୍ଚିଲେ । ସୌଭାଗ୍ୟବଶତଃ ସେହି ସମୟରେ ସିନ୍ଧୁସୌବୀର ଦେଶର ରାଜା ରହୁଗଣ ସେଠାରେ ପାଲିଙ୍କି ଉପରେ ଚଢ଼ି ଆସି ଉପସ୍ଥିତ ହେଲେ । ରାଜା ଥିଲେ ଅତ୍ୟନ୍ତ ଧର୍ମାତ୍ମା, ପରମାର୍ଥ ତତ୍ତ୍ୱର ଜିଜ୍ଞାସୁ, ଏହି ଅସାର ସଂସାରରେ କେଉଁ ବସ୍ତୁ ସାର ଅଟେ ଏହା ପଚାରିବା ପାଇଁ ସେ ଜ୍ଞାନାବତାର ଭଗବାନ କପିଳଙ୍କ ଆଶ୍ରମ ପାଖକୁ ଯାଉଥିଲେ । ସେ ସମୟରେ ରାଜାମାନେ ପ୍ରାୟତଃ ରଥ କିମ୍ବା ସବାରୀ ଦ୍ୱାରା ଯାତାୟତ କରୁଥିଲେ । ପାଲିଙ୍କିକୁ ସୁଖଦାୟକ ଏବଂ ଶ୍ରେଷ୍ଠ ଭାବରେ ଗଣା ଯାଉଥିଲା । ରାଜ୍ୟର କିଛି କିଛି ଦୂର ପର୍ଯ୍ୟନ୍ତ କୌଣସି କୌଣସି ପରିବାରର ଲୋକମାନଙ୍କ ପ୍ରତି ରାଜ୍ୟ ତରଫରୁ ବୃତ୍ତି ଦିଆ ଯାଉଥିଲା । ସେମାନେ ସେହି ବୃତ୍ତିକୁ ସଦାସର୍ବଦା ଭୋଗ କରୁଥିଲେ । ଯଦି କେତେବେଳେ ରାଜା, ରାଜପୁତ୍ର ବା ରାଜ୍ୟର ପ୍ରଧାନ କର୍ମଚାରୀଙ୍କର ପାଲିଙ୍କି ସେ ବାଟ ଦେଇ ଯାଏ ତେବେ ସେମାନଙ୍କର କର୍ତ୍ତବ୍ୟ ହେଉଥିଲା ନିଜର ସୀମା ପର୍ଯ୍ୟନ୍ତ ପାଲିଙ୍କି ବୋହି ନେଇ ପହଞ୍ଚାଇ ଦେବା । ଭୃତ୍ୟମାନେ ଦୁଇପ୍ରକାର ଥିଲେ । ଦଳେ ବେତନ ଭୋଗୀ, ଅନ୍ୟଦଳ ବୃତ୍ତି ଭୋଗୀ (ବୃତ୍ତି ଭୋଗକାରୀ) ବେତନ ପାଉଥିବା ଭୃତ୍ୟଙ୍କୁ ମାସିକ ବା ପ୍ରତ୍ୟେକ ଦିନ ହିସାବ ଅନୁସାରେ ମଜୁରୀ ଦିଆ ଯାଉଥିଲା ଏବଂ ଯେଉଁମାନେ ବୃତ୍ତି ଭୋଗୀ ଥିଲେ ସେମାନଙ୍କୁ ବଂଶ ପରମ୍ପରାକ୍ରମରେ ରାଜ୍ୟରୁ ବୃତ୍ତି ମିଳୁଥିଲା, ସେମାନଙ୍କୁ ସେହି ସମୟରେ କିଛି ଦିଆଯାଉ ନଥିଲା । ଏହିପରି ବୃତ୍ତି ଭୋଗକାରୀ ଗଉଡ଼ମାନେ ରାଜାଙ୍କର ପାଲିଙ୍କିକୁ ବୋହି ନେଉଥିଲେ ।

ଇକ୍ଷୁମତୀ ନଦୀକୂଳରେ ପୂର୍ବବର୍ତ୍ତୀ ବୃତ୍ତିଭୋଗୀ ଗଉଡ଼ମାନଙ୍କର ସୀମା ଶେଷ ହୋଇ ଗଲା । ଗଉଡ଼ ମାନଙ୍କର (ଚୌଧୁରୀ) ସେମାନଙ୍କୁ ଛାଡ଼ିଦେଲେ । ଏଆଡ଼ୁ ସେଆଡ଼ୁ ନୂତନ ଗଉଡ଼ ଆଣି ପାଲିଙ୍କି ବୋହିବା କାର୍ଯ୍ୟରେ ଲଗାଇଲେ । ତଥାପି ଗୋଟିଏ ଗଉଡ଼ କମ୍ ପଡ଼ିଗଲା । ରାଜାଙ୍କର ଚାକର ମାନେ ସାଧାରଣତଃ ଉଦଣ୍ଡ । ରାଜନ୍! ଆପଣ ନିଜେ ମଧ୍ୟ ଏହା ଅନୁଭବ କରିଥିବେ । ସେମାନେ ପ୍ରଭୁଙ୍କର ଶକ୍ତି ଉପରେ ନିର୍ଭର କରି, ପ୍ରଜାଗଣଙ୍କୁ ତୃଣ ସଦୃଶ୍ୟ ଭାବନ୍ତି । ସେମାନଙ୍କ ମନରେ ବଡ଼ ଅହଙ୍କାର ହୁଏ, ଯାହା ଚାହାଁନ୍ତି ତାହା ଅନ୍ୟଦ୍ୱାରା ତାହା କରାଇ ନିଅନ୍ତି । ସେହି ଗଉଡ଼ମାନଙ୍କର ଚୌଧୁରୀ ଭାବିଲେ—"ବର୍ତ୍ତମାନ ଗାଆଁରେ ଗଉଡ଼ ମାନଙ୍କୁ ଖୋଜିବାକୁ କିଏ ଯିବ, ଯିଏ ସାମନାକୁ ଆସିବ, ତାକୁ ନେଇ ପାଲିଙ୍କିରେ ଲଗାଇ ଦେବ । ଏହା ଭାବି ସେ ଏଆଡ଼େ ସେଆଡ଼େ ବୁଲୁଥିଲେ, ତାଙ୍କର ଦୃଷ୍ଟି ଭରତଙ୍କ ଉପରେ ପଡ଼ିଲା । ସେ ଶରୀରରେ ଥିଲେ

କଲା, ସଦାସର୍ବଦା ଲଙ୍ଗଳା ରହୁଥିବା ହେତୁ ଶରୀରର ଚର୍ମ ମଧ୍ୟ ପର ମୋଟା ହୋଇ ଯାଇଥିଲା । ଲୁଗା ଥିଲା କୋଚଟ ମଇଳା । ଶରୀର ଥିଲା ହୃଷ୍ଟପୁଷ୍ଟ । ମସ୍ତହୋଇ ଏଆଡ଼େ ସେଆଡ଼େ ସେ ବୁଲୁଥିଲେ । ସେ ଭାବଲେ—"ଏ ନିଶ୍ଚିତ କୌଣସି ଶୂଦ୍ର । ଠିକ୍ ଅଛୁ, ଏହାକୁ ନେଇ ପାଲିଙ୍କି କାର୍ଯ୍ୟରେ ଲଗାଇ ଦେବ । ଏହା ଭାବ ସେ ଖୁବ୍ ଉଚ ସ୍ୱରରେ କ୍ଷମତା ପ୍ରୟୋଗ କରି କହିଲେ—"ଆରେ, ତୁ କେଉଁଆଡ଼େ ଯାଉଛୁ ? ଚାଲ, ମହାରାଜାଙ୍କର ପାଲିଙ୍କି ଉଠା । ତୋତେ ମହାରାଜଙ୍କ ପାଲିଙ୍କି ଆଗରେ ଥିବା ସୀମା ପର୍ଯ୍ୟନ୍ତ ପହଞ୍ଚାଇବାକୁ ହେବ ।"

ଭରତଙ୍କର କ'ଣ ବା ଆପତ୍ତି ଥିଲା । କୌଣସି କଥାଭାଷା ନକରି ସେ ତାଙ୍କ ସହିତ ଚାଲିବାକୁ ଲାଗିଲେ, ଆହୁରି ୫-୬ ଜଣ ଗଉଡ଼ ପାଲିଙ୍କି ଧରିଥିଲେ । ସମସ୍ତଙ୍କ ଆଗରେ ତାଙ୍କୁ ନେଇ ରଖି ଦିଆଗଲା । ହାତରେ ଗୋଟିଏ ବାଡ଼ିଧରାଇ ଦିଆଗଲା ଏବଂ କୁହାଗଲା—"ଚାଲ" । ଏବଂ ଅନ୍ୟ ଗଉଡ଼ମାନଙ୍କ ସହିତ ସେ ରାଜାଙ୍କର ପାଲିଙ୍କି ବୋହିବାକୁ ଲାଗିଲେ ।

ରାଜାଙ୍କର ପାଲିଙ୍କି ବହୁଥିବା ଅନ୍ୟମାନେ ଗଉଡ଼ ଥିଲେ । ସେଠାରେ ନିକଟରେ ଗଉଡ଼ ମାନଙ୍କର ଗାଁ ଥିଲା । ଚୌଧୁରୀ ତାଙ୍କୁ ଗଉଡ଼ ବୋଲି ଭାବିନେଲେ । ତାଙ୍କ ଦେହରେ ଯେଉଁ ମଇଳା କୋଉରି ପଇତା ପଡ଼ିଥିଲା, ସେ ଆଡ଼କୁ ସେ ଦୃଷ୍ଟି ଦେଲେ ନାହିଁ ଏବଂ ଗଉଡ଼ମାନେ ରାଜାଙ୍କ ଭୟରେ ଅତ୍ୟନ୍ତ ସାବଧାନ ସହକାରେ ଚାଲନ୍ତି, କିନ୍ତୁ ଭରତଙ୍କର କାହାରିକୁ ଭୟ ନ ଥିଲା, କେବେ ପାଲିଙ୍କି ମଧ୍ୟ ଉଠାଇ ନ ଥିଲେ, କ୍ବଚିତ ଶିଖୁଥିବା ଗଉଡ଼ ପରି ଜଣା ପଡ଼ୁଥିଲେ । ପୁଣି ଧର୍ମର ମର୍ମ ମଧ୍ୟ ସେ ଜାଣିଥିଲେ । ଅତଏବ ପ୍ରଥମ ଚାରିହାତ ପୃଥିବୀକୁ ଦେଖିନେଇ ପୁଣି ଆଗକୁ ଯାଉଥିଲେ, କୌଣସି ଜୀବଜନ୍ତୁ ଦେଖାଗଲେ ଡେଇଁପଡ଼ି ତା ଜୀବନ ବଞ୍ଚାଉଥିଲେ । ଏଥିଯୋଗୁ ପାଲିଙ୍କି ହଲଚଲ ହୋଇ ଯାଉଥିଲା । ରାଜାଙ୍କର ଶରୀର ଥିଲା ମୋଟା । କୁଦିବା ଫଳରେ ତାଙ୍କର ବଡ଼ ପେଟକୁ କଷ୍ଟ ହେଉଥିଲା ଏବଂ ପେଟର ପାଣି କଲକଲ ହେଉଥିଲା । ରାଜା ଥିଲେ ସଦାସର୍ବଦା ସୁଖ ସମ୍ମାନଭୋଗୀ । ଏପରି ତାଙ୍କ ସହିତ ଧୃଷ୍ଟତା କରିବାର ସାହାସ କାହାରି ହୋଇ ନ ଥିଲା । ଏ ଥିଲା ତାଙ୍କ ପାଇଁ ଏକ ଅଭୂତ-ପୂର୍ବ ଅନୁଭୂତ । ତଥାପି ମଧ୍ୟ ରାଜା ଥିଲେ ଧର୍ମାତ୍ମା, ବୁଦ୍ଧିମାନ । ଅତଏବ ଅତ୍ୟନ୍ତ ଶାନ୍ତ ଭାବରେ କହିଲେ—"ଆରେ ଭାଇ ! ତୁମ୍ଭେମାନେ କିପରି ଚାଲୁଅଛ ? ଧିରେ ଧିରେ ଚାଲ । ହଲଚଲ କରନାହିଁ ।"

ରାଜାଙ୍କର ମୁହଁରୁ ଏକଥା ଶୁଣି ଚେଉଡ଼ମାନେ ଡ଼ରିଗଲେ । ଏମାନେ ଭାବଲେ ଆମ୍ଭେମାନେ କିଛି ଭୁଲ୍ କରିଛୁ, ବର୍ତ୍ତମାନ ଦଣ୍ଡ ମିଳିବ । ଏଇଥିପାଇଁ

ଅତ୍ୟନ୍ତ ସାବଧାନ ସହକାରେ ମିଳିମିଶି ଏକାସ୍ୱରରେ ଗୋଡଉଠାଇ ଚାଲିବାକୁ ଲାଗିଲେ, କିନ୍ତୁ ସେମାନଙ୍କର କିଛି ଅପରାଧ ନ ଥିଲା । ପାଲିଙ୍କିରେ ଏହି ନୂତନ ବୋଝ ବୋହୁଥିବା ନୂଆ ଶିକ୍ଷୁଥିବା ଗରଡ଼ ଭରତଙ୍କୁ ଆଣି ଲଗାଇଥିବା ହେତୁ ପାଲିଙ୍କିଟି ହଲୁଥିଲା । ଚାକର ମାନଙ୍କର ଚୌଧୁରୀ ଭାବିଥିଲା—ଏ ଯୁବକ, ହୃଷ୍ଟପୁଷ୍ଟ ଅଙ୍ଗ ମୋଟାମୋଟା ଶରୀର, ଗଧଠାରୁ ମଧ୍ୟ ଅଧିକ ବୋଝ ବୋହିପାରିବ । ବଳଦଠାରୁ ମଧ୍ୟ ଅଧିକ ଦ୍ରୁତବେଗରେ ଚାଲିପାରିବ । କିନ୍ତୁ ଏଇତ ମିଳିଲା ଅଦ୍ଭୁତ ଲୋକ ! କେତେବେଳେ ତେଢ଼ିକରି, କେବେ ହଲିହଲି, କେବେ ଛୁଟା ହୋଇ ଯାଉଛି, କେତେବେଳେ ଏ କାନ୍ଧରୁ ସେ କାନ୍ଧ କରୁଛି । ଜଣଙ୍କେ ପାଇଁ ସମସ୍ତଙ୍କୁ ଠିଆ ହେବାକୁ ହେଉଛି । ରାଜାଙ୍କୁ ଅତ୍ୟନ୍ତ କଷ୍ଟ ହେବାକୁ ଲାଗିଲା । ତାଙ୍କୁ କ୍ରୋଧ ଆସିଗଲା । ତଥାପି କ୍ରୋଧକୁ ଲୁଚାଇ ସେ କହିଲେ, "ଆରେ ତୁମେ ସବୁ କେମିତିକା ଲୋକ ? କ'ଣ ତୁମେ ସବୁ କେବେ ପାଲିଙ୍କି ଉଠାଇ ନାହଁ । ଉଚ ନୀଚ କାହିଁକି କରି ଦେଉଛ, ତୁମେମାନେ କିଛି ନିଶାଦ୍ରବ୍ୟ ସେବନକରି ଆସି ନାହଁତ !"

ରାଜାଙ୍କଠାରୁ ଦ୍ୱିତୀୟଥର ପୁଣି ଏହି କଥା ଶୁଣି ଆଗରେ ଥିବା ଜଣେ ବୟସ୍କ ବୁଦ୍ଧିମାନ ଚାକର । ହାତଯୋଡ଼ି ନିବେଦନ କଲା—"ପ୍ରଭୋ । ଆମ୍ଭେମାନେ ଆପଣଙ୍କର ପ୍ରଜା । ପାଲିଙ୍କି ବୋହିବା ଆମର ପୈତୃକ କାର୍ଯ୍ୟ । ଆମର ହୃଦୟରେ ମହାରାଜଙ୍କ ପ୍ରତି ବଡ଼ ଶ୍ରଦ୍ଧା । ଆମ୍ଭେମାନେ ଅତ୍ୟନ୍ତ ସାବଧାନର ସହ ପାଲିଙ୍କି ନେଇକରି ଯାଉଛୁ, ମାତ୍ର ଏ ପର୍ଯ୍ୟନ୍ତ ଏ ନୂଆ ଜଣକେ କେଉଁଠୁ ଆସିଛି, ସେ ଯେଉଁଠି ଇଚ୍ଛା ହେଉଛି, ସେଠାରେ ଠିଆହୋଇ ଯାଉଛି । ସେଇ ଜଣକ ଠିଆ ହୋଇଯିବା ହେତୁ ସମସ୍ତଙ୍କୁ ମଧ୍ୟ ଠିଆ ହେବାକୁ ପଡ଼ୁଛି । ଆମେ ଶୀଘ୍ର ଚାଲିବାକୁ ଇଚ୍ଛା କରୁଛୁ ସେ ଚାଲୁନାହିଁ । ଯଦିଓ ଅଳ୍ପ ଦୂରରୁ ସେ ପାଲିଙ୍କି ଉଠାଉଛି, ତଥାପି ବର୍ତ୍ତମାନ ଧଇଁସଇଁ ହେବାକୁ ଲାଗିଲାଣି । ମହାରାଜ ! ଏହା ସହିତ ଚାଲିବା ଆମପାଇଁ ଅସମ୍ଭବ ଅଟେ ।"

ରାଜା ବୁଦ୍ଧିମାନ ଓ ବିବେକୀ ଥିଲେ । ବୁଝିଗଲେ ସମସ୍ତେ ଠିକ୍ ଅଛନ୍ତି ମାତ୍ର ଜଣେ ଏହା ଭିତରୁ ନିଷ୍କର୍ମା ଅଟେ । ସେ ଏତେ ମୋଟା ଓ ସୁସ୍ଥ ହୋଇ ମଧ୍ୟ ବାହାନାକରୁଛି । ଏମିତି ସେମିତି ବ୍ୟବହାର କଲେ ମୋତେ ବାହାର କରିଦେବେ, ଯାହା ଫଳରେ ମୁଁ ଏହି କାର୍ଯ୍ୟରୁ ନିଷ୍କୃତି ପାଇଯିବି । ଠିକ୍ କଥା, ମୁଁ ମଧ୍ୟ ରାଜା ମୋ ଆଗରେ କାହାର ବାହାନା ଚାଲି ପାରିବ ନାହିଁ । ମୋତେ କେହି ଛଳନା କରିବା ଧୃଷ୍ଟତା ଅଟେ । ବଡ଼ ଲୋକମାନଙ୍କର ଜିଦ୍ ବେଶୀ । ରାଜାଙ୍କର ସମ୍ପୂର୍ଣ୍ଣ ଧ୍ୟାନ ସେହି ନୂତନ ଗରଡ଼ ଉପରକୁ ଚାଲିଗଲା । ସେ ତାର ଗତି ବିଧିକୁ ନିରୀକ୍ଷଣ

କରିବାକୁ ଲାଗିଲେ । ବର୍ତ୍ତମାନ ସେ ନିଶ୍ଚିନ୍ତ ହୋଇଗଲେ ଯେ ଯଥାର୍ଥ ରୂପରେ ଏହି ଜଣଙ୍କର ଭୁଲ୍ ହେତୁ ପାଲିଙ୍କି ତଳଉପର ହେଉଛି, ସମସ୍ତେ ସିଧା ଚାଲୁଛନ୍ତି, ଏ କେବଳ ଉପଦ୍ରବ କରୁଅଛି । ସଂସର୍ଗ ଦୋଷରୁ ଜଣେ ବ୍ୟକ୍ତିର ଭୁଲ ହେତୁ ସମସ୍ତଙ୍କୁ ଅପମାନିତ ହେବାକୁ ପଡ଼େ । ସମୂହରେ ଜଣେ ଦୋଷ କରେ, ମାତ୍ର ତାର କଳଙ୍କ ପୂରା ସମୂହ ଉପରେ ଲଦାଯାଏ ।

ବର୍ତ୍ତମାନ ରାଜାଙ୍କ ସେହି କୁଆ ଗରୁଡ଼ ଉପରେ ସ୍ୱାଭାବିକ ଭାବେ ବିରକ୍ତି ଆସିଯାଇ ଥିଲା । ସେ ନିଜ ପାଲିଙ୍କି ସାମନାରେ ଥିବା ଦ୍ୱାରର ଝରକା ଖୋଲି ଦେଲେ ଏବଂ ସେହି ମୋଟା ପୁଷ୍ଟ ନବଯୁବକ ଗରୁଡ଼କୁ ଦେଖିବାକୁ ଲାଗିଲେ । ସେ ତାର କାର୍ଯ୍ୟ ଦେଖି ଅତ୍ୟନ୍ତ କ୍ରୁଦ୍ଧ ହୋଇଗଲେ ।

ଏହା ଶୁଣି ରାଜା ପରୀକ୍ଷିତ ପଚାରିଲେ—"ଭଗବନ୍ ! ମୋକ୍ଷ ମାର୍ଗରେ ସ୍ଥିତ ଏତେବଡ ବିବେକୀ ଜ୍ଞାନ ପିପାସୁ ରାଜାଙ୍କୁ କ୍ରୋଧ କାହିଁକି ଆସିଗଲା ?"

ଏହା ଶୁଣି ହସି ହସି ଶ୍ରୀ ଶୁକ କହିଲେ—"ରାଜନ୍ ! ଯେତେବଡ଼ ଜ୍ଞାନୀ, ଧ୍ୟାନୀ, ବିବେକୀ ତଥା ମୁମୁକ୍ଷୁ ହେଲେ ମଧ୍ୟ ରହୁଗଣ ଥିଲେ ରାଜା, ଏ ପର୍ଯ୍ୟନ୍ତ ତାଙ୍କର ଆଜ୍ଞା କେହି ଅମାନ୍ୟ କରି ନ ଥିଲେ । ରାଜାଙ୍କର ଆଜ୍ଞା ଉଲ୍ଲଙ୍ଘ ହେବାକୁ ବିନା ଅସ୍ତ୍ରରେ ମୃତ୍ୟୁ କୁହାଯାଏ । ମହାରାଜ ! ଆପଣଙ୍କର ଅନୁଭବ ହେବ ଯେ ଏହି ରାଜାମାନଙ୍କର ଅମାପ ସମ୍ପତ୍ତି ଥିବା ହେତୁ ଏମାନେ ସୁଖ ଏବଂ ସମ୍ମାନର ଅଧିକାରୀ ହୋଇଯାନ୍ତି । ନିଜ ଚଉର ବିରୁଦ୍ଧାଚରଣ ହେଲେ ମଧ୍ୟ ତାଙ୍କର ଭୃକୁଟୀ ଉପରକୁ ଉଠିଯାଏ । ଆପଣ ଭାବନ୍ତୁ, ଶମିକଋଷି ଆପଣଙ୍କର କ'ଣ ଭୁଲ୍ କରିଥିଲେ, ଏକାନ୍ତ ଆଶ୍ରମରେ ସେ ଚୁପ୍‌ଚାପ୍ ସମାଧିରେ ମଗ୍ନ ଥିଲେ । ଆପଙ୍କୁ କିଛି ମାଗିବାକୁ ଯାଇ ନ ଥିଲେ । ଧରି ନିଅନ୍ତୁ, ଆପଙ୍କୁ ଦେଖି ସେ ମିଛରେ ସମାଧିରେ ବସିଥିଲେ, ତଥାପି ସେଆପଙ୍କର କି ଣ ଖରାପ କରିଥିଲେ । ସେ ସତ ମିଛ ଯେପରି ଯଦି ସମାଧିରେ ବସିଥାନ୍ତୁ, ଆପଙ୍କୁ ସମ୍ମାନ କଲେ ନାହିଁ, ଆପଣ ଚାଲି ଆସି ପାରିଥାନ୍ତେ । ତାଙ୍କ ଗଳାରେ ମୃତ୍ୟୁସର୍ପ ପକାଇ ତାଙ୍କର ପରୀକ୍ଷା ନେବାର କ'ଣ ଆବଶ୍ୟକ ଥିଲା । କିନ୍ତୁ ରାଜନ ! ଏଥିରେ ଆପଣଙ୍କର ଦୋଷ ନାହିଁ । ଯେପରି ମଣିଷକୁ ଜୀବନସାରା ଅଭ୍ୟାସ ପଡ଼ିଯାଏ ଯେପରି ବ୍ୟବହାର ତାଙ୍କର ନିକଟରେ ଥିବା ଲୋକମାନେ କରନ୍ତି, ସେହିପରି ବ୍ୟବହାର ସେ ସମସ୍ତଙ୍କ ଠାରେ ରଖନ୍ତି । ଯଦି କେବଳ ସମ୍ମାନ ନ କରିବା ହେତୁ ଆପଣ ଶମିକ ମୁନିଙ୍କୁ ଏତେ ଦଣ୍ଡ ଦେଲେ ମହାରାଜ ରହୁଗଣଙ୍କୁ ଭରତଙ୍କ କାରଣରୁ ଶାରୀରିକ କଷ୍ଟ ହେଉଥିଲା । କେତେଥର ପାଟି କରିବା ପରେ ମଧ୍ୟ ଭରତ ନିଜର ବ୍ୟବହାର ତ୍ୟାଗ କଲେ

ନାହିଁ । ସେହିପରି ହରିଣ ସଦୃଶ୍ୟ ଡ଼ିଆଁ ଡ଼େଇଁ କରୁଥିଲେ, ରାଜାଙ୍କୁ କ୍ରୋଧ ଆସିବା ସ୍ୱାଭାବିକ ଥିଲା । ସେଥିରେ ତାଙ୍କର ବିନ୍ଦୁମାତ୍ର ଦୋଷ ନ ଥିଲା । ସେ ବିବେକୀ ଥିଲେ, ପରମାର୍ଥର ପଥିକ ଥିଲେ, ତଥାପି ଏତେ ଅପମାନ ସହିଗଲେ. ନଚେତ୍ ଅନ୍ୟ କୌଣସି ରାଜା ହୋଇଥିଲେ, ବାହକରେ ନିଶ୍ଚିନ୍ତ ପିଟିଥାନ୍ତେ । ହାତକୁ ଭାଙ୍ଗି ଗୁଣ୍ଡ୍ରଗୁଣ୍ଡ୍ରା କରି ଦେଇଥାନ୍ତେ । ବସିବସି ରାଜାଙ୍କୁ କିଛି କହିବାକୁ ଶୁଣିବାକୁ ଇଚ୍ଛା ହେଲା । ଅତଏବ ଭରତଙ୍କ ଉପରକୁ ବ୍ୟର୍ଥ ବିଦ୍ରୂପ ବାଣୀ ନିକ୍ଷେପ କରି କ୍ରୋଧର ବଶବର୍ତ୍ତୀ ହୋଇ ଶୁଖିଲା ହସହସି, ତାଙ୍କୁ ମୂର୍ଖବୋଲି ସାବ୍ୟସ୍ତ କରିବାକୁ ଲାଗିଲେ—"ହେ ଗଉଡ଼ ମହାରାଜ ! ଆପଣ ଅତ୍ୟନ୍ତ ସୁକୁମାର, ଆପଣଙ୍କ ଉପରେ କେତେ ବୋଝଲଦ ଦିଆ ଯାଇଛି । ତଥାପି ମଧ୍ୟ ଆପଣ ଏକାଏକା ସମ୍ପାଦନ କରୁଛନ୍ତି, ଏଥିଯୋଗୁ ଆପଣ ଅତ୍ୟନ୍ତ ଥକଟଲେଣି । ଆପଣଙ୍କୁ ଖଟର ତକ୍ତପୋଷ ଉପରେ ବସାଇ ଧୂପଦୀପରେ ପୂଜାକରିବା ଦରକାର । ଦେଖନ୍ତୁ, ଆପଣଙ୍କର ସୁନ୍ଦର ଶରୀର କେତେ କୃଶ ହୋଇଗଲାଣି, ସମସ୍ତ ହାଡ଼ ଦେଖାଯାଉଛି । ନାଡ଼ି-ସବୁ ଚମକୁଛି । ଆପଣ ମଧ୍ୟ ବହୁତ ବୁଢ଼ା, ବଳ ମଧ୍ୟ ଆପଣଙ୍କଠାରେ ନାହିଁ । ଆପଣଙ୍କର ଏହି ସାଥୀମାନେ ଆପଣଙ୍କ ସହିତ ବହୁତ ଅନ୍ୟାୟ କରୁଛନ୍ତି । ଏମାନେ ପାଲିଙ୍କିରେ ହାତ ମଧ୍ୟ ଲଗାଉ ନାହାଁନ୍ତି । ଏକାଏକା ସମୁଦାୟ ପାଲିଙ୍କି ଉଠାଇବାକୁ ପଡୁଛି । ଏଇଥିପାଇଁ ଆପଣ ଏତେ ଡ଼ିଆଁ ଡ଼େଇଁ କରୁଛନ୍ତି । ରାଜା ଭରତଙ୍କୁ ଲଜ୍ଜିତ କରିବାକୁ ସମସ୍ତ ଓଲଟା ପାଲଟା କଥା କହିବାକୁ ଲାଗିଲେ । କିନ୍ତୁ ଭରତ ଲଜ୍ଜାକୁ ଘୋରିକରି ପିଇ ଯାଇଥିଲେ । ମାନ, ଅପମାନ, ଡ଼ର, ଭୟ, କ୍ରୋଧ ଇତ୍ୟାଦି ଆଉ ମଧ୍ୟ ନଥିଲା । ସେ ରାଜାଙ୍କର କଥାକୁ ଆଦୌ ଧ୍ୟାନ ଦେଲେ ନାହିଁ । ରାଜା ଆକାଶକୁ ଚାହିଁ ବ୍ୟଙ୍ଗ କରୁଛନ୍ତି । ଏତେ ବ୍ୟଙ୍ଗ କଥା କହିଲେ ମଧ୍ୟ ଭରତଙ୍କ ଉପରେ କୌଣସି ପ୍ରଭାବ ପଡ଼ିଲା ନାହିଁ । ସେ ସେହିପରି ରହିରହି ଡ଼େଇଁକୁଦ ମସ୍ତହୋଇ ଗଜରାଜ ପରି ଚଳିହଲି ନିର୍ଭୟ ଚାଲିରେ ଚାଲିଥିଲେ । କାରଣ ତାଙ୍କର ଏହି ପଞ୍ଚଭୂତର ଏହି ସଙ୍ଘାତରୂପକ ଶରୀରରେ 'ମୁଁ ହିଁ'ର ମିଥ୍ୟା ବିଚାର ନ ଥିଲା ।

ଏ ପର୍ଯ୍ୟନ୍ତ ରାଜା ବିବେକ କାରଣ ହେତୁ ନିଜ ଭିତରେ ସେହି କ୍ରୋଧକୁ ବନ୍ଦକରି ରଖିଥିଲେ । ବର୍ତ୍ତମାନ ସେ ଆଉ ସହ୍ୟକରି ପାରିଲେ ନାହିଁ । ମେଘ ଗମ୍ଭୀର ବାଣୀରେ ଦାନ୍ତ କଡ଼ମଡ଼ କରି କହିଲେ—"କ'ଣରେ ନିର୍ଲଜ । ତୁ କେମିତିକା ଲୋକ ? କ'ଣ ଜାଣି ଶୁଣି ନିଜର ମୃତ୍ୟୁକୁ ଡ଼ାକୁଅଛୁ । ଯେତେବେଳେ ବେକରେ ବାଡ଼ି ପଡ଼ିବ, ସେତେବେଳେ ତୋତେ ବୁଦ୍ଧି ଦିଶିବ । ନିତ କେଉଁଠିକାର ? ତୋର ଭୟ ନାହିଁ ଯେ ତୁ କାହାର ଆଜ୍ଞାକୁ ଅବହେଳା

କରୁଅଛୁ । ମୁଁ ରାଜା, ସମସ୍ତଙ୍କର ସ୍ୱାମୀ । ବର୍ତ୍ତମାନ ତୋର ହାଡମାଂସ ଏକାଠି କରିଦେବି । ବର୍ତ୍ତମାନ ତୋତେ ତୋର ଅଭିନୟ କରିବାର ଫଳ ଚଖାଇବି । ତୁ ଅତ୍ୟନ୍ତ ଉନ୍ମତ୍ତ ହେଉଅଛୁ, ଯେପରି ମୁଁ ଅରଣ୍ୟରେ ରୋଦନ କରୁଅଛୁ । ବର୍ତ୍ତମାନ ତୋର କାର୍ଯ୍ୟ ପାଇଁ ତୋତେ ଦଣ୍ଡ ଦେବି । ମାଡ଼ ଖାଇବାରେ ଭୂତ ମଧ୍ୟ ଡରି ପଳାଏ । ଯେତେବେଳେ ପିଠି ଉପରେ ଚଟାପଟ୍ ମାଡ ପଡ଼ିବ, ତୋର ବୁଦ୍ଧି ଠିକ୍ ରାସ୍ତାରେ ଲାଗିବ । ବର୍ତ୍ତମାନ ତୁ ସବୁ ଚକଚକ୍ର ମାରିବା ଭୁଲିଯିବୁ ।”

ରାଜା ନିଜକୁ ସମସ୍ତଙ୍କର ସ୍ୱାମୀ ବୋଲି ଭାବୁଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ମୁହଁରୁ ଯେଉଁ ସମ୍ବନ୍ଧ ଅସମ୍ବନ୍ଧ କଥା ବାହାରୁ ତାକୁ ସମସ୍ତେ କୌଣସି ବାଛବିଚାର ନକରି ପାଳନ କରିବେ । ରାଜାର କଥା ହିଁ ବେଦବାକ୍ୟ ଅଟେ । ସେ ଏହି ପରମହଂସ ଭାବକୁ ନଜାଣି ମୋହ ହେତୁ ତାଙ୍କର ତିରସ୍କାର କରିବାକୁ ଲାଗିଲେ । ତାଙ୍କର ଭଗବାନଙ୍କ ଭକ୍ତର ସମ୍ପୂର୍ଣ୍ଣ ପରିଚୟ ନଥିଲା । ସେ ସ୍ଥିତପ୍ରଜ୍ଞ ପୁରୁଷକୁ ତାଙ୍କର ଲକ୍ଷଣ ଦ୍ୱାରା ବୁଝି ପାରିଲେ ନାହିଁ । ତଥାପି ନିଜକୁ ବଡ଼ ଜ୍ଞାନୀ ଧ୍ୟାନୀ ଓ ବୁଦ୍ଧିମାନ ଭାବି ବସିଥିଲେ । ଯାହା ପାଖରେ ବହୁତ ଟଙ୍କା ଥାଏ, ସେ ସମସ୍ତ ବିଷୟରେ ନିଜକୁ ପଣ୍ଡିତ ବୋଲି ଭାବେ । ଏଇଥିପାଇଁ ରାଜା ଏହି ପ୍ରକାର କଥା ସେହି ଯୋଗେଶ୍ୱରଙ୍କୁ କହୁଥିଲା । କିନ୍ତୁ ତାଙ୍କ ମନରେ ଏହି କଥାରେ କୌଣସି ବିକ୍ଷିପ୍ତ ଭାବନା ସୃଷ୍ଟି ହେଲା ନାହିଁ । କାରଣ ସେ ସବୁଆଡ଼େ ଶ୍ରୀହରି ବ୍ୟାପ୍ତ ବୋଲି ବୁଝୁଥିଲେ । ତଥାପି କିଛି ହସ ଆସିଗଲା । ସେ ଭାବିଲେ—‘ବିବାହ ସମୟରେ ସ୍ତ୍ରୀଙ୍କର ଗୋଟିଏ ହାତ ଧରାଯାଏ ଯାହା ଫଳରେ ଜୀବନସାରା ପାଳିବାକୁ ପଡେ । ମୁଁ ଏହାକୁ କାନ୍ଧ ଉପରେ ବସାଇଛି । ଶରୀର ଉପରେ ଧାରଣ କରିଛି । ବର୍ତ୍ତମାନ ସେ ପତିତ ହେଲାଣି, ତେବେ ସତ୍ସଙ୍ଗର ମହତ୍ତ୍ୱ ନଷ୍ଟ ହୋଇଯିବ । ସେ ଏହି ଅସାର ସଂସାର ସାଗରକୁ ସବୁ ଦିନପାଇଁ ପାରି ହେବାକୁ ଇଚ୍ଛା କରେ । ନିଜ ଇଚ୍ଛାରେ ବା ଅନ୍ୟ ଇଚ୍ଛାରେ ଯେତେବେଳେ ମୁଁ ତାକୁ ନିଜର କାନ୍ଧ-ମୁଣ୍ଡ ଉପରେ ବସାଇଲି, ଏତିକରେ ସେ ବୁଡ଼ିଗଲା । ତେବେ ପରମହଂସ ବ୍ୟକ୍ତି ନିମିତ୍ତ ଏହା ବଡ଼ କଳଙ୍କ ଅଟେ । ଅତଏବ ନିଜର ଅପମାନକୁ ମାର୍ଜନ କରିବା ପାଇଁ କ୍ରୋଧରେ ବଶୀଭୂତ ନହୋଇ, କୃପା ହେତୁ ନିରଳତାର ସହିତ ଧିରେ ଧିରେ ହସି ରାଜାଙ୍କର କଥାକୁ ଉତ୍ତର ଦେବାକୁ ସେ ଉଦ୍ୟତ ହେଲେ ।

ଶ୍ରୀ ଶୁକଦେବ କହିଲେ —“ରାଜନ ! ଏହାର ନାମ ହେଉଛି, ସାଧୁସ୍ୱଭାବର ଅଧିକାଂଶ ଚେଷ୍ଟା । ଦେଖନ୍ତୁ, ଦସ୍ୟୁମାନେ ତାଙ୍କୁ ବାନ୍ଧି ପକାଇଲେ । ଖଡ୍ଗରେ ମାରିବାକୁ ଉଦ୍ୟତ ହେଲେ, ତା ଉପରେ ଜଡ ଭରତ ପଦେ ହେଲେ ଶବ୍ଦ

କହିଲେ ନାହିଁ, କାରଣ ସେ ଜାଣିଥିଲେ ଏମାନେ ସମସ୍ତେ ଅନଧିକାରୀ । ଏମାନଙ୍କ ସାମନାରେ କିଛି ଜ୍ଞାନ କଥା କହିଲେ, ତାହା ବ୍ୟର୍ଥ ହେବ, ଯେପରି ଉପରେ ବୁଣିଥିବା ବୀଜ ବ୍ୟର୍ଥ ହୋଇଯାଏ । କିନ୍ତୁ ରାଜା ରହୁଗଣଙ୍କୁ ପରମାର୍ଥ ତତ୍ତ୍ୱର ଅଧିକାରୀ ଭାବି, କେବଳ ତାଙ୍କର ବାତୁଳ ପରି ଦେଖୁଥିବା କଥା ଦ୍ରବୀଭୂତ ହୋଇ, ତାଙ୍କୁ ଉପଦେଶ ଦେବାକୁ ଉଦ୍ୟତ ହେଲେ ।"

## ଛପ୍‌ପୟ

ପଦ ତଳ ଦବେ ନ ଜୀବ ଦୌର୍ ଇତ ତେ ଉତ ଆବେ ।
ଡ଼ଗମଗ ଶିବକା ହୋହ୍ନ ଭୂପ ବୈଠେ ହିଲି ଜାତେ ॥
ବ୍ୟାପୋ ତନ ମହିଁ କ୍ରୋଧ କହେ ମୈ ମାରୁଁ ତୋକୁଁ ।
ମୈ ହୁଁ ଥବକୋ ଇଂଶ ମୂର୍ଖ ମାନେ ନହିଁ ମୋକୁଁ ॥
ସ୍ୱାମୀ କେ ଅପମାନ କୋ, ତୋକୁଁ ମଜା ଚଖାଉଁଗୋ ।
ଡ଼ଣ୍ଡନ ତେ ପିଟବାଉଁଗୋ, ଜୀବତ ଖାଲ ଖିଚ୍ଉଁଗୋ ॥



ମୁଦ୍ରଣ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କ ରାମାୟଣର ଗଦ୍ୟାନୁବାଦ

**ରାମାୟଣ**

ମୂଲ୍ୟ ୩୫ ଟଙ୍କା

**ମହାଭାରତ**

ମୂଲ୍ୟ ୪୦ ଟଙ୍କା

ଛାତ୍ରମାନଙ୍କ ପାଇଁ

**ଶ୍ରୀ ମଦ୍ଭଗବତ ଗୀତା**

ମୂଲ୍ୟ ୫ ଟଙ୍କା

କେ ଏମ୍. ମୁନ୍‌ସୀଙ୍କ ପ୍ରସିଦ୍ଧ ଉପନ୍ୟାସ

**ଭଗବାନ ପରଶୁରାମ**

ପ୍ରଥମ ଖଣ୍ଡ ମୂଲ୍ୟ ୨୫ ଟଙ୍କା

ଦ୍ୱିତୀୟ ଖଣ୍ଡ ମୂଲ୍ୟ ୨୫ ଟଙ୍କା

ଅନୁବାଦକ

**ପଣ୍ଡିତ ରଘୁନାଥ ମିଶ୍ର**